# ସ୍ମୃତିରେ ଦେବେନ୍ଦ୍ର


ସଂପାଦନା

**ଅସିତ ମହାନ୍ତି**

**ପ୍ରଦୀପ୍ତ କୁମାର ପଣ୍ଡା**

**କୃଷ୍ଣଚନ୍ଦ୍ର ପ୍ରଧାନ**



ପ୍ରକାଶକ

**ଗୀତାଞ୍ଜଳି ଦାଶ**

ବି- ୧୦୪, ଲେକ୍ ଭିଉ ହୋମ୍ ବିଦ୍ୟୁତ୍‌ମାର୍ଗ, ଭୁବନେଶ୍ୱର

# ବଂଶଲତା

ବୀରନରସିଂହପୁର ଶାସନ, ମାଛଗାଁ, ଜଗତସିଂହପୁର



ସଂପାଦକୀୟ ବଦଳରେ

# ଦେବେନ୍ଦ୍ର କୁମାର ଦାଶ
# ଆମ ସାହିତ୍ୟର ଚଳନ୍ତି ଜ୍ଞାନକୋଷ

ଦେବେନ୍ଦ୍ରବାବୁ ହଠାତ୍ ଚାଲିଗଲେ। ସେ ଥିଲେ ଓଡ଼ିଆ ଭାଷା, ସାହିତ୍ୟ, ଇତିହାସ, ସଂସ୍କୃତି ଓ ସମାଜବ୍ୟବସ୍ଥାର ଚଳନ୍ତି ଜ୍ଞାନକୋଷ। ସେହି କାଳଖଣ୍ଡର ଟିକିନିଖି ତଥ୍ୟ ତାଙ୍କର ମୁହେଁ ମୁହେଁ ରହିଥିଲା। ଯେକୌଣସି ସମୟରେ, ଯେକୌଣସି ଅବସ୍ଥାରେ ଥିଲେ ବି, ସେ ସଂପର୍କରେ ପ୍ରଶ୍ନ କଲେ ସାଙ୍ଗେ ସାଙ୍ଗେ ତାଙ୍କଠାରୁ ଉତ୍ତର ମିଳୁଥିଲା। ସେହି ଉତ୍ତର ପୁଣି ସଂପୂର୍ଣ୍ଣ ତଥ୍ୟନିଷ୍ଠ ଓ ଅଭ୍ରାନ୍ତ। ଏପରି ବିରଳ ବିଦ୍‌ବତ୍ତା ମୁଁ ଅନ୍ୟତ୍ର ଦେଖିନାହିଁ।

'ସମ୍ବାଦ-ଆମ ଓଡ଼ିଶା' ସହ ସେ ସଂପୃକ୍ତ ଥିଲେ 'ସାହିତ୍ୟ କୋଷ'ର ସଂପାଦନାମଣ୍ଡଳୀ ସଦସ୍ୟ ଭାବରେ। 'ସାହିତ୍ୟ କୋଷ'ର ଆଦିଭୂମି 'ସମ୍ବାଦ ଭବନ' ହେଲେ ହେଁ, କର୍ମଭୂମି ଥିଲା 'ଆମ ଓଡ଼ିଶା'। ତେଣୁ 'ସାହିତ୍ୟକୋଷ'ର ପ୍ରସ୍ତୁତିର ବିଭିନ୍ନ ପର୍ଯ୍ୟାୟରେ, ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର ଗଗନେନ୍ଦ୍ର ନାଥ ଦାଶ, ପ୍ରଫେସର ଦାଶରଥି ଦାସ, ଡକ୍ଟର ଗୌରାଙ୍ଗ ଚରଣ ଦାଶ ଓ ତାଙ୍କ ସହିତ ମାସ ମାସ, ବର୍ଷ ବର୍ଷ ମୁଁ କାମ କରିଛି। ଲକ୍ଷ୍ୟ କରିଛି, ନିଜର ଜ୍ଞାନକୁ ସ୍ୱାର୍ଥପର ଭାବରେ ନିଜସ୍ୱ କରି ନରଖି, ସମସ୍ତଙ୍କୁ ଅକାତରରେ ବାଣ୍ଟି ଦେବାରେ ଥିଲା ତାଙ୍କର ଆନନ୍ଦ।

ଫକୀର ମୋହନ, ଗଙ୍ଗାଧର, ରାଧାନାଥ, ମଧୁସୂଦନ, ଭୀମଭୋଇ, ନନ୍ଦକିଶୋର, ଜଗନ୍‌ମୋହନ ଲାଲ୍ ଆଦି ଅନେକଙ୍କ ଉପରେ ସେ କାମ କରିଛନ୍ତି। ଚାରିଖଣ୍ଡରେ (ତିନିଖଣ୍ଡ ପ୍ରକାଶିତ ଓ ଖଣ୍ଡିଏ ଅପ୍ରକାଶିତ) ତାଙ୍କ ସଂପାଦିତ ଫକୀରମୋହନ ଗ୍ରନ୍ଥାବଳୀ ସର୍ବୋତ୍ତମ। ସେହିପରି ମଧ୍ୟ ସର୍ବୋତ୍ତମ, ଏନ୍.ବି.ଟି. ପ୍ରକାଶିତ ତଥା ତାଙ୍କ ସଂପାଦିତ ଫକୀରମୋହନଙ୍କ ଆତ୍ମଚରିତ ଓ ଫକୀରମୋହନଙ୍କ ଗଳ୍ପସମଗ୍ର। ତାଙ୍କ ସଂପାଦିତ ପୁସ୍ତକଗୁଡ଼ିକର ସୁଦୀର୍ଘ ମୁଖବନ୍ଧ ଏକ ଏକ ଗବେଷଣା ସନ୍ଦର୍ଭଠାରୁ କୌଣସି ଦୃଷ୍ଟିରୁ କମ୍ ନୁହେଁ।

ଦେବେନ୍ଦ୍ରବାବୁଙ୍କର ଗୋଟିଏ ବିଶେଷତ୍ୱ ହେଉଛି, ସେ କେବେହେଲେ ନିଜର ଲେଖାପାଇଁ ଧାରକରା ତଥ୍ୟ ବା ମତ ଉପରେ ନିର୍ଭର କରି ନାହାନ୍ତି। ନିଜେ କଷ୍ଟ ସ୍ୱୀକାର କରି, ମୂଳଉତ୍ସରୁ ତଥ୍ୟ ଆହରଣ କରି, ତାହାକୁ ସଂକଳିତ କରିବା ସହିତ, ତାହାର ଭିତ୍ତିରେ ନିଜ ଆଲୋଚନା ବା ଗବେଷଣାର ସୌଧ ନିର୍ମାଣ କରିଛନ୍ତି। ସେହି ଦୃଷ୍ଟିରୁ ତାଙ୍କର ପୁସ୍ତକଗୁଡ଼ିକ ଯେପରି ଭିନ୍ନ ସେପରି ଅନନ୍ୟ। 'ଉତ୍କଳ ସମ୍ମିଳନୀ, ୧୯୦୩ରୁ ୧୯୩୬' ଏହାର ଏକ ଉଦାହରଣ। ତାହାର ଦ୍ୱିତୀୟ ଭାଗ ପ୍ରସ୍ତୁତ କରିବାର ଯୋଜନା ମଧ୍ୟ ତାଙ୍କର ଥିଲା; ଯାହା ଯୋଜନାରେ ହିଁ ରହିଗଲା। ସେହିପରି ମଧ୍ୟ ଯୋଜନାରେ ରହିଗଲା, ବଡ଼ବିଲ କଲେଜରେ ହୋଇଥିବା ଭୀମଭୋଇ ଓ ମହିମାଧର୍ମ ଆଲୋଚନାଚକ୍ର ଅବକାଶରେ ସେ ସଂକଳିତ କରିଥିବା ବିବରଣୀଗୁଡ଼ିକୁ ନେଇ ସ୍ୱତନ୍ତ୍ର ପୁସ୍ତକ। ଅସଂପୂର୍ଣ୍ଣ ବି ରହିଗଲା, ଶତାୟୁ ସାହିତ୍ୟ ଅନୁଷ୍ଠାନ 'ଉତ୍କଳ ସାହିତ୍ୟ ସମାଜ'ର ଏକ ସ୍ୱତନ୍ତ୍ର ଇତିହାସ ପୁସ୍ତକ ପ୍ରଣୟନର ଯୋଜନା।

ମୋର ମନେଅଛି, ୨୦୧୮ ମସିହାରେ, ଫକୀରମୋହନଙ୍କ ଜନ୍ମର ୧୭୫ବର୍ଷ ଓ ମୃତ୍ୟୁର ୧୦୦ ବର୍ଷ ଅବସରରେ, ମୁଁ 'ଫକୀର ମୋହନଙ୍କ ରସଗୋଲା' ଶିରୋନାମରେ 'ସମ୍ବାଦ'ର 'ସାହିତ୍ୟିକ ପାଣିପାଗ' ସ୍ତମ୍ଭରେ ଗୋଟିଏ ଲେଖା ଲେଖିଥିଲି। ସେଥିରେ ଫକୀରମୋହନଙ୍କ 'ଉତ୍କଳ ଭ୍ରମଣଂ'ର ଏକ ପଦ୍ୟାତ୍ମକ ସମୀକ୍ଷା ଏବଂ ତାଙ୍କର ଭ୍ରମଣକାହାଣୀ 'ଓୟାଲଟେୟାର ଦର୍ଶନ'ରେ ବର୍ଣ୍ଣିତ ରସଗୋଲା ସଂପର୍କରେ ଆଲୋଚନା ଥିଲା। ସେହି ଲେଖାରେ ଗୋଟିଏ ନାମକୁ ମୁଁ ଦୁଇଥର ବ୍ୟବହାର କରିଥିବାବେଳେ, ଅସାବଧାନତା ବଶତଃ ଥରଟିଏ ନାମଟି ଭୁଲ୍ ହୋଇଯାଇଥିଲା। ଫୋନ୍ କରି ତାହା ମୋତେ ଜଣାଇ, ଭୁଲଟିକୁ ସଂଶୋଧନ କରିନେବାକୁ ସେ କହିଥିଲେ ଏବଂ ସେପରି ଗୋଟିଏ ଲେଖା ପ୍ରସ୍ତୁତ କରିଥିବାରୁ ମୋତେ ଉଚ୍ଚ ପ୍ରଶଂସା କରିଥିଲେ। ଫକୀରମୋହନଙ୍କ ସଂପର୍କରେ ଅନେକ ଅଧ୍ୟୟନ ସେ କରିଥିଲେ ମଧ୍ୟ, ରସଗୋଲାକୁ ନେଇ ସେପରି ଗୋଟିଏ ମିଠା ସଂଯୋଗର କଥା ତାଙ୍କ ମନକୁ ଆସି ନଥିଲା ବୋଲି ମଧ୍ୟ ସେ ସ୍ପଷ୍ଟ ଭାବରେ କହିଥିଲେ।

ଆଉ ଗୋଟିଏ କଥା ମଧ୍ୟ ସେ ମୋତେ ବାରମ୍ବାର କହି ଆସୁଥିଲେ। ତାହା ହେଉଛି– ଓଡ଼ିଶାରେ 'ସାହିତ୍ୟ-ସାମ୍ବାଦିକତା' ବା 'ଲିଟରାରୀ ଜର୍ଣ୍ଣାଲିଜମ୍'। ସେ ବାରମ୍ବାର କହୁଥିଲେ– ଓଡ଼ିଶାରେ ଆମ ସାହିତ୍ୟର ଏ ଦିଗଟିକୁ ଆପଣ କେବଳ ବଞ୍ଚାଇ ରଖିଛନ୍ତି।

ଏହିପରି ଜଣେ ସାହିତ୍ୟିକ ବ୍ୟକ୍ତିତ୍ୱ ଥିଲେ ଦେବେନ୍ଦ୍ରବାବୁ। ତାଙ୍କର ଅକାଳ ବିୟୋଗରେ, ତାଙ୍କଦ୍ୱାରା ସଂପନ୍ନ ହେବାକୁ ଥିବା ଆମ ସାହିତ୍ୟର ଅନେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଅପୂର୍ଣ୍ଣ ହୋଇ ରହିଗଲା। ସେ ଅପୂର୍ଣ୍ଣତା କେବେ ପୂରଣ ହେବ, ତାହା କେବଳ ସମୟ କହିବ।

*–ଅସିତ ମହାନ୍ତି*

# ଲେଖକସୂଚୀ

# ଦେବେନ୍ଦ୍ର ଜୀବନାଲେଖ୍ୟ

ପିତା: ବଳରାମ ଦାଶ

ମାତା: ଜ୍ୟୋତି ଦେବୀ

ଜନ୍ମତାରିଖ: ୨୮ ଜୁଲାଇ ୧୯୫୪

ଜନ୍ମସ୍ଥାନ: ବୀରନରସିଂହପୁର ଶାସନ, ମାଛଗାଁ, ଜଗତସିଂହପୁର

ଠିକଣା: ବି-୧୦୪, ଲେକ୍ ଭ୍ୟୁ ହୋମ୍ସ, ବିଦ୍ୟୁତ୍ ମାର୍ଗ, ଭୁବନେଶ୍ୱର-୭୫୧୦୧୨

ଶିକ୍ଷା: ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା, ଓଚିଣ୍ଡା ସ୍କୁଲ୍, ବୋରିକିନା, ପି.ୟୁ. ସ୍ନାତକ (ପ୍ରଥମ ଶ୍ରେଣୀରେ ପ୍ରଥମ): ଗଙ୍ଗାଧର ମେହେର କଲେଜ, ସମ୍ବଲପୁର, ସ୍ନାତକୋତ୍ତର (ପ୍ରଥମ ଶ୍ରେଣୀରେ ପ୍ରଥମ): ଓଡ଼ିଆ ବିଭାଗ, ସମ୍ବଲପୁର ବିଶ୍ୱବିଦ୍ୟାଳୟ, ବୁର୍ଲା

ବୃତ୍ତିଗତ ଜୀବନ: ଗବେଷକ, ୧୯୭୬-୭୯: ବିଶ୍ୱଭାରତୀ, ଶାନ୍ତିନିକେତନ

ଅଧ୍ୟାପନା, ଓଡ଼ିଆ ବିଭାଗ, ବିଶ୍ୱଭାରତୀ ୧୯୭୬, ଡିସେମ୍ବର-୧୯୭୭ ସେପ୍ଟେମ୍ବର

ଓଡ଼ିଆ ବିଭାଗ, ମ୍ୟୁନିସିପାଲ କଲେଜ, ରାଉରକେଲା, ୧୯୭୯-୧୯୯୯

ଇସ୍ପାତ କଲେଜ, ରାଉରକେଲା, ୧୯୯୯-୨୦୧୦

କମଳା ନେହେରୁ ମହିଳା ମହାବିଦ୍ୟାଳୟ, ଭୁବନେଶ୍ୱର, ୨୦୧୦-

## ପ୍ରକାଶିତ ପୁସ୍ତକ ଓ ସମାଲୋଚନା

**ଆଲୋଚନା ଗ୍ରନ୍ଥ**

*ଗୋଟିଏ ଫୁଲ ଫୁଟିବାର ବେଳ* (ନନ୍ଦକିଶୋର ବଳଙ୍କର ମନୋଗ୍ରାଫ୍) ।୧୯୯୩ । ଭୁବନେଶ୍ୱର, ମୟୂର ପ୍ରକାଶନୀ ।

*ଗଙ୍ଗାଧର: କବିତା ଓ କବିଆତ୍ମା* ।୧୯୯୫ । ରାଉରକେଲା, ପ୍ରଗତି ଉତ୍କଳ ସଂଘ ।

*ଗାନ୍ଧିଜୀଙ୍କ ଦୃଷ୍ଟିରେ ମଧୁସୂଦନ* (ଆଚାର୍ଯ୍ୟ ଭାବାନନ୍ଦଙ୍କ ସହିତ) । ୧୯୯୯ । ଭୁବନେଶ୍ୱର, ମୟୂର ପ୍ରକାଶନୀ ।

**ସଂପାଦନା : ଇଂରାଜୀ ଓ ଓଡିଆ ଗ୍ରନ୍ଥ**

*Madhusudan Das: The Man and His Missions.* 1998. Rourkela, Pragati Utkala Sangha.

*Gandhi on Madhusudan* ( In collaboration with Acharya Bhabananda). 1999. Bhubaneswar, Mayur publications.

*Madhusudan Das: His Life and Achievements.* 2000. Rourkela, Pragati Utakala Sangha.

*Fakiramohan Senapati's Atmacharita.* (in collaboration with D.R. Pattnaik, Paul St. Pierrie and B.K.Tripathy). 2016. NewDelhi, NBT .

Gangadhar: The Master Creator (in collaboration with A.K. Mishra). 2017. Bhubaneswar,Samasa .

*ରାଧାନାଥ ଗ୍ରନ୍ଥାବଳୀ* (ପ୍ରସନ୍ନ କୁମାର ମିଶ୍ରଙ୍କ ସହ) । ୧୯୯୮ । କଟକ, ଗ୍ରନ୍ଥମନ୍ଦିର ।

*ଓଡ଼ିଶାର ଜନକ ମଧୁସୂଦନ* (ଆଚାର୍ଯ୍ୟ ଭାବାନନ୍ଦଙ୍କ ସହ) । ୨୦୦୦ । ଭୁବନେଶ୍ୱର, ମୟୂର ପବ୍ଲିକେଶନ ।

*ଫକୀରମୋହନ ଗ୍ରନ୍ଥାବଳୀ* (ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଭାଗ) । ୨୦୦୦-୨୦୦୮ । କଟକ, ଗ୍ରନ୍ଥମନ୍ଦିର ।

*ଉତ୍କଳମଣି ଗୋପବନ୍ଧୁ ରଚନାବଳୀ* /୨୦୦୩ । କଟକ, ଗ୍ରନ୍ଥମନ୍ଦିର ।

*ରାମକୃଷ୍ଣ କାବ୍ୟସଂଗ୍ରହ* / ୨୦୦୪ । କଟକ, ଓଡ଼ିଆ ଗବେଷଣା ପରିଷଦ ।

*ଉତ୍କଳ ସମ୍ମିଳନୀ* (୧୯୦୩ରୁ ୧୯୩୬) । ୨୦୦୩ । ରାଉରକେଲା, ପ୍ରଗତି ଉତ୍କଳ ସଂଘ ।

*ମଦନମୋହନ ରଚନାସଂଗ୍ରହ* / ୨୦୦୪ । ରାଉରକେଲା, ପ୍ରଗତି ଉତ୍କଳ ସଂଘ ।

*ଉତ୍କଳ ଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ* (ନଗେନ୍ ଦାଶଙ୍କ ସହ) ।୨୦୧୦ । ରାଉରକେଲା, ପ୍ରଗତି ଉତ୍କଳ ସଂଘ ।

*ଫକୀରମୋହନ ସେନାପତିଙ୍କ ଆତ୍ମଚରିତ* /୨୦୦୩ । ନୂଆଦିଲ୍ଲୀ, ଏନ.ବି.ଟି ।

*ମଧୁସୂଦନ ଗ୍ରନ୍ଥାବଳୀ* /୨୦୧୧ । କଟକ, ଗ୍ରନ୍ଥମନ୍ଦିର ।

*ଫକୀରମୋହନ ଚର୍ଚ୍ଚା : ଆଦିପର୍ବ* (ଲଲାଟେନ୍ଦୁ ଦାସମହାପାତ୍ରଙ୍କ ସହ)। ୨୦୧୮ । ଭୁବନେଶ୍ୱର, ବ୍ୟାସକବି ଫକୀରମୋହନ ସ୍ମୃତି ସଂସଦ ।

*ସମ୍ବାଦ ସାହିତ୍ୟକୋଷ* (ଦାଶରଥି ଦାସ, ସୁଦର୍ଶନ ଆଚାର୍ଯ୍ୟ ଓ ଗୌରାଙ୍ଗ ଚରଣ ଦାଶଙ୍କ ସହ) । ୨୦୧୯ । ଭୁବନେଶ୍ୱର, ଆମ ଓଡ଼ିଶା ।

*ଫକୀରମୋହନ ସେନାପତିଙ୍କ ଗଳ୍ପସମଗ୍ର* /୨୦୨୨ । ନୂଆଦିଲ୍ଲୀ, ଏନ.ବି.ଟି ।

ପ୍ରବନ୍ଧ ଓ ସାହିତ୍ୟ ସମାଲୋଚନା

*A Road from the West: Western Influence on Radhanath's Parbati.* 1977. Journal of Research. Vishvabharati, Shantiniketan.

*The Concept of Man in Veda.* 1978. Mahanadi Review (Vol.1, No.3). Cuttack,Mahanadi Publications.

*Translation as Social Praxis in Ancient and Medieval India* (in collaboration with D.R. Pattanaik). 2002. in, Journal of Contemporary Thought (Vol.15), Jointly published by M.S. University, Baroda and Louisiana State University, USA.

*'Late 19th' Century Literary Discourse and Oriya Indentity* (in collaboration with D.R. Pattanaik). 2004. in, Utkal Historical Research Journal, Utkal University, Bhubaneswar.

*The Missionary Position: The Irony of Tranalational Activism in Colonial Orissa* (in collaboration with D.R. Pattanaik). 2005. in, Traduction, Terminologie, Redaction (Vol.18, No.2), Universitie McGill, Montreal.

*Translating Medieval Orissa* (in collaboration with D.R. Pattanaik). 2006. in, Translation Today (Vol.3, No.1 and 2), Central Institute of Indian Language, Mysore. An expanded and revised version of this paper has been published in Perspectives on Orissa: Cultural-Intellectual Contributions (eds.P.K. Mohapatra and R.C. Pradhan), Centre for Studies in Civilisations, New Delhi.

*Translations as Social Praxis in Ancient and Medieval India* (in collaboration with D.R. Pattanaik). 2007. in, In Translation: Reflections, Refractions and Transformations (eds. Paul St.Pierre and P.C. Kar), John Benjamins Publishing Company, Amsterdam/Philadephia.

*Ungrafting Colonialism: Fakirmohan's Pragmatic Vision in Six Acres and a Third* (in collaboration with D.R. Pattanaik). 2008. in, Neither East Nor West (ed. Kerstin W.Shands), Sodertons

hogskola, University College, Sweden.

*Filial Censoring: The Cultural Politics Behind the Bowdlerization of Fakiramohana's Autobiography* (in collaboration with D.R. Pattanaik). 2008. in,Traduction, Terminologie, Redaction (Vol.21, No.1), University McGill, Montreal.

*The Tradition-Modernity Dialectic in Six Acres and a Third* (in collaboration with D.R. Pattanaik). 2011. in, Colonialism, Modernity and Literature: A View from India (ed.S.P. Mohanty), Palgrave Macmillan, New York, USA.

*Nature in Gangadhar Meher's Poetry: River as Myth and Motif* . 2017. in, Gangadhar: The Master Creator (eds.A.K. Mishra and D.K. Dash) Samasa, Bhubaneswar.

*The Making of a Novelist: Early Intimations of Fakirmohan's 'Late Style'* (in collaboration with D.R. Pattanaik). 2018. in, The Unbilled Hour: Essays on Literature and Culture (ed.Bijay K.Danta).

*"Major Anxieties and Ambiguities in Fakiramohan's Writings".* 2020. in, journal of English Studies, Vol.V, Balasore.

*ଆଗେମେମନନ୍ ଓ ପାର୍ବତୀ* / ୧୯୭୨ । ସପ୍ତର୍ଷି, ପ୍ରଥମବର୍ଷ, ପଞ୍ଚମ/ଷଷ୍ଠ ସଂଖ୍ୟା ।

*ପ୍ରେତ ଓ ପାର୍ବତୀ* / ୧୯୭୩ । ଝଂକାର (୨୪/୧୧), ଫେବୃଆରି ।

*ଏକଜାତ ଏକ ଦୁର୍ବଳ ଚରିତ୍ର ନ ହୋଇଥିଲେ* / ୧୯୭୩ । ସପ୍ତର୍ଷି, ଦ୍ୱିତୀୟବର୍ଷ, ଷଷ୍ଠ ସଂଖ୍ୟା ।

*ସୁମଧୁର ଦ୍ୱୈତ ଭାବର ଦ୍ୟୋତକ* /୧୯୭୩ । ଝଂକାର (୨୫/୨), ଫେବୃଆରି ।

*ପୂର୍ବ ମଧ୍ୟଯୁଗୀୟ ଓଡିଆ କାବ୍ୟରେ ପ୍ରକୃତି ଚିତ୍ରଣ* / ୧୯୭୬ । ସପ୍ତର୍ଷି, ପଞ୍ଚମବର୍ଷ, ୧୧ଶ ଓ ୧୨ଶ ସଂଖ୍ୟା ।

*ମଧୁସୂଦନଙ୍କ ଋଷିଚିତ୍ର* / ୧୯୭୮ । ମୂଲ୍ୟାୟନ, ପ୍ରଥମବର୍ଷ, ଚତୁର୍ଥ ସଂଖ୍ୟା ।

*ଶିଳ୍ପସମ୍ଭୋଗ ଓ ରସତତ୍ତ୍ୱ* / ୧୯୭୯ । ଝଂକାର (୩୦/୧୧-୧୨), ଫେବୃଆରି ଏବଂ ମାର୍ଚ୍ଚ ।

*ଆରିଷ୍ଟଟଲଙ୍କ କାବ୍ୟତତ୍ତ୍ୱ ଓ ଜୀବନ ଜିଜ୍ଞାସା* / ୧୯୭୯ । କୋଣାର୍କ, ୩୯ତମ ସଂଖ୍ୟା ।

*କବିତା ଓ ବିଜ୍ଞାନ* / ୧୯୮୪ । ନବପତ୍ର, ଦ୍ୱାଦଶବର୍ଷ ଦ୍ୱିତୀୟ ସଂଖ୍ୟା । ଅକ୍ଟୋବର-ଡିସେମ୍ବର ।

*ନାୟକର ମୃତ୍ୟୁ* / ୧୯୮୫ । ନବପତ୍ର, ତ୍ରୟୋଦଶବର୍ଷ, ପ୍ରଥମ ଓ ଦ୍ୱିତୀୟ ସଂଖ୍ୟା ।
*ଓଡ଼ିଆ ଐତିହାସିକ ଉପନ୍ୟାସ ଚର୍ଚ୍ଚା* / ୧୯୮୬ । ଏଷଣା-୧୩, ଡିସେମ୍ବର ।
*ଆଧୁନିକ ଓଡ଼ିଆ ସାହିତ୍ୟିକର ମାନସିକ ସ୍ଥିତି* / ୧୯୮୬ । ନବପତ୍ର, ଜାନୁଆରୀ-ମାର୍ଚ୍ଚ,
*ବିଚାରବିତର୍କ : ଓଡ଼ିଆ ଐତିହାସିକ ଉପନ୍ୟାସ ଚର୍ଚ୍ଚା* / ୧୯୮୭ । ଏଷଣା, ଡିସେମ୍ବର
*ଗଙ୍ଗାଧରଙ୍କ ଦୁଇଟି ଦୁଷ୍ପ୍ରାପ୍ୟ କବିତା* / ୧୯୮୭ । ଅନ୍ତର୍ଭୁକ୍ତ, ଗଙ୍ଗାଧର ସାହିତ୍ୟ : ଏକ ଅଧ୍ୟୟନ । ସମ୍ବଲପୁର ମେନକା ପ୍ରକାଶନୀ ।
*ବଳରାମଦେବ-କବି ଗଙ୍ଗାଧର ମେହେର: ସଂଗ୍ରହ ଓ ଆଲୋଚନା* / ୧୯୮୭ । ଏଷଣା-୧୪ ଜୁନ ।
*ମଧୁସୂଦନଙ୍କ ଦୁଷ୍ପ୍ରାପ୍ୟ କବିତାବଳୀ* / ୧୯୮୭ । କୋଣାର୍କ, ୬୫ତମ ସଂଖ୍ୟା ।
*ସାହିତ୍ୟ ଓ ସମାଜ* / ୧୯୮୮ । ନବପତ୍ର, ୧୪ତମ ବର୍ଷ, ତୃତୀୟ ଓ ୧୫ଶ ବର୍ଷ, ଦ୍ୱିତୀୟ ସଂଖ୍ୟା, ଅକ୍ଟୋବର-ଡିସେମ୍ବର ।
*ଆଧୁନିକ ସାହିତ୍ୟ ସମାଲୋଚନା : ସଙ୍କଟ ଓ ସମ୍ଭାବନା* / ୧୯୮୯ । ଅନ୍ତର୍ଭୂତ, ଓଡ଼ିଆ ସମାଲୋଚନା ସାହିତ୍ୟ, ଓଡ଼ିଶା ସାହିତ୍ୟ ଏକାଡେମୀ ।
*ରାଧାନାଥଙ୍କ ରଚିତ ଦୁଇଟି ଭୂମିକା: ସଂଗ୍ରହ, ଅନୁବାଦ ଓ ଆଲୋଚନା* / ୧୯୮୯ । ଏଷଣା, ଜୁନ୍ ।
*ପଦ୍ମମାଳୀ : ସମକାଳୀନ ଚିନ୍ତାବୃତ୍ତ* / ୧୯୮୯ । ଅନ୍ତର୍ଭୁକ୍ତ, ପ୍ରଥମ ଓଡ଼ିଆ ଉପନ୍ୟାସ ଓ ଔପନ୍ୟାସିକ, ରାଉରକେଲା, ପ୍ରଗତି ଉତ୍କଳ ସଂଘ ।
*କେନ୍ଦୁଝର ବିଦ୍ରୋହ* / ୧୯୮୯ । ଅନ୍ତର୍ଭୂତ, ପ୍ରଥମ ଓଡ଼ିଆ ଉପନ୍ୟାସ ଓ ଔପନ୍ୟାସିକ, ରାଉରକେଲା, ପ୍ରଗତି ଉତ୍କଳ ସଂଘ ।
*ବଙ୍ଗୀୟ କାବ୍ୟ ଗ୍ରନ୍ଥରେ ରାଧାନାଥଙ୍କର ଦୁଇଟି ଭୂମିକା* / ୧୯୮୯ । ଏଷଣା-୧୮ ।
*ଓଡ଼ିଆ ସାହିତ୍ୟର ଇତିହାସ ଚର୍ଚ୍ଚା ଓ ମନମୋହନ ଚକ୍ରବର୍ତ୍ତୀ* / ୧୯୯୦। ଏଷଣା, ଜୁନ୍ ।
*ସାହିତ୍ୟ ସମାଲୋଚନାରେ ନନ୍ଦନତତ୍ତ୍ୱର ଭୂମିକା* / ୧୯୯୦ । ଅନ୍ତର୍ଭୂତ, ନନ୍ଦନତତ୍ତ୍ୱ, କଟକ, କୋଣାର୍କ ପବ୍ଲିଶର୍ସ ।
*ଦୁଇଟି ପତ୍ର-ଶ୍ରୀ ଦାଶରଥି ରାଉତ* /୧୯୯୦ । ଏଷଣା-୨୧ ଡିସେମ୍ବର ।
*ଓଡ଼ିଆ ନାଟକ: ସାମାଜିକ ସୀମାବଦ୍ଧତା* / ୧୯୯୦ । ନବପତ୍ର, ୧୮ଶହତମ ବର୍ଷ, ତୃତୀୟ ସଂଖ୍ୟା ।
*ସମାଲୋଚନାର ରୂପଭେଦ* / ୧୯୯୦ । ବିଶ୍ୱଭାରତୀ ଦୀପିକା, ୧୧ଶହତମ ସଂଖ୍ୟା, ଶାନ୍ତିନିକେତନ ।

*ଊନବିଂଶ ଶତକରେ ଓଡିଶା ବଂଗଳାର ସାଂସ୍କୃତିକ ସହଯୋଗିତା: ଦେବୀପ୍ରସନ୍ନ ରାୟଚୌଧୁରୀ* । ୧୯୯୩ । ଏଷଣା, ଜୁନ୍ ।

*ଓଡିଶା ଓ ବଂଗଳାର ସାଂସ୍କୃତିକ ସହଯୋଗିତା: କବି ରାଧାନାଥ ଓ ନାରୀକବି ନଗେନ୍ଦ୍ରବାଳା* । ୧୯୯୪ । ଏଷଣା, ୨୮ ଓ ୨୯ତମ ସଂଖ୍ୟା ।

*ଆଧୁନିକ ଓଡିଆ ଲେଖକଙ୍କର ମାନସିକ ସ୍ଥିତି* । ୧୯୯୪ । ଅନ୍ତର୍ଭୂତ, ଭାଷା ସାହିତ୍ୟର ବର୍ଣ୍ଣବିଭା, କଟକ, ଓଡିଶା ବୁକ୍ସ ଷ୍ଟୋର ।

*ଓଡିଶାରେ ନବଜାଗରଣ ଓ ବୁଦ୍ଧିଜୀବୀ ଭୂମିକାରେ ଗୌରୀଶଙ୍କର* । ୧୯୯୪ । ଅନ୍ତର୍ଭୂତ, ଶତାବ୍ଦୀର ନାୟକ ଗୌରୀଶଙ୍କର, ରାଉରକେଲା, ପ୍ରଗତି ଉତ୍କଳ ସଂଘ ।

*ଭାରତମୁକ୍ତିର ଜଣେ ଅଣଭାରତୀୟ ସ୍ୱପ୍ନଦ୍ରଷ୍ଟା* । ୧୯୯୫ । ଏଷଣା, ଜୁନ୍ ।

*ଭୀମଭୋଇ ଓ ମହିମାଧର୍ମ* । ୧୯୯୭ । ଏଷଣା, ଜୁନ୍ ।

*ନବଯୁଗର ଚାରଣ ନନ୍ଦକିଶୋର* । ୧୯୯୮ । ଅନ୍ତର୍ଭୂତ, ପଲ୍ଲୀକବି ସୃଷ୍ଟି ପରିଧି, ଭୁବନେଶ୍ୱର ଓଡିଶା ସାହିତ୍ୟ ଏକାଡେମୀ ।

*ଜଗନ୍ମୋହନ ଲାଲ:ନବମୂଲ୍ୟାୟନ* । ୧୯୯୯ । ଏଷଣା-୩୮, ଜୁନ୍ ।

*ଦୋଷଦର୍ଶନ* । ୨୦୦୦ । ଏଷଣା-୪୧ତମ ସଂଖ୍ୟା ।

*ଫକୀରମୋହନଙ୍କ ଦୁଇଟି ଅଜ୍ଞାତ ରଚନା* । ୨୦୦୧ । ନବପତ୍ର-୨୮ତମ ବର୍ଷ, ତୃତୀୟ ସଂଖ୍ୟା ।

*କାଳିନ୍ଦୀଚରଣଙ୍କ ପ୍ରବନ୍ଧର ଭାବବସ୍ତୁ* । ୨୦୦୨ । ଅନ୍ତର୍ଭୂତ, କାଳନ୍ଦୀ ଚରଣ ସମୀକ୍ଷାୟନ, କଟକ, ଓଡିଶା ବୁକ୍ସ ଷ୍ଟୋର ।

*ଇତିହାସ ପୃଷ୍ଠାରେ ଜଗନମୋହନ ଲାଲ* । ୨୦୦୪ । ଅନ୍ତର୍ଭୂତ, ଜଗନମୋହନ ଲାଲ, ଭୁବନେଶ୍ୱର, ଓଡିଶା ସାହିତ୍ୟ ଏକାଡେମୀ ।

*ଚାରୋଟି ପତ୍ର : ବ୍ରାହ୍ମଧର୍ମ ଓ ପ୍ୟାରୀମୋହନ* । ୨୦୦୪ । ଅନ୍ତର୍ଭୂତ, ଆଚାର୍ଯ୍ୟ ପ୍ୟାରୀମୋହନ ସାରସ୍ୱତ ସୃଷ୍ଟି ଓ ସୌରଭ, ଭୁବନେଶ୍ୱର, ଓଡିଶା ସାହିତ୍ୟ ଏକାଡେମୀ ।

*ଓଡିଆ ପ୍ରବନ୍ଧ : ୧୯୮୦-୨୦୦୪* । ୨୦୦୫ । ଅନ୍ତର୍ଭୂତ, ୨୫ବର୍ଷର ଓଡିଆ ସାହିତ୍ୟ, ଭୁବନେଶ୍ୱର, ଇଙ୍ଗା ।

*ଅକ୍ଟୋବର ବିପ୍ଳବର ସାଂସ୍କୃତିକ ତାତ୍ପର୍ଯ୍ୟ* । ୨୦୦୯ ଅନ୍ତର୍ଭୂତ, ଆଧୁନିକ ଓଡିଆ ପ୍ରବନ୍ଧ, ଭୁବନେଶ୍ୱର, ଓଡିଶା ସାହିତ୍ୟ ଏକାଡେମୀ ।

*ଲେଖାର ଇତିହାସ ଓ ପୋଥିର ଉପକରଣ* । ୨୦୧୨ ଅନ୍ତର୍ଭୂତ, ପୋଥି ପରିଚୟ, କଟକ ଜେକେବିକେ ସରକାରୀ କଲେଜ ।

*ଗୋପବନ୍ଧୁଙ୍କ ଗଦ୍ୟ ରଚନାର ଆଦିପର୍ବ* । ୨୦୧୩ । ଏଷଣା-୬୯ତମ ସଂଖ୍ୟା

*ଔପନିବେଶକ ପ୍ରେକ୍ଷାପଟ ଓ ଫକୀରମୋହନଙ୍କ ବାସ୍ତବବାଦୀ ଦୃଷ୍ଟିକୋଣ* । ୨୦୧୪ । ଅନ୍ତର୍ଭୂତ, ବିଶ୍ୱ ଦୃଷ୍ଟିରେ ଫକୀରମୋହନ, କଟକ ଫ୍ରେଣ୍ଡସ୍ ପବ୍ଲିଶର୍ସ ।

*ରସାନୁଭୂତିର ଦାର୍ଶନିକ ଭିତ୍ତି* । ୨୦୧୪ । ସାହିତ୍ୟପତ୍ର, କଟକ, ରେଭେନ୍ସା ବିଶ୍ୱବିଦ୍ୟାଳୟ ।

*ସାହିତ୍ୟ ସମାଲୋଚନାର ରୂପରେଖ* । ୨୦୧୬ । ସାହିତ୍ୟପତ୍ର, କଟକ, ରେଭେନ୍ସା ବିଶ୍ୱବିଦ୍ୟାଳୟ ।

*ଉତ୍କଳ ସାହିତ୍ୟ ସମାଜର ପ୍ରତିଷ୍ଠାପର୍ବ ଓ ବିଶ୍ୱନାଥ କର* । ୨୦୧୬ । ଅନ୍ତର୍ଭୂତ, ସାହିତ୍ୟଗୁରୁ ବାଗ୍ମୀ ବିଶ୍ୱନାଥ, କଟକ, ଓଡିଶା ବୁକ୍ ଏମ୍ପୋରିୟମ ।

*ବିଶ୍ୱନାଥଙ୍କ ବିସ୍ମୃତ ପୁସ୍ତକ: ବ୍ରାହ୍ମଧର୍ମ ତତ୍ତ୍ୱ* । ୨୦୧୬ । କୋଣାର୍କ, ଭୁବନେଶ୍ୱର, ଓଡିଶା ସାହିତ୍ୟ ଏକାଡେମୀ ।

*ଓଡିଆ ସାହିତ୍ୟ ଚର୍ଚ୍ଚା ଓ ଗୌରୀଶଙ୍କର* ।୨୦୧୭ । ଅନ୍ତର୍ଭୂତ, ସହୃଦୟ ସଂହିତା, ଭୁବନେଶ୍ୱର ଓଡିଶା ସାହିତ୍ୟ ଏକାଡେମୀ ।

*କର୍ମୀ ଓ କବି ଗୋପବନ୍ଧୁଙ୍କ ଜୀବନର ଆଦିପର୍ବ : ଅବକାଶ ଚିନ୍ତା* । ୨୦୧୯ । ସମାଜ, ଗୋପବନ୍ଧୁ ସଂଖ୍ୟା, କଟକ ।

*ଗୋପବନ୍ଧୁଙ୍କୁ ଲିଖିତ ସୁଭାଷଙ୍କ ତିନୋଟି ପତ୍ର* । ୨୦୨୦ । ସମାଜ, ଗୋପବନ୍ଧୁ ସଂଖ୍ୟା, କଟକ ।

*ମୋହନଦାସ କରମଚାନ୍ଦ ଗାନ୍ଧୀ : ବ୍ୟକ୍ତିତ୍ୱ ଓ ଭାବାଦର୍ଶ* । ୨୦୨୨ । ଏଷଣା, ୮୧ତମ ସଂଖ୍ୟା ।

**ପୁରସ୍କାର ଓ ସମ୍ମାନ**

କ୍ଷେତ୍ରବାସୀ ସାହିତ୍ୟ ବିଦ୍ୟା ପୁରସ୍କାର: ୧୯୯୦ । ଓଡ଼ିଆ ଗବେଷଣା ପରିଷଦ, କଟକ ।
ଗୋପୀନାଥ ନନ୍ଦ ସମ୍ମାନ: ୨୦୧୫ । ଉତ୍କଳ ସାହିତ୍ୟ ସମାଜ, କଟକ ।
ଫକୀରମୋହନ ଇଣ୍ଟରନ୍ୟାସନାଲ୍ ଆୱାର୍ଡ଼: ୨୦୧୮ । ରାଜ୍ୟସ୍ତରୀୟ ବିଶ୍ୱକବି ସ୍ମୃତିସଂସଦ, ଭୁବନେଶ୍ୱର ଏବଂ ଓଡ଼ିଆ ସୋସାଇଟି ଆମେରିକା ।
ବର୍ଷୀୟାନ୍ ସାହିତ୍ୟିକ ସମ୍ମାନ: ଓଡ଼ିଶା ସାହିତ୍ୟ ଏକାଡେମୀ, ୨୦୧୭, ଭୁବନେଶ୍ୱର ।

### ସାକ୍ଷାତ୍‌କାର

# ଗଙ୍ଗାଧରଙ୍କ କବିତାରେ ଗୀତାର ବିଶ୍ୱରୂପ ଦର୍ଶନ ଓ ବର୍ଗସଁଙ୍କ ବିବର୍ତ୍ତନ ତତ୍ତ୍ୱର ସଂଶ୍ଳେଷଣ ଅନନ୍ୟ

*(ଓଡ଼ିଆ ସମାଲୋଚନା ସହିତ୍ୟରେ ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ଏକ ଜଣାଶୁଣା ନାଁ। ଗଙ୍ଗାଧର ସାହିତ୍ୟର ଜଣେ ନିଷ୍ଠାବାନ ଗବେଷକ ଓ ସମାଲୋଚକ। 'ଗଙ୍ଗାଧର କବିତା ଓ କବିଆତ୍ମା' ତାଙ୍କ ଲିଖିତ ଏକ ଉଚ୍ଚକୋଟୀର ଗ୍ରନ୍ଥ। ନୂତନ ଦୃଷ୍ଟିଭଙ୍ଗୀ ନେଇ ତର୍ଜମା କରିଛନ୍ତି। ଗଙ୍ଗାଧରଙ୍କ କାବ୍ୟ କବିତାକୁ ଓଡ଼ିଆ ସାହିତ୍ୟର ଏହି ପ୍ରବୀଣ ସମାଲୋଚକଙ୍କ ସହ ଅଧ୍ୟାପକ ଡକ୍ଟର ନଗେନ ଦାସଙ୍କ ଏକ ଅନ୍ତରଙ୍ଗ ଆଳାପର କିୟଦଂଶ ଉପସ୍ଥାପନା କରୁଛୁ।)*

ପ୍ରଶ୍ନ : ପଶ୍ଚିମ ଓଡ଼ିଶା ସହ ଆପଣଙ୍କ ସଂପର୍କ କେବେଠାରୁ? ଏହି ସଂପର୍କ ପରେ ଗଙ୍ଗାଧରଙ୍କ ପ୍ରତି ଆପଣଙ୍କ ଶ୍ରଦ୍ଧା ଜନ୍ମଛି ନା ଗଙ୍ଗାଧର ଆପଣଙ୍କୁ ପଶ୍ଚିମ ଓଡ଼ିଶା ପ୍ରତି ଆକୃଷ୍ଟ କରିଛନ୍ତି ?

ଉତ୍ତର: ପଶ୍ଚିମ ଓଡ଼ିଶା ସହ ମୋର ସଂପର୍କ ୧୯୬୯ ମସିହାରୁ। ସେଇ ବର୍ଷ ମାଟ୍ରିକ୍ ପରୀକ୍ଷା ପରେ ମୁଁ ପଢ଼ିଥିଲି ସମ୍ବଲପୁର ଗଙ୍ଗାଧର ମେହେର କଲେଜରେ। ସେଠି ପଢ଼ିଲା ବେଳେ ଗଙ୍ଗାଧର ସାହିତ୍ୟ ଚର୍ଚ୍ଚାରୁ ଆକୃଷ୍ଟ ହୋଇପଡ଼ିଲି। କ୍ରମଶଃ ଗଙ୍ଗାଧରଙ୍କ ସାହିତ୍ୟ ମୋର ଆବେଗିକ ସଂପର୍କରେ ଘନିଷ୍ଠ ହେବାରେ ଲାଗିଲା। ଥରେ ଗଙ୍ଗାଧରଙ୍କ ଜୟନ୍ତୀ ସମୟରେ ମେହେର ସାହିତ୍ୟ ସଂପର୍କରେ ଏକ ପ୍ରବନ୍ଧ ପ୍ରତିଯୋଗିତା ହୋଇଥିଲା। ପ୍ରବନ୍ଧ ପ୍ରତିଯୋଗିତାରେ ଅଂଶଗ୍ରହଣ କରିଥିଲି ଓ ବୋଧହୁଏ ତୃତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲି। ସେହିଦିନଠାରୁ ଗଙ୍ଗାଧର ସାହିତ୍ୟ ପ୍ରତି ଅନୁରାଗ।

ପ୍ରଶ୍ନ: ପ୍ରତିଯୋଗିତାରେ ଅଂଶଗ୍ରହଣ କରିବା ପାଇଁ ଗଙ୍ଗାଧର ସାହିତ୍ୟ ପଢ଼ିଲେ, ନା ଏହା ପୂର୍ବରୁ ଗଙ୍ଗାଧରଙ୍କ କାବ୍ୟକବିତା ପଢ଼ିଥିଲେ।

ଉତ୍ତର: ମୁଁ ହାଇସ୍କୁଲରେ ପଢ଼ିଲା ବେଳେ କେବଳ ଗଙ୍ଗାଧର ନୁହନ୍ତି, ବ୍ୟାସକବି ଫକୀରମୋହନ, ମଧୁସୂଦନ, ରାଧାନାଥ, ବଳଦେବ ପ୍ରମୁଖଙ୍କ ଗ୍ରନ୍ଥାବଳୀ ସହ ଗଙ୍ଗାଧର ଗ୍ରନ୍ଥାବଳୀ ଅଧ୍ୟୟନ କରିଥିଲି। ଜୀବନୀ ପଢ଼ିବା ନିଶାରେ ଗଙ୍ଗାଧରଙ୍କ ସାହିତ୍ୟ ଚର୍ଚ୍ଚା ସମ୍ପର୍କିତ ବିରକିଶୋର ଦାସଙ୍କ 'ସ୍ୱଭାବ କବି ଗଙ୍ଗାଧର' ଓ ନଗେନ୍ଦ୍ରନାଥ ପ୍ରଧାନଙ୍କ 'ମେହେର ସାହିତ୍ୟିର ଭୂମିକା' ହାଇସ୍କୁଲ ସମୟରେ ହିଁ ପଢ଼ିଥିଲି।

ପ୍ରଶ୍ନ: ସାଧାରଣ ପାଠକ ଭାବେ ଗଙ୍ଗାଧରଙ୍କୁ ପ୍ରଥମେ ପଢ଼ିବା ସମୟରେ ଆପଣଙ୍କ ଅନୁଭବ କିପରି ଥିଲା ?

ଉତ୍ତର: ଗଙ୍ଗାଧରଙ୍କ ଗୋଟିଏ କବିତା 'ଆଶ୍ରମେ ପ୍ରଭାତ' ନବମ ଶ୍ରେଣୀରେ ଆମ ପାଠ୍ୟକ୍ରମରେ ଥିଲା। ତା' ସହିତ ଗଙ୍ଗାଧରଙ୍କ ଗ୍ରନ୍ଥାବଳୀ ପଢ଼ିଲା ପରେ ତାଙ୍କ କବିତାରେ ପ୍ରକୃତି ବର୍ଣ୍ଣନା, ଛନ୍ଦଯୋଜନା ଓ ଭାଷା ମୋତେ ଆବିଷ୍ଟ କରିଥିଲା। 'ତପସ୍ୱିନୀ'ରେ ସୀତାଙ୍କ ଚରିତ୍ର 'ପ୍ରଣୟବଲ୍ଲରୀ'ରେ ଶକୁନ୍ତଳାଙ୍କ ତ୍ୟାଗ ମୋ କିଶୋର ମନକୁ ଉଦ୍‌ବେଳନ କରିଥିଲା। ଊନବିଂଶ ତଥା ଆଦ୍ୟ ବିଂଶ ଶତାବ୍ଦୀରେ ଯେଉଁ ଦୁଇଜଣ ସାହିତ୍ୟିକ ମୋ ମନକୁ ଗଭୀର ଭାବେ ସ୍ପର୍ଶ କରିଥିଲେ, ଜଣେ ହେଲେ ଫକୀରମୋହନ ଏବଂ ଅନ୍ୟ ଜଣେ ଗଙ୍ଗାଧର ମେହେର।

ପ୍ରଶ୍ନ: ସମୀକ୍ଷକ ଭାବେ ଗଙ୍ଗାଧରଙ୍କୁ ପଢ଼ିବା ପରେ ପୂର୍ବର ସେଇ ଅନୁଭବରେ କି ପ୍ରକାର ପରିବର୍ତ୍ତନ ଘଟିଥିଲା।

ଉତ୍ତର: ପ୍ରକୃତପକ୍ଷରେ କହିଲେ, ଗଙ୍ଗାଧର ସାହିତ୍ୟ ଆଲୋଚନା ଯେଉଁ ତତ୍ତ୍ୱ ଭୂମିରୁ ହେବା ଉଚିତ ସେ ତତ୍ତ୍ୱ ଭୂମି ସହିତ ମୁଁ ସ୍ନାତକ ଶ୍ରେଣୀ ଓ ସ୍ନାତକ ଶ୍ରେଣୀର ଛାତ୍ର ଥିବାବେଳେ ଖୁବ୍ ପରିଚିତ ହୋଇଥିଲି। ତାହା ମୁଖ୍ୟତଃ ମୋ ମୁଗ୍ଧ ଅନୁଭବର ହିଁ ଫଳଶ୍ରୁତି ଥିଲା। ପରବର୍ତ୍ତୀ ସମୟରେ ମୁଁ ସେଇ ଆବେଗିକ ପରିବେଷ୍ଟନୀରୁ ମୁକ୍ତ ହେବାକୁ ଚେଷ୍ଟା କରିଛି।

ପ୍ରଶ୍ନ: ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ପ୍ରକାଶିତ ସାହିତ୍ୟ ପତ୍ରିକା 'ସପ୍ତର୍ଷି'ର ପ୍ରଥମ ବର୍ଷ ୨ୟ ସଂଖ୍ୟାର ଗଙ୍ଗାଧରଙ୍କ ଉପରେ ଆପଣଙ୍କ ପ୍ରଥମ ପ୍ରବନ୍ଧ 'ମେହେର ସାହିତ୍ୟରେ ମହାଭାରତୀୟ ଚେତନା' ଏବଂ ତୃତୀୟ ସଂଖ୍ୟାରେ 'ତପସ୍ୱିନୀର ଆଲୋଚନାର ଆଲୋଚନା' ପ୍ରବନ୍ଧ ପ୍ରକାଶିତ ହେଲାବେଳେ ଆପଣ ଥିଲେ ଗଙ୍ଗାଧର ମେହେର କଲେଜର ଓଡ଼ିଆ ସମ୍ମାନର ଦ୍ୱିତୀୟ ବର୍ଷର ଛାତ୍ର। ଏହି ଦୁଇଟି ପ୍ରବନ୍ଧ ପ୍ରକାଶିତ ହେଲା ପରେ ତତ୍କାଳୀନ ଛାତ୍ର ସମାଜ ଓ ବୌଦ୍ଧିକ ସମାଜ ଏହାକୁ କିଭଳି ଗ୍ରହଣ କରିଥିଲା।

ଉତ୍ତର: ଗଙ୍ଗାଧରଙ୍କ ସମ୍ପର୍କରେ 'ସପ୍ତର୍ଷି'ରେ ପ୍ରକାଶିତ ମୋର ପ୍ରଥମ ପ୍ରବନ୍ଧ 'ମେହେର ସାହିତ୍ୟରେ ମହାଭାରତୀୟ ଚେତନା' ଏକ ପାରମ୍ପରିକ ପ୍ରବନ୍ଧ। ଏହି ପ୍ରବନ୍ଧଟି

ପଢ଼ିଲା ପରେ ମୋର ଶିକ୍ଷକ ଡ. ଜାନକୀବଲ୍ଲଭ ମହାନ୍ତି, ଡ. ଗୋପାଳଚନ୍ଦ୍ର ମିଶ୍ର, ଅଧ୍ୟାପକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ଅଧ୍ୟାପକ ରାଧାଶ୍ୟାମ ବେହେରା, ଅଧ୍ୟାପକ ବାଳକୃଷ୍ଣ ଶତପଥୀ, ଅଧ୍ୟାପକ ନାରାୟଣ ଶତପଥୀ ଓ ଅଧ୍ୟାପକ ବନମାଳୀ ମିଶ୍ର ପ୍ରମୁଖଙ୍କ ବିଚାର ମୋତେ ଉତ୍ସାହିତ କରିଥିଲା। କିନ୍ତୁ ଗଙ୍ଗାଧରଙ୍କ ସଂପର୍କରେ ଦ୍ୱିତୀୟ ପ୍ରବନ୍ଧଟି ମୋର ବିତର୍କିତ ପରିଚିତି ଦେଇଥିଲା। 'ସପ୍ତର୍ଷି' ସଂପାଦନା ମଣ୍ଡଳୀର ଅନ୍ୟତମ ସଦସ୍ୟ ପ୍ରଫେସର ଡ. ପ୍ରଫୁଲ୍ଲ କୁମାର ପତିଙ୍କର 'ତପସ୍ୱିନୀର ଆଲୋଚନା' ଶୀର୍ଷକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା। ଡ. ପତିଙ୍କ ବକ୍ତବ୍ୟ ଥିଲା, 'ତପସ୍ୱିନୀ' କାବ୍ୟର ସୀତା ତପସ୍ୱିନୀ ନୁହନ୍ତି, ଜଣେ ସାଧାରଣ ମାନବୀ ମାତ୍ର। ସେଥିପାଇଁ ତାଙ୍କ ହସ, ଅଶ୍ରୁ ଆବେଗିକ ପ୍ରତିକ୍ରିୟା ତପସ୍ୱିନୀ କାବ୍ୟକୁ ମାନବିକ ଆବେଗ ଓ କରୁଣ ରସରେ ଉଷ୍ମ କରିଛି, ଫଳରେ ତପସ୍ୱିନୀ କାବ୍ୟର ମୁଖ୍ୟ ରସ ହୋଇଛି କରୁଣ ଓ ଶାନ୍ତ ରସ। ଏହି ପ୍ରବନ୍ଧଟି ଦ୍ୱିତୀୟ ସିଦ୍ଧାନ୍ତ ଉପରେ ମୁଁ କୌଣସି ମତାମତ ନଦେଇ ତା'ର ପ୍ରଥମ ସିଦ୍ଧାନ୍ତ ଉପର ଏକ ଦୀର୍ଘ ପତ୍ର 'ସପ୍ତର୍ଷି'ର ତତ୍କାଳୀନ ମୁଖ୍ୟ ସଂପାଦକ ତଥା କୁଳପତି ପ୍ରଫେସର ଭୁବନେଶ୍ୱର ବେହେରାଙ୍କ ନିକଟକୁ ପଠାଇଥିଲି। ପ୍ରଫେସର ବେହେରାଙ୍କ ଶ୍ରଦ୍ଧା ଓ ପ୍ରଫେସର ପତିଙ୍କ ଉଦାରତା ଯୋଗୁ ଏହା ପତ୍ରିକାରେ ଏକ ପ୍ରବନ୍ଧ ରୂପେ ପ୍ରକାଶ କରାଯାଇଥିଲା। ସାହିତ୍ୟ ଚର୍ଚ୍ଚା କରୁଥିବା ଅଧ୍ୟାପକ, ଶିକ୍ଷକ, ପାଠକମାନଙ୍କ ନିକଟରେ ମୁଁ ରାତାରାତି ହିରୋ ବନି ଯାଇଥିଲି ଏବଂ ମୋ ଭଳି ଏକ ଅଧିସ୍ନାତକ ଛାତ୍ର ପାଇଁ ତାହା ଥିଲା ଏକ ଦୁର୍ଲଭ ଉପଲବ୍ଧି। ତେବେ ସେହି ସମୟରେ ପ୍ରଫେସର ପତିଙ୍କ ପ୍ରବନ୍ଧ ସଂପର୍କରେ ମୁଁ କରିଥିବା ଆଲୋଚନା ପିଲାଳିଆମି ଥିଲା, ଏଥିରେ ସନ୍ଦେହ ନାହିଁ। ପରବର୍ତ୍ତୀ କାଳରେ ମୋର ପୂଜ୍ୟ ଗୁରୁ ଅଧ୍ୟାପକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା ଏକ ଦୀର୍ଘ ପ୍ରବନ୍ଧ ଲେଖି ପ୍ରଫେସର ପତି ଉଠାଇଥିବା ପ୍ରଶ୍ନର ଯଥାର୍ଥ ମୀମାଂସା କରିଥିଲେ, ଯାହା 'ପତିହିତ ସାଧିନୀ' ଶୀର୍ଷକରେ ସଂକଳିତ ହୋଇଛି 'କାବ୍ୟଶିଳ୍ପୀ ଗଙ୍ଗାଧର' ପୁସ୍ତକରେ।

ପ୍ରଶ୍ନ: ମେହେର ସାହିତ୍ୟର ସଂଗ୍ରହ ଓ ସଂପାଦନା କ୍ଷେତ୍ରରେ ଆପଣଙ୍କର ଏକ ବିଶିଷ୍ଟ ଭୂମିକା ରହିଛି। ମେହେରଙ୍କ ରଚନାର ପୁନଃଉଦ୍ଧାରପାଇଁ ଆପଣ ପ୍ରଲୁବ୍ଧ ହେଲେ କାହିଁକି ?

ଉତ୍ତର: ଉପାଧ୍ୟୁତ୍ତର ଶ୍ରେଣୀର ଅଧ୍ୟୟନ କଲା ପର୍ଯ୍ୟନ୍ତ ମୁଁ କୌଣସି ପ୍ରାଚୀନ ପତ୍ରପତ୍ରିକାକୁ ମୌଳିକ ଭାବେ ଅଧ୍ୟୟନ କରିନଥିଲି। ଯଦିଓ ନଟବର ସାମନ୍ତରାୟଙ୍କ ଗବେଷଣା ମୋତେ ଅନେକାଂଶରେ ମନ୍ତ୍ରମୁଗ୍ଧ କରିଥିଲା। ତଥାପି ସେଇ ଧାରାରେ ଆଗକୁ ବଢ଼ିବାପାଇଁ ମୋର ସାହାସ ଓ ସାମର୍ଥ୍ୟ ନଥିଲା। ଶାନ୍ତିନିକେତନରେ ଗବେଷଣା କରୁଥିବାବେଳେ ପ୍ରଥମ ଥର ପାଇଁ ମୁଁ ଉତ୍କଳ ସାହିତ୍ୟର ସଂଖ୍ୟାଗୁଡ଼ିକ ପଢ଼ିବାକୁ ଆରମ୍ଭ କରିଥିଲି। ସେଠାରେ ଥିବା ସମୟରେ ଉତ୍କଳ ସାହିତ୍ୟ ସମାଜର ମଧୁସୂଦନ ପାଠାଗାର,

ଓଡ଼ିଶା ରାଜ୍ୟ ଅଭିଲେଖାଗାର ଏବଂ ଓଡ଼ିଶା ରାଜ୍ୟ ସଂଗ୍ରାହଳୟରେ ଥିବା ପୁରୁଣା ସମ୍ବାଦପତ୍ର, ପତ୍ରପତ୍ରିକା ଓ ପୁସ୍ତକକୁ ପଢ଼ିବାକୁ ଆରମ୍ଭ କଲି । ମୁଁ ଅନୁଭବକଲି ଗଙ୍ଗାଧର କିମ୍ବା ତାଙ୍କ ସମକାଳୀନ କବି, ଲେଖକମାନଙ୍କ ରଚନାବଳୀର ଯେ ପର୍ଯ୍ୟନ୍ତ ଯଥାଯଥ ସଂଗ୍ରହ ଓ ସଂପାଦନା ହୋଇନାହିଁ, ସେପର୍ଯ୍ୟନ୍ତ ସେମାନଙ୍କ ସାହିତ୍ୟ ସଂପର୍କରେ ଯେ କୌଣସି ଆଲୋଚନା ଶୂନ୍ୟରେ କୋଠା ତିଆରି କଲା ଭଳି ଏକ ନିଷ୍ଫଳ ଉଦ୍ୟମ । ସେତିକିବେଳେ ଗଙ୍ଗାଧରଙ୍କ କେତେକ କବିତା ଓ ଛୋଟ ଛୋଟ ଗଦ୍ୟ ରଚନା ମୋ ଦୃଷ୍ଟିକୁ ଆସିଥିଲା ସେଗୁଡ଼ିକ ସପ୍ତର୍ଷି, ଏଷଣା ତଥା ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗର ରୌପ୍ୟଜୟନ୍ତୀ ସ୍ମରଣିକାରେ ମୁଁ ପ୍ରକାଶ କରିଥିଲି

ପ୍ରଶ୍ନ: 'ଗଙ୍ଗାଧର: କବିତା ଓ କବିଆତ୍ମା' ପୁସ୍ତକ ପ୍ରକାଶିତ ହେବା ପରେ ଆଲୋଚକମାନେ ଗଙ୍ଗାଧରଙ୍କ ସଂପର୍କରେ ସେମାନଙ୍କ ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ ଆଣିଛନ୍ତି ବୋଲି ଆପଣ ଲକ୍ଷ୍ୟ କରିଛନ୍ତି କି ?

ଉତ୍ତର: 'ଗଙ୍ଗାଧର କବିତା ଓ କବିଆତ୍ମା' ପୁସ୍ତକ ବହୁ ଗଙ୍ଗାଧର ସାହିତ୍ୟପ୍ରେମୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ସେଥିରେ ଥିବା ତଥ୍ୟାବଳୀ ଗଙ୍ଗାଧରଙ୍କ ସମ୍ପର୍କରେ ବିଚାର ପରିବର୍ତ୍ତନର ସହାୟକ ହୋଇଛି । କିନ୍ତୁ ଗଙ୍ଗାଧରଙ୍କ ସଂପର୍କରେ ସାଧାରଣସ୍ତରରେ ଯେଉଁ ଧାରଣା ରହିଛି, ତାହାର ବିଶେଷ କିଛି ପରିବର୍ତ୍ତନ ଘଟିନାହିଁ । ପରବର୍ତ୍ତୀ ଆଲୋଚକମାନେ ଏହି ବହିରେ ଉପସ୍ଥାପିତ ତଥ୍ୟାବଳୀକୁ ଆବଶ୍ୟକତା ଅନୁଯାୟୀ ବ୍ୟବହାର କରିଛନ୍ତି ।

ପ୍ରଶ୍ନ: ଗଙ୍ଗାଧରଙ୍କ ସାହିତ୍ୟକୁ ଆପଣ କେଉଁ ଦୃଷ୍ଟିରେ ଗ୍ରହଣ କରିଛନ୍ତି, ଭାକ୍ତିକ ନା ବିଜ୍ଞାନୀ ଦୃଷ୍ଟି ?

ଉତ୍ତର: ଗଙ୍ଗାଧର ସାହିତ୍ୟକୁ ପ୍ରଥମେ ମୁଁ କୌଣସି ସମାଲୋଚକର ଦୃଷ୍ଟି ନେଇ ପଢ଼ି ନ ଥିଲି । ପରବର୍ତ୍ତୀ କାଳରେ ମୋ ଦୃଷ୍ଟିରେ ଗଙ୍ଗାଧର ହୋଇଉଠିଛନ୍ତି ବୃହତ ଓଡ଼ିଶା ଗଠନର ଅନ୍ୟତମ ସ୍ଥପତି । ପଶ୍ଚିମ ଓଡ଼ିଶାର କବି ସାହିତ୍ୟିକ ଓ ଦେଶସେବକମାନେ ନିଜଆଡୁ ଉଦ୍ୟମ ଆରମ୍ଭ କରିନଥିଲେ ସମ୍ବଲପୁର ସମେତ ପଶ୍ଚିମ ଓଡ଼ିଶା ବୃହତ୍ତର ଓଡ଼ିଶାର ଅଂଶବିଶେଷ ହୋଇପାରିନଥାନ୍ତା । ସେଇ ଦୃଷ୍ଟିରୁ ବ୍ୟକ୍ତି ଓ ଦେଶପ୍ରେମୀ ଗଙ୍ଗାଧରଙ୍କ ସହିତ ମୋର ଆବେଗିକ ସଂପର୍କ ରହିଛି । କିନ୍ତୁ ତାଙ୍କ ସାହିତ୍ୟର ଆଲୋଚନା କଲାବେଳେ କିମ୍ବା ଜୀବନୀର ପର୍ଯ୍ୟାଲୋଚନା କଲାବେଳେ ସେଇ ଆବେଗକୁ ମୁଁ ଲଗାମ ଦେବାକୁ ଚେଷ୍ଟା କରିଛି । ତେଣୁ ଗଙ୍ଗାଧରଙ୍କ ପ୍ରତି ମୋର ଦୃଷ୍ଟିକୋଣକୁ ଠିକ୍ ବିଜ୍ଞାନଦୃଷ୍ଟି ହୁଏତ କହିନପାରେ, କିନ୍ତୁ ତାହା କେବେ ଭକ୍ତିର ଦୃଷ୍ଟି ନୁହେଁ ।

ପ୍ରଶ୍ନ: ଗଙ୍ଗାଧରଙ୍କର କେଉଁ କାବ୍ୟ ଆପଣଙ୍କୁ ବିଶେଷ ଭାବେ ପ୍ରଭାବିତ କରିଛି ଓ କାହିଁକି ?

ଉତ୍ତର: ଗଙ୍ଗାଧରଙ୍କ କୌଣସି ନିର୍ଦ୍ଦିଷ୍ଟ କାବ୍ୟ ମୋତେ ପ୍ରଭାବିତ କରିଛି, ଏକଥା ମୁଁ କହିପାରିବି ନାହିଁ। ତାଙ୍କ ବିଭିନ୍ନ କାବ୍ୟ ବା କବିତା ସଂଗ୍ରହ ଭିନ୍ନ ଭିନ୍ନ କାରଣପାଇଁ ମୋତେ ଆକୃଷ୍ଟ ଓ ପ୍ରଭାବିତ କରିଛି। ଏହି ଆକର୍ଷଣ ଓ ପ୍ରଭାବର ଗଭୀରତା ଦୃଷ୍ଟିରୁ ଦେଖିଲେ 'ଅର୍ଘ୍ୟଥାଳି' ଓ 'ତପସ୍ୱିନୀ' ଉଭୟକୁ ମୁଁ ସମାନ ମୂଲ୍ୟ ଦେଇଆସିଛି। 'ଅର୍ଘ୍ୟଥାଳି'ର ବିଭିନ୍ନ କବିତାରେ ଗଙ୍ଗାଧର ସମକାଳର ବିଭିନ୍ନ ସମସ୍ୟା ଓ ଆହ୍ୱାନକୁ ଯେଭଳି ମୋହମୁକ୍ତ ଦୃଷ୍ଟି ନେଇ ଦେଖିଛନ୍ତି, ତାହା ମୋତେ ପ୍ରଭାବିତ କରିଛି। 'ଭକ୍ତି', 'ମଧୁମୟ', 'ଅମୃତମୟ' ଏହି ତିନୋଟି କବିତାର ଗୀତାର ବିଶ୍ୱରୂପଦର୍ଶନ ଓ ବର୍ଗସଁଙ୍କ ବିବର୍ତ୍ତନତତ୍ତ୍ୱର ଯେଉଁ ସଂଶ୍ଲେଷ କରାଯାଇଛି, ସେଭଳି ଧାରଣା ସମକାଳୀନ ଅନ୍ୟ ଓଡ଼ିଆ କବିଙ୍କ ରଚନାରେ ଦୁର୍ଲ୍ଲଭ। ଠିକ୍ ସେଇଭଳି 'ଗଣେଶଙ୍କ ଆତ୍ମକଥା', 'ଜନ୍ମଭୂମି', 'ଉତ୍କଳଭାରତୀଙ୍କ ଉକ୍ତି' ଆଦି କବିତାରେ ତାଙ୍କ ସମୟର ବିଭିନ୍ନ ସମସ୍ୟାକୁ ଯେଭଳି ପୁରୋଦୃଷ୍ଟି ନେଇ ସେ ଦେଖିଛନ୍ତି ଓ କାବ୍ୟରୂପ ଦେଇଛନ୍ତି, ସେ କଥା ଆଜି ମଧ୍ୟ ଭାବିଲେ ଆଶ୍ଚର୍ଯ୍ୟ ଲାଗେ। ସେଇଭଳି 'ତପସ୍ୱିନୀ' କାବ୍ୟରେ ନାରୀର ବ୍ୟକ୍ତି- ସ୍ୱାତନ୍ତ୍ୟବୋଧ ଓ ମର୍ଯ୍ୟାଦାଜ୍ଞାନ ସହିତ ଘଟିଛି ଅପୂର୍ବ ସମନ୍ୱୟ। ବିଜ୍ଞାନ ସଚେତନ କବି ପ୍ରକୃତି ଓ ମଣିଷ ମଧ୍ୟରେ ପରିପୂର୍ଣ୍ଣ ମିଳନ କରାଇଛନ୍ତି ଏହି କାବ୍ୟରେ।

ପ୍ରଶ୍ନ: ଗଙ୍ଗାଧରଙ୍କ ସାହିତ୍ୟଚର୍ଚ୍ଚାରେ ଆପଣ ବିଶେଷ ଭାବେ ତତ୍ତ୍ୱ ବିଶ୍ଳେଷଣ ଉପରେ ଗୁରୁତ୍ୱ ଦେଇଛନ୍ତି। ଏବେ କ'ଣ ସେଇ ଧାରାକୁ ପ୍ରାଧାନ୍ୟ ଦେଉଛନ୍ତି ?

ଉତ୍ତର: ଗଙ୍ଗାଧର ସାହିତ୍ୟଚର୍ଚ୍ଚାରେ ତଥ୍ୟ ଓ ତତ୍ତ୍ୱ ଉଭୟ ଉପରେ ମୁଁ ଗୁରୁତ୍ୱ ଦେଇଛି; କେବଳ ତତ୍ତ୍ୱ ଉପରେ ନୁହେଁ। କିନ୍ତୁ ଯେ କୌଣସି ସାହିତ୍ୟ କୃତିକୁ ଅଧ୍ୟୟନ କରିବାକୁ ହେଲେ ଜଣେ ପାଠକର ସେଥିପାଇଁ ଯୋଗ୍ୟତା ଥିବା ଦରକାର। ଗଙ୍ଗାଧର ସାହିତ୍ୟ ଆଲୋଚନା କଲାବେଳେ ମୁଁ କେତେକ ତତ୍ତ୍ୱର ସାହାଯ୍ୟ ନେଇଛି ଓ ତା'ର ବିଶ୍ଳେଷଣ କରିଛି। କିନ୍ତୁ ତତ୍ତ୍ୱ ବିଶ୍ଳେଷଣ ମୋର ଧ୍ୟେୟ ନୁହେଁ ବା ତତ୍ତ୍ୱର ମାପକାଠିରେ କୌଣସି ସାହିତ୍ୟକୃତିକୁ ବିଚାର କରିବାରେ ମୁଁ ପକ୍ଷପାତି ନୁହେଁ। ଯେହେତୁ ଗଙ୍ଗାଧରଙ୍କ ସଂପର୍କିତ ମୋର ସମସ୍ତ ରଚନା ପ୍ରାଥମିକ ସ୍ତରର, ସେଥିପାଇଁ ସେଥିରେ ତତ୍ତ୍ୱ ବିଶ୍ଳେଷଣ ଗୁରୁତ୍ୱ ଲାଭ କରିଛି।

ପ୍ରଶ୍ନ: ଗଙ୍ଗାଧରଙ୍କ ସାହିତ୍ୟ ସଂପର୍କରେ ନୂଆ କିଛି କରିବାକୁ ମନରେ ସ୍ଥିର କରିଛନ୍ତି କି ?

ଉତ୍ତର: ଗଙ୍ଗାଧରଙ୍କ ସଂପର୍କରେ ମୋର ପରିକଳ୍ପିତ ଆଲୋଚନା ଏବେ ମଧ୍ୟ ପରିକଳ୍ପନା ଭିତରେ ରହିଛି। ଯଦି ଭବିଷ୍ୟତରେ ସୁଯୋଗ ଆସେ, ସେଇ ପରିକଳ୍ପନାକୁ ମୁଁ କାର୍ଯ୍ୟରେ ପରିଣତ କରିବି। ଗଙ୍ଗାଧରଙ୍କ କବି ଜୀବନର କ୍ରମବିକାଶ, ପଶ୍ଚିମ ଓଡ଼ିଶାରେ

ସାହିତ୍ୟ ସଂସ୍କୃତି ନିର୍ମାଣରେ ତାଙ୍କର ଅବଦାନ, ତାଙ୍କର ସୌନ୍ଦର୍ଯ୍ୟ ଦର୍ଶନ, ପ୍ରକୃତି ଧାରଣା ଓ ତା'ର ରୂପାୟନ, ମାନବପ୍ରତ୍ୟୟ ଓ ଚରିତ୍ରଚିତ୍ରଣ, ଗଙ୍ଗାଧର କାବ୍ୟର ଗଢ଼ଣ ଓ ମେହେର କାବ୍ୟଭାଷା ସଂପର୍କରେ ଆଲୋଚନା କରିବା ସୁଯୋଗ ରହିଛି। ଯଦି ଭବିଷ୍ୟତରେ କେବେ ଗଙ୍ଗାଧରଙ୍କ ସଂପର୍କରେ ବିଶଦ ଆଲୋଚନା କରିବାର ସୁଯୋଗ ଆସେ, ତେବେ ନିଶ୍ଚିତ ଭାବେ ଏହି ବିଷୟଗୁଡ଼ିକ ଆଲୋଚନାର ପ୍ରମୁଖ ସ୍ଥାନ ଅଧିକାର କରିବ।



## ଅଶ୍ୱିନୀ କୁମାର ମିଶ୍ର

# ଦେବେନ୍ଦ୍ରଃ ଜୀବନ୍ତ ସ୍ମୃତି

ଦେବେନ୍ଦ୍ରଙ୍କ ସହିତ ମୋର ପରିଚୟ ଅର୍ଦ୍ଧଶତାବ୍ଦୀରୁ ଊର୍ଦ୍ଧ୍ୱ। ୧୯୭୧ ମସିହାରୁ। କେତେ ନୂଆ ମୁହଁ, ବୃକ୍ଷଲତା, ପଶୁପକ୍ଷୀଙ୍କ ପଟୁଆର ପାଛୋଟି ଆଣିଲାଣି ଧରା। ସମ୍ବଲପୁରର ଚେହେରା ଯଥେଷ୍ଟ ବଦଳିଗଲାଣି। ମନେପଡୁଛି ଆମ ଉଭୟଙ୍କ ପ୍ରଥମ ସାକ୍ଷାତ। ସେଠାକାର ପୁରୁଣା ବସ୍‌ଷ୍ଟାଣ୍ଡ୍। ମାଗାଜିନ୍ ଦୋକାନ 'ଅରବିନ୍ଦ ଷ୍ଟୋର୍'। ଦେବେନ୍ଦ୍ର ଏକାଗ୍ର ମନରେ ଷ୍ଟଲ୍‌ଟିରେ ବସି କେଉଁ ପତ୍ରିକାର ପୃଷ୍ଠା ଓଲଟାଉଥା'ନ୍ତି। ମୁଁ ପହଞ୍ଚିଲି। ଆମେ ଉଭୟେ ସେତେବେଳକୁ ଗଙ୍ଗାଧର ମେହେର ମହାବିଦ୍ୟାଳୟର ଛାତ୍ର। ସେ ମୋଠାରୁ ଦି'ଶ୍ରେଣୀ ତଳେ। ବୟସ ଅନୁପାତରେ ବି ଠିକ୍ ସେଇୟା। ସେଇଠି ଆଉଦିନେ ଦେଖିଲି, 'ଆସନ୍ତାକାଲି'ର ପୃଷ୍ଠାରେ ଦେବେନ୍ଦ୍ରଙ୍କ ପ୍ରବନ୍ଧ 'ରାଜଜେମା ହେ ନାରୀ ନନ୍ଦିକା'। ପ୍ରବନ୍ଧଟିର ଆଦ୍ୟୋପାନ୍ତ ପଢ଼ିଲାପରେ ମନେହେଲା ଏଇ ବାଲ୍ୟସୁଲଭତାରୁଣ୍ୟ ମିଶ୍ରିତ ବୟସରେ ଏଭଳି ପ୍ରଜ୍ଞାବହୁଳ ଗଦ୍ୟଭାଷାର ବିସ୍ତରଣ। କବିବର ରାଧାନାଥଙ୍କ 'ନନ୍ଦିକେଶରୀ'କୁ ପଢ଼ି ତା' ଉପରେ ନିଜର ଭାବଗର୍ଭିତ ବିଶ୍ଳେଷଣ। ରାଜା ସୁବର୍ଣ୍ଣକେଶରୀଙ୍କ କନ୍ୟା ନନ୍ଦିକା ଚୋଡ଼ଗଙ୍ଗଙ୍କୁ ନିଜର ପତି ରୂପେ ପାଇବା ପାଇଁ ଆଗ୍ରହ ପ୍ରକାଶ କରୁଥିଲାବେଳେ ତାଙ୍କଠୁ ପ୍ରତ୍ୟାଖ୍ୟାତ ହୋଇ ଆତ୍ମହତ୍ୟାର ପଥ ବାଛିନେଇଛି। ଗ୍ରୀକ୍ ପୁରାଣସ୍ଥିତ 'ସିଲା ଉପାଖ୍ୟାନ'ର ଆଂଶିକ ଭିତ୍ତିଭୂମିରେ ପ୍ରତିଷ୍ଠିତ ଏଇ କାବ୍ୟିକ ସୌଧର ଅନ୍ତଃପୁରରେ ଆଲୁଅ ପକେଇ ତାକୁ ନିରୀକ୍ଷଣ କରିଥିବା ଦେବେନ୍ଦ୍ରଙ୍କ ବୟସ ସେତେବେଳକୁ ମାତ୍ର ସତର-ଅଠର। ଏହା ଆମଭଳି ସତୀର୍ଥମାନଙ୍କୁ ତାଙ୍କ ମଗଜର ଓଜଃରେ ଚମକେଇ ଦେବାପାଇଁ ଯଥେଷ୍ଟ ଥିଲା।

ଦେବେନ୍ଦ୍ରଙ୍କ କଲେଜ ଜୀବନ ଥିଲା ଗୌରବମୟ, ଅପେକ୍ଷାକୃତ ସଂଘର୍ଷଶୀଳ। ପାଠପଢ଼ାରେ ଉଭୟ ଓଡ଼ିଆ ଅନର୍ସ ଓ ସ୍ନାତକୋତ୍ତର ଶ୍ରେଣୀରେ ସେ ଥିଲେ ଅଦ୍ୱିତୀୟ। ଗୋଲ୍ଡ ମେଡ଼ାଲିଷ୍ଟ। ତେବେ ଶାନ୍ତିନିକେତନରେ ଗବେଷକ ଭାବେ ଯୋଗଦେଇ ପିଏଚ୍‌ଡ଼ି

ସନ୍ଦର୍ଭ ଦାଖଲ ନ କରିବାର କାରଣରୁ ତାଙ୍କ ସଫଳତାର ଜୟମାଲ୍ୟରୁ ଯେମିତି ଫୁଲକେଇଟା ଝାଉଁଳି ପଡ଼ିଥିଲେ। ଏ ସମ୍ପର୍କରେ ମନେହୁଏ ସେ ଯେ ଅନାୟାସରେ ଦୌଡ଼ିପାରୁଥିଲେ, ତାଙ୍କପାଇଁ ପିଏଚ୍.ଡ଼ି ଭଳି ଦଣ୍ଡାବାଡ଼ିର ଆବଶ୍ୟକତା କ'ଣ ଥିଲା ? ମତେ ଲାଗିଲା, ପ୍ରଜ୍ଞାଶୀଳ ଜଣେ ମୌଳିକ ତତ୍ତ୍ୱର ଚିନ୍ତନରେ ଉଦ୍‌ବୁଦ୍ଧ ହୋଇ ଯେଉଁ ସୁସଂହତ ଗବେଷଣାକୁ ଆପଣେଇବ, ତା' ଆଗରେ ଆଜିକାଲି ବହୁପ୍ରସୂ ଥେସିସ୍ ଯେ କିଭଳି ନିଷ୍ପ୍ରଭ, ଏକଥା ହୁଏତ ଦେବେନ୍ଦ୍ରଙ୍କ ଜ୍ଞାନାନୁଭବକୁ ବାରମ୍ବାର ଚେତେଇ ଦେଉଥିଲା। ଏଭଳି ଡକ୍ଟରେଟ୍‌ର ଯାଥାର୍ଥ୍ୟ ତାଙ୍କୁ ଆକର୍ଷଣୀୟ ଲାଗିଲାନି। 'ରିଡ଼ର' ହେବାରେ ଡେରି ହେଲା। ହେଉ, କ୍ଷତି କ'ଣ ? ଭୌତିକ ସୁଖସମୃଦ୍ଧି ଦେବେନ୍ଦ୍ରଙ୍କପାଇଁ ପାଣିର ଗାର। ମନେହେଲା, ଏସବୁ ଚିରାଚରିତ ମୂଲ୍ୟବୋଧ ଯେମିତି ତାଙ୍କପାଇଁ ଆଦୌ ଉତ୍ସାହପ୍ରଦ ନୁହେଁ।

ଦେବେନ୍ଦ୍ରଙ୍କ ପାର୍ଥିବ ସାଫଲ୍ୟ ଯେ ଅନେକଙ୍କୁ, ବିଶେଷତଃ ସାଧାରଣ ମଣିଷଙ୍କ ଚିତ୍ତ ବୃତ୍ତିକୁ ବିଭୋର କରିବ, ଏହା ନିଃସନ୍ଦେହ। ଏକଦା ସେ କହୁଥିଲେ- 'ଦାଦା! ଶାନ୍ତିନିକେତନରେ ଅଧ୍ୟାପନାପାଇଁ ଯୋଗ୍ୟ ବିବେଚିତ ହୋଇପାରି ନଥିଲି। ରାଉରକେଲାରେ ରହି ବଡ଼ପୁଅକୁ ଆଇଆଇଟି ଇଞ୍ଜିନିୟର କରେଇଲି। ସାନପୁଅ ଡେଲଏଟ୍ ଭଳି କମ୍ପାନୀ ଛାଡ଼ି ରୋହତକ୍ ଆଇଆଇଏମ୍‌ରେ ଅଧ୍ୟାପନା କଲା। ଦି'ଜଣଯାକ ପୁତ୍ରବଧୂ ସଫ୍ଟଓୟାର୍ ଇଞ୍ଜିନିୟର୍। ଏସବୁ ଅବଶ୍ୟ ମିଶ୍ରିତ କାର୍ଯ୍ୟବିଧି। ସାମାଜିକ ପ୍ରକୌଶଳୀ (Social Engineering) ଯାହାର ସ୍ଥପତି ଦେବେନ୍ଦ୍ର ନିଜେ। ଠିକ୍ ସମୟରେ ରାଉରକେଲାରୁ ତମ୍ବୁ ଉଠେଇ, ଭୁବନେଶ୍ୱରରେ ପୋତିବା, ସହଧର୍ମିଣୀଙ୍କୁ ଚାକିରିରୁ ସ୍ୱତଃ ଇସ୍ତଫା ଦେବାକୁ କହି ଅନ୍ୟ ମାର୍ଗରେ ଜୀବନକୁ ସରସ, ସୁନ୍ଦର କରିବା- ଏସବୁର ଉଦ୍‌ଗାତା ନିଜେ ଦେବେନ୍ଦ୍ର। ମୁଁ ବରାବର ତାଙ୍କ ସହିତ ମିଶି ଏସବୁର ହିସାବ ନିକାଶ ଶୁଣୁଥିଲି। ସବୁ ହିସାବ ଠିକ୍ ଥିଲା। କିନ୍ତୁ ଶେଷ ହିସାବ, ପୁଅ-ବୋହୂ, ପତ୍ନୀଙ୍କୁ ଛାଡ଼ି 'ସାହିତ୍ୟକର୍ମ' ପାଇଁ ଭୁବନେଶ୍ୱରରେ ସ୍ୱଳ୍ପ କେଇଦିନ ଏକାକୀ ରହିବା- ମତେ ଲାଗୁଛି ପରିସ୍ଥିତିକୁ ଘାଏଲ୍ କରିଦେଲା।

ସମ୍ବାଦ, ଆମ ଓଡ଼ିଶା ସମ୍ପାଦିତ 'ସାହିତ୍ୟକୋଷ' ତାଙ୍କ ଉପରେ ଲେଖିଛି: 'ବିଂଶ ଶତାବ୍ଦୀର ସପ୍ତମ ଦଶନ୍ଧିରୁ ମୌଳିକ ଓଡ଼ିଆ ପ୍ରବନ୍ଧ ଏବଂ ଓଡ଼ିଆ ସାହିତ୍ୟ ସମାଲୋଚନା ଏବଂ ପତ୍ରପତ୍ରିକା ସମ୍ପାଦନା ସହିତ ତନ୍ମଧ୍ୟରେ ନିହିତ ଉପାଦାନ ଆଧାରରେ ଆଧୁନିକ ସାହିତ୍ୟର ଅପବାଦମୁକ୍ତ କାଳନିରୂପଣ, ବ୍ୟାଖ୍ୟା ଓ ସାହିତ୍ୟିକମାନଙ୍କର ଜୀବନଚରିତ ନିର୍ମାଣରୁ ତାଙ୍କ ସାହିତ୍ୟିକ ଜୀବନ ଆରମ୍ଭ ହୋଇଛି। ପ୍ରାଚ୍ୟ ଓ ପାଶ୍ଚାତ୍ୟ, ଉଭୟ ସମାଲୋଚନା ସାହିତ୍ୟରେ ତାଙ୍କ ଗଭୀର ଅନୁଶୀଳନ, ମନୀଷା ଯେ କୌଣସି ସାହିତ୍ୟପିପାସୁଙ୍କୁ ମୁଗ୍ଧ କରିବ। ବେଦ, ବେଦାନ୍ତ, ଉପନିଷଦଠୁ ଆରମ୍ଭକରି ସଂସ୍କୃତ ବିଦ୍ୱାନ କାଳିଦାସ, ଭର୍ତ୍ତୃହରି, ମାଘ, ଭାମହ, ରୁଦ୍ରଟ, ମମ୍ମଟ ପ୍ରମୁଖଙ୍କ ବହୁ ତତ୍ତ୍ୱସମ୍ବଳିତ ବ୍ୟାଖ୍ୟା, ରସଶାସ୍ତ୍ରକୁ

ସିଏ ପଢ଼ିଛନ୍ତି, ବୁଝିଛନ୍ତି ଓ ଅନ୍ୟକୁ ବୁଝେଇବାରେ କ୍ଷମ ହୋଇଛନ୍ତି। 'ଆରିଷ୍ଟଟଲଙ୍କ କାବ୍ୟରେ ଜୀବନ-ଜିଜ୍ଞାସା ଓ କାବ୍ୟତତ୍ତ୍ୱ' ପଢ଼ିଲେ ବୁଝାପଡ଼େ ରୀତି ସାଙ୍ଗକୁ ଓଜଃପୂର୍ଣ୍ଣ ଅଭିବ୍ୟକ୍ତିକୁ କଳାତ୍ମକ ଭାବେ ଚିତ୍ରଣ କରିବାରେ ସେ ନିଜର ମୌଳିକ ଅଭିବ୍ୟକ୍ତିକୁ ପ୍ରାଥମିକତା ଦେଇଛନ୍ତି। ପାଶ୍ଚାତ୍ୟ ପ୍ରବନ୍ଧ ସମାଲୋଚନା ସାହିତ୍ୟରେ ଦେବେନ୍ଦ୍ର ଫ୍ରାନ୍ସିସ୍ ବେକନ୍, ଟମାସ୍ ହବ୍ସ, ଜନ୍ ମିଲ୍ଟନ୍‌ଙ୍କ ଠାରୁ ଆରମ୍ଭକରି ପୋପ୍, କ୍ୟାଣ୍ଟ, ସିଲା (Schiller), ହେଗେଲ, ଓଡ଼ସଓ୍ୱାର୍ଥ, କଲେରିଜ୍ ପ୍ରମୁଖଙ୍କୁ ମନଯୋଗ ସହକାରେ ପଢ଼ି ବୁଝିଛନ୍ତି। ତାଙ୍କ ପଠନନିଶା ପ୍ରଚୁର ଥିଲା। ଦିନଦିନ ରାତିରାତି ବହିପଢ଼ାରୁ ଉଠିବେନି। ସେ ଆଇ.ଏ. ରିଚାର୍ଡ଼ସ ହୁଅନ୍ତୁ କି ଏଫ୍.ଆର୍. ଲେଭିସ୍, ଜର୍ଜ ଲୁକା କି ଟେରି ଇଗଲ୍‌ଟନ୍, ଆନନ୍ଦବର୍ଦ୍ଧନ କି ବିଶ୍ୱନାଥ କବିରାଜ- ସମସ୍ତଙ୍କ କାବ୍ୟଲକ୍ଷଣ, ତତ୍ତ୍ୱ, ନୈୟାୟିକ, ମୀମାଂସକ ଭଳି ମତବାଦକୁ ସେ ପ୍ରାଞ୍ଜଳ ଭାବେ ବୁଝି ବୁଝାଇପାରୁଥିଲେ। ସ୍ଥିତିବାଦୀ କାମ୍ୟୁ, ସାର୍ତ୍ର, କାଫ୍‌କା ହୁଅନ୍ତୁ ନା ଅନ୍ୟକେହି, ଦେବେନ୍ଦ୍ରଙ୍କ ସକାଶେ କାହାରି ସୃଷ୍ଟି, ସର୍ଜନା, ମତବାଦ ଅଜଣା ନଥିଲା। 'କାବ୍ୟରସ'ର ମଞ୍ଜି ଯାହା ବିଭାବ, ଅନୁଭାବ ଅନ୍ୟାନ୍ୟ ଭାବମଣ୍ଡଳଦ୍ୱାରା ବିଚ୍ଛୁରିତ, ଦେବେନ୍ଦ୍ରଙ୍କ ମନ ଓ ହୃଦୟରେ ସେମାନେ ସପ୍ତରଙ୍ଗର ସବାର୍ ହୋଇ ଇନ୍ଦ୍ରଧନୁସମ ଟଣାହୋଇ ରହିଥିଲେ। ଧ୍ୱନି, ଔଚିତ୍ୟ, ବକ୍ରୋକ୍ତି ପ୍ରଭୃତି ସକଳ ଧାରା ନିର୍ଣ୍ଣୟରେ ସେ ଥିଲେ ପୋଖତ୍। କହିବାରେ ଦ୍ୱିଧାନାହିଁ, ସେ ମୋର ସାନଭାଇ ହେଲେ ବି ବହୁସମୟରେ ଦୀକ୍ଷାଗୁରୁ। ଅଧିକାରୀଟିଏ ହୋଇ ବହପ ଦେଖାଇ ମୂଲ୍ୟହୀନ କଥା କହୁଥିଲେ, ସେ ତା'ର ଉଚିତ୍ ଜବାବ ଦେଉଥିଲେ। ପ୍ରଚଳିତ ସମାଜ ବ୍ୟବସ୍ଥାର ବଡ଼ପଣ୍ଡାଙ୍କ ନିର୍ଣ୍ଣିତ ପଥର ସେ ଆଦୌ ଅନୁଗାମୀ ନ ଥିଲେ। ତେଣୁ ସ୍ୱେଚ୍ଛାକୃତ ଅବସରକୁ ଜୀବନର ଶ୍ରେୟ ମଣିଥିଲେ।

ମୋ ପାଇଁ ଦେବେନ୍ଦ୍ର ଥିଲେ ଚଳନ୍ତି ଏନ୍‌ସାଇକ୍ଲୋପିଡ଼ିଆ। ଆମେ ଯେଉଁ ଜାଗାକୁ ଯାଉଥିଲୁ, ମୁଁ ନିଶ୍ଚିତ ଥିଲି ସେ ସଭାକୁ ସେ ମ୍ଳାନ କରିବାର ସୁଯୋଗ ଆଦୌ ଦେବେନାହିଁ। ସବୁଥିରେ ନୂତନତ୍ୱ, ବ୍ୟାଖ୍ୟାରେ ଅଭିନବତ୍ୱ, ଏହା ତାଙ୍କରି ପ୍ରକୃତିଦ ଥିଲା। ତେବେ ଏକାଡ଼େମୀ କର୍ତ୍ତୃକ କୌଣସି ଆଲୋଚନାଚକ୍ର, ସଭା, ସମିତି ତାଙ୍କପାଇଁ ନିଆରା ଥିଲା। 'ମୋ କଥାକୁ ଏଡ଼ାଇ ପାରନ୍ତିନି, ତେଣୁ ବହୁ ଜାଗାକୁ ଆମେ ମିଶିକରି ଯାଇଛୁ। ସେ ଅନୁଜ ଗୌରାଙ୍ଗଙ୍କ ଖମାର ହେଉ, କି ବଲାଙ୍ଗୀର, ସମ୍ବଲପୁର ହେଉ କି ଭୁବନେଶ୍ୱର, ଦେବେନ୍ଦ୍ର ପାଖରେ ଥିଲେ ମୋର ସାରସ୍ୱତ ବଳ ବହୁଗୁଣିତ ହୋଇଯାଏ। ପଥକ୍ଳାନ୍ତି ଆଦୌ ଜଣାପଡ଼େନି। ଓଡ଼ିଆ ଭାଗବତ କଥା ଉଠିଲେ ସେ ଛନ୍ଦ, ଅକ୍ଷରବୃତ୍ତ, ଧର୍ମବୈଶିଷ୍ଟ୍ୟ- ଯେଉଁକଥା କହିଲେ ଆତ୍ମମଗ୍ନ ହୋଇଯାଆନ୍ତି, ଯେମିତି "ପକ୍ଷୀଏ ତା'ର ବ୍ୟାକରଣ" ଜଳେ ଯେସନ ଚନ୍ଦ୍ର ଛାଇ ଓ ଆହୁରି ଅନେକ ଅନେକ ପଙ୍‌କ୍ତି। ତାଙ୍କ କହିବାନୁଯାୟୀ ସେ ଭାଗବତକୁ ଦଶଥର ପଢ଼ିଛନ୍ତି। ନିଜ ପିଲାମାନଙ୍କୁ ପଢ଼େଇଛନ୍ତି। କାରଣ ଏକ ସୁସ୍ଥ, ସାଂସ୍କୃତିକ ପରମ୍ପରାର

ବଳିଷ୍ଠ ଦାୟାଦ ଭାବେ ସେ ନିଜ ଗାଆଁ (ଜଗତସିଂହପୁର ନିକଟସ୍ଥ)ର ନିଜ ବାସଗୃହରେ ଭାଗବତ ଗାଦି ବସେଇଛନ୍ତି, ଯାହାକୁ ଦେଖିବାର ସୌଭାଗ୍ୟ ମୋର ଏଯାବତ୍ ଜୁଟିନାହିଁ।

କହିବା ସରେନି, କିନ୍ତୁ ଜୀବନଟା ଆସ୍ତେଆସ୍ତେ ସରିଯିବା ଉପରେ। ଦେବେନ୍ଦ୍ର, ମୋରି କି ଧନେଶ୍ୱର ବାବୁ (ସାହୁ) ହୁଅନ୍ତୁ, କାହାରି ପୁନର୍ଜନ୍ମ ଓ ତତ୍ସମ୍ପର୍କିତ ତତ୍ତ୍ୱ ଉପରେ ତିଳାର୍ଦ୍ଧ ବିଶ୍ୱାସ ନାହିଁ, ନଥିଲା ବି। ରାଉରକେଲାରେ ଥିଲାବେଳେ ଦେବେନ୍ଦ୍ର, ନଗେନ୍ ଦାସ, ଶଶିଭୂଷଣ ରଥ ପ୍ରମୁଖଙ୍କୁ ନେଇ ଏକ ଯୁକ୍ତିସଂଗତ, ବୌଦ୍ଧିକ ପତ୍ରିକା 'ଜିଜ୍ଞାସା' ପ୍ରକାଶ କରିଥିଲେ। ସେଭଳି ଉଚ୍ଚକୋଟୀର ପତ୍ରିକା ମୁଁ ଖୁବ୍ କମ୍ ଦେଖିଛି। ଥିଓରିକୁ ଆୟତ୍ତ କରିଥିବା ଏଇ ସାହିତ୍ୟିକ ରଥୀଙ୍କୁ ହାସ୍ୟ ନା ଶୃଙ୍ଗାର, ରୌଦ୍ର ନା କରୁଣ ଯେଉଁ କାବ୍ୟୋପାସନା କଥା ପଚାରିଲେ, ସେ ରସଭେଦକୁ ଏଭଳି ବ୍ୟାଖ୍ୟା କରନ୍ତି, ସେଥିରେ ମନ ଲାଖିଯାଏ। ହୁଏତ ପାଠକ ଜଣେ ମୋ କଥାକୁ ଅସଂଲଗ୍ନ ଭାବିପାରନ୍ତି, କିନ୍ତୁ ମୁଁ ବ୍ୟକ୍ତିତ୍ୱର ମୂଲ୍ୟାୟନ କହିଲେ ଏଇକଥା ହିଁ ବୁଝେ, ଯାହା ହୁଇଟ୍ମ୍ୟାନ୍ କହିଥିଲେ 'ଓ ବଞ୍ଚ କ୍ଷବକ୍ୱଶର ଓ ମକ୍ଟଭ-ଶ୍ୱବସଭ ଙ୍କଙ୍କକ୍ଷଶ୍ୱସଶ୍ୱଙ୍କୟରଶ୍ୱ'। ଦେବେନ୍ଦ୍ରଙ୍କ ବ୍ୟକ୍ତିତ୍ୱ କହିଲେ ଏହି ପ୍ରସଙ୍ଗ ହିଁ ମନରେ ପ୍ରଥମେ ବସାବାନ୍ଧେ। ସଂକ୍ଷେପରେ କହିଲେ, ଓଡ଼ିଆ ସାହିତ୍ୟର ଏମିତି କୌଣସି ଦିଗ କିମ୍ବା ସମୟ ନାହିଁ, ଯେଉଁଥିରେ ଦେବେନ୍ଦ୍ରଙ୍କ ପ୍ରବେଶ ନଥିଲା। ତାଙ୍କ ଅକାଟ୍ୟ ଯୁକ୍ତିନିଷ୍ଠତା, ମନନଶୀଳତା, ଗଦ୍ୟରୂପର ଭେଦାଭେଦ, ବୈଚିତ୍ର୍ୟ ସବୁକିଛି ତାଙ୍କ ମଗଜରେ ସଦାବେଳେ ଚାଲବୁଲ କରୁଥିଲେ।

ରାଉରକେଲାରେ ଅଧ୍ୟାପନା କରୁଥିବା ସମୟରେ ସେ ସେଠାକାର ସାରସ୍ୱତ ଅନୁଷ୍ଠାନ 'ପ୍ରଗତି ଉତ୍କଳ ସଂଘ'କୁ ଶିଖରକୁ ନେଇଯିବାରେ ସକ୍ଷମ ଥିଲେ। ଏ ସମୟରେ ଉତ୍କଳ ଗୌରବ ମଧୁସୂଦନଙ୍କ ଓଡ଼ିଆ ରଚନାବଳୀ, 'ଓଡ଼ିଶାର ଜନକ ମଧୁସୂଦନ', 'Madhusudan Das: His life and Achievement' ପ୍ରଭୃତି ପୁସ୍ତକ ପ୍ରଣୟନ ସାଙ୍ଗକୁ ମଧୁବାବୁଙ୍କ ପୂର୍ଣ୍ଣାଙ୍ଗ ପ୍ରତିମୂର୍ତ୍ତି ନିର୍ମାଣ, ମଧୁଜୟନ୍ତୀ ପାଳନ ଏବଂ ଓଡ଼ିଆ ଜାତୀୟତାର ଉନ୍ମେଷକଳ୍ପେ ତାଙ୍କ ସକ୍ରିୟ ଭୂମିକାକୁ ଆଦୌ ଭୁଲିବାର ନୁହେଁ। କୁଳବୃଦ୍ଧଙ୍କ ଅକ୍ଳାନ୍ତ ପ୍ରୟାସଜନିତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ଭାଷାଭିତ୍ତିକ ଐକ୍ୟ, ସ୍ୱଦେଶୀ ଶିଳ୍ପ ପ୍ରତି ନିଷ୍ଠା ସାଙ୍ଗକୁ ନାରୀ ସଶକ୍ତୀକରଣ ଦିଗରେ ଦେବେନ୍ଦ୍ର ଯଥେଷ୍ଟ ଆଲୋକପାତ କରିଯାଇଛନ୍ତି। ମଧୁବାବୁଙ୍କ ଧର୍ମନିରପେକ୍ଷତା, ସର୍ବଧର୍ମ ସମନ୍ୱୟ ଭାବକୁ ସେ ନିଜ ଆଲୋଚନାରେ, ବକ୍ତବ୍ୟରେ ପ୍ରାଥମିକତା ଦେଇଛନ୍ତି। ସେଠାରେ ସ୍ୱଭାବକବିଙ୍କ ଉପରେ ସେ ଲେଖିଛନ୍ତି 'ଗଙ୍ଗାଧର: କବିତା ଓ କବି ଆତ୍ମା'। ପଲ୍ଲୀକବି ନନ୍ଦକିଶୋର ବଳଙ୍କ ଉପରେ ଆଧାରିତ ରଚନା 'ଗୋଟିଏ ଫୁଲ ଫୁଟିବାର କାହାଣୀ'। ଦେବେନ୍ଦ୍ର, ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ତାଙ୍କୁ ପାଠ ପଢ଼େଇଥିବା ସ୍ୱର୍ଗତ ଗୋବିନ୍ଦ ଚନ୍ଦ୍ର ଉଦ୍ଗାତାଙ୍କୁ ଯଥେଷ୍ଟ

ସମ୍ମାନ କରୁଥିଲେ, କାରଣ ତାଙ୍କରି ଶାସ୍ତ୍ରଦର୍ଶିତା, ପ୍ରାଜ୍ଞିକ ଅନୁଭବ, ସଂସ୍କୃତ ସାହିତ୍ୟରେ ପରାକାଷ୍ଠା ଦେବେନ୍ଦ୍ରଙ୍କୁ ଜୀବନରେ ବାଟ କଢ଼େଇବାରେ ବିଶେଷ ସାହାଯ୍ୟ କରିଥିଲା। ମୋର ପୂଜ୍ୟ ଶିକ୍ଷକ ଡକ୍ଟର ମଧୁସୂଦନ ପତିଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନ ଥିଲା ଅପରିସୀମ। ଆପାତତଃ ନିସ୍ପୃହ ମଧୁସାର୍‌ଙ୍କ 'ଆଧୁନିକ ଓଡ଼ିଆ କବିତାର ଶୈଳୀତାତ୍ତ୍ୱିକ ସମାଲୋଚନା' ଏବଂ 'ଗଙ୍ଗାଧରଙ୍କ କବିମାନସ ଓ କାବ୍ୟଶିଳ୍ପ' ବହି ଦିଓଟିର ପ୍ରକାଶନ ପାଇଁ ସେ ଅଶେଷ ଯତ୍ନବାନ୍ ହୋଇଛନ୍ତି। ଦ୍ୱିତୀୟ ପୁସ୍ତକସ୍ଥିତ 'ପ୍ରାନ୍ତକଥନ'ର ଲେଖକ ଦେବେନ୍ଦ୍ର ନିଜେ। ତାଙ୍କରି ଶାଣିତ 'ଅନ୍ତର୍ଦୃଷ୍ଟି' ଗଙ୍ଗାଧରଙ୍କ କାବ୍ୟରେ ଶୈଳ୍ପିକ ପାରଙ୍ଗମତାକୁ ପୁଣିଥରେ ପାଠକୀୟ ଶ୍ରଦ୍ଧାଭାଜନ ଦିଗରେ ନିଜର ସାମର୍ଥ୍ୟ ପ୍ରତିପାଦନ କରିପାରିଛି। ଏଥିରେ ସମାଲୋଚକ ନଟବର ସାମନ୍ତରାୟଙ୍କ ଦୃଷ୍ଟିଭଙ୍ଗୀ ଉପରେ ଟିପ୍ପଣୀ ଦେବାକୁ ଯାଇ ଦେବେନ୍ଦ୍ର ଲେଖିଛନ୍ତି: 'ସାମନ୍ତରାୟଙ୍କ ଆଲୋଚନାର ମୌଳିକ ଦୁର୍ବଳତା ହେଲା, ରାଧାନାଥ କାବ୍ୟକୁ ନିକିତି କରି ସେହି ନିକିତିରେ ଗଙ୍ଗାଧରଙ୍କୁ ତଉଲିବା ଓ ପଶ୍ଚିମ ଓଡ଼ିଶାର ସାହିତ୍ୟିକ ସଂସ୍କୃତିରେ ଗଙ୍ଗାଧରଙ୍କୁ ଅବସ୍ଥାପିତ ନ କରି ପୂର୍ବ-ଓଡ଼ିଶାର ସାହିତ୍ୟିକ ସଂସ୍କୃତିର ଅଂଶବିଶେଷ ଭାବରେ ତାହାଙ୍କୁ ବିଚାର କରିବା। ଏଥିରେ ଥିବା ଧ୍ରୁବବାକ୍ୟ 'ଜଣେ ସ୍ରଷ୍ଟାଙ୍କ ବ୍ୟକ୍ତିଜୀବନ ସମ୍ପର୍କରେ ଜଣେ ସମାଲୋଚକ ଯେତେ ଶ୍ରଦ୍ଧାଶୀଳ ହୁଅନ୍ତୁ ନା କାହିଁକି ସମ୍ପୃକ୍ତ ସ୍ରଷ୍ଟାଙ୍କର ଗ୍ରନ୍ଥ ବିଶ୍ଳେଷଣ କାଳରେ ସେହି ଶ୍ରଦ୍ଧା-ସମାଲୋଚକଙ୍କୁ ଭକ୍ତି ଗଦ୍‌ଗଦ୍ ନ କରିବା ଉଚିତ୍।' ଏଭଳି ଚିନ୍ତାଧାରା ମତେ ପାଠ ପଢ଼େଇଥିବା ଡକ୍ଟର ପ୍ରଫୁଲ୍ଲ କୁମାର ପତି ଅନେକ ସମୟରେ ବୟାନ କରିଥିଲେ। ମୁଁ ଓ ଦେବେନ୍ଦ୍ର ଉଭୟେ ମିଳିତ ଭାବରେ ଗଙ୍ଗାଧରଙ୍କ ସମ୍ପର୍କିତ ୨୯ଟି ଇଂରାଜୀ ପ୍ରବନ୍ଧକୁ ନେଇ ସମ୍ପାଦନା କରିଥିଲୁ ୨୦୦୭ ମସିହାରେ 'Gangadhar: The Haster Creator' ଶୀର୍ଷକ ସଂକଳନକୁ। ଏହାର ପ୍ରକାଶକ ଥିଲେ ପଶ୍ଚିମ ଓଡ଼ିଶା ବିକାଶ ପରିଷଦ। ଓଡ଼ିଶା ବାହାରେ କବିଙ୍କ ପରିଚିତି ପାଇଁ ଏହା ବହୁଭାବରେ ସାହାଯ୍ୟ କରୁଛି।

ବାସ୍ତବରେ ଦେବେନ୍ଦ୍ର ଥିଲେ ନିର୍ଲିପ୍ତ ଦର୍ଶନ-ଅବଗାହୀ ଜଣେ ସଚ୍ଚା ସମାଲୋଚକ। ବହୁ ଶାସ୍ତ୍ର ଅଧ୍ୟୟନ ହେତୁ ତାଙ୍କ ଦୃଷ୍ଟିଭାଗ ଥିଲା ଦିଗନ୍ତବିସ୍ତାରୀ। ତା'ରି ଥଳକୂଳ ଜାଣିବାକୁ ହେଲେ ତାଙ୍କ ଡେଣା ସହିତ ସମକକ୍ଷ ହଳେ ଡେଣା ନେଇ ଉଡ଼ିବାକୁ ପଡ଼ିବ। ଆନ୍ତର୍ବିଦ୍ୟାଭିତ୍ତିକ ବିଚାରଶୀଳ ମସ୍ତିଷ୍କଟିଏ ନହେଲେ ସାହିତ୍ୟ କେଉଁଭଳି ପ୍ରମାଦପୂର୍ଣ୍ଣ ହୁଏ, ଏଇକଥା ଦେବେନ୍ଦ୍ର ବାରମ୍ବାର ଗ୍ରନ୍ଥ ସମ୍ପାଦନା ଆଳରେ ସମସ୍ତଙ୍କୁ ଚେତେଇ ଦେଇଛନ୍ତି। ପ୍ରକାରାନ୍ତରେ ମତେ ସେ ଏକାଡ଼େମୀ ସଂଚାଳନ ସମ୍ପର୍କରେ କହୁଥିଲେ, "ଏକାଡ଼େମୀ ପରିଚାଳନା ଦାୟିତ୍ୱ ସଚିବଙ୍କର। ସେ କିନ୍ତୁ ପୋଥି, ପୁସ୍ତକ ସମ୍ପାଦନା ଦାୟିତ୍ୱ ନ ମୁଣ୍ଡେଇବା ଉଚିତ୍। ଏଥିପାଇଁ ସ୍ୱତନ୍ତ୍ର ତଥା ଶାସ୍ତ୍ରଜ୍ଞ ସଚିବଙ୍କର ଆବଶ୍ୟକତା ଅଛି।"

ମନେପଡୁଛି, ଅତୀତର କଥାଟିଏ। ମୁଁ ବୃତ୍ତିଧାରୀ ଭାବେ ପଶ୍ଚିମ ଓଡ଼ିଶା ବିକାଶ ପରିଷଦରେ ଅବସ୍ଥାପିତ ଥିଲି। ଦେବେନ୍ଦ୍ରଙ୍କ ସହିତ ଦିନେ ଏମିତି କଥାବାର୍ତ୍ତା କରୁ କରୁ ମୁଁ ତାଙ୍କୁ କମ୍ପ୍ୟୁଟରରେ ଛବିଳ ଚିତ୍ର ସମ୍ବଳିତ ମୋର ପାଣ୍ଡୁଲିପି Welcoming Odisha କୁ ଦେଖାଇଲି। ସେ ସହସା ଆଗଭର ହୋଇ କହିଲେ, ଯାହା ଖର୍ଚ୍ଚ ପଡୁ ପ୍ରଗତି ଉତ୍କଳ ସଂଘର ଆଭିମୁଖ୍ୟ ନଥିଲେ ବି ଏହି 'ପର୍ଯ୍ୟଟନ ପୁସ୍ତିକା'କୁ ଛପେଇବ। ବହୁ ଖର୍ଚ୍ଚ କରି ପୁସ୍ତକଟି ଛପାହେଲା। କିଛି ମାସ ଭିତରେ ତା'ରି ପ୍ରଥମ ସଂସ୍କରଣ ବଜାରରେ ସରିଗଲା।

ରେଭେନ୍ସା ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ପ୍ରକାଶିତ 'ସାହିତ୍ୟ-ପତ୍ର'ରେ ସମାଲୋଚନାକୁ ରସଗ୍ରାହୀ, ତଥ୍ୟଙ୍କମାନଙ୍କର ହାତପାଣ୍ଠି ଭାବେ ସେ ଅନୁଭବ କରିଛନ୍ତି। ତାଙ୍କ ନିଜସ୍ୱ ଭାଷାରେ 'ସାମାଜିକ ବିକାଶ ଦୃଷ୍ଟି ପଛରେ ପଡ଼ିରହିଥିବା ସମାଜରେ ପାଇବା ଯେଭଳି ଅସମ୍ଭବ, ସେହିଭଳି ସ୍ୱାର୍ଥ-ସାମାଜିକ କାରଣରୁ ସମାଜର ନିମ୍ନବର୍ଗର ମଣି ଏଭଳି ଗୁଣାବଳୀର ଅଧିକାରୀ ହେବା କଷ୍ଟକର।' ତେଣୁ ସାହିତ୍ୟ, ସମାଲୋଚନା ଭଳି କ୍ରିୟା (Praxis) ଏକ ବିକଶିତ ସମାଜରେ ଅବସ୍ଥାନ କରୁଥିବା ବିଦ୍ୱତ୍ ଗୋଷ୍ଠୀ ପକ୍ଷରେ ହିଁ ସମ୍ଭବ। ଦେବେନ୍ଦ୍ରଙ୍କ ଏହି ଚିନ୍ତାଧାରା ପଛରେ ବିଶ୍ୱ-ଦଳିତ ସାହିତ୍ୟର ପୃଷ୍ଠଭୂମିରେ ନିମ୍ନ ଜାତି, ଶ୍ରେଣୀବର୍ଗ ମଣିଷଙ୍କ ସ୍ୱପ୍ନ ଓ ସମ୍ଭାବନା କଥା ଉଠିପାରେ। ପ୍ରକାରାନ୍ତରେ ଉଚ୍ଚାଙ୍ଗ ସାହିତ୍ୟ ତଥା ମୁଖ୍ୟସ୍ରୋତ ପରିଚାଳନାରେ ଉଚ୍ଚଜାତିର ଲେଖକ ଲେଖିକାଙ୍କ ଆନୁପାତିକ ହାର କେତେ କମ୍, ଏହା ଯେ କେହି ଅନୁଭବ କରିବା ସ୍ୱାଭାବିକ।

ଦେବେନ୍ଦ୍ର, ବିଶିଷ୍ଟ ସମାଲୋଚକ ଡ.କୃଷ୍ଣଚରଣ ବେହେରାଙ୍କ ସହିତ ମିଳିତ ଭାବରେ ଫକୀର ମୋହନ ଗ୍ରନ୍ଥାବଳୀର ପ୍ରଥମ ଖଣ୍ଡ ସମ୍ପାଦନା କରିଥିଲେ। ଦ୍ୱିତୀୟ ଖଣ୍ଡ ଉପରେ ମୋର ସ୍ପଷ୍ଟ ଧାରଣା ନାହିଁ। ଫକୀର ମୋହନ ସୃଜିଥିବା ବହୁଧା ଶବ୍ଦାବଳୀଗୁଡ଼ିକର ଅର୍ଥାନ୍ୱୟ କରି ପ୍ରତିପୃଷ୍ଠାର ତଳେ ଲିପିବଦ୍ଧ କରାଯାଇଛି, ଯାହା ଫକୀର ମୋହନଙ୍କ ରଚନା ସୁବୋଧ ଓ ସୁପାଠ୍ୟ ହେବା ଦିଗରେ ବିଶେଷ ସାହାଯ୍ୟ କରୁଛି। କବିବର ରାଧାନାଥଙ୍କ ଲିଖିତ 'ପାର୍ବତୀ' କାବ୍ୟ ଉପରେ ତାଙ୍କର ଦିଓଟି ପ୍ରବନ୍ଧ ଯଥା- 'ପ୍ରେତ ଓ ପାର୍ବତୀ', 'ଆଗାମେନନ୍ ଓ ପାର୍ବତୀ' ଉଭୟରେ ଦାର୍ଶନିକ ତତ୍ତ୍ୱବୋଧ ସାଙ୍ଗକୁ ତା'ରି ବିଭୀଷିକାମୟ ଦୃଶ୍ୟରାଜି, ଗଙ୍ଗେଶ୍ୱରଙ୍କ ପାଷାଣ ହୃଦୟ ଯାହା ଗ୍ରୀକ୍ କିମ୍ବଦନ୍ତୀର ଆଗାମେନନ୍ ଚରିତ୍ରର ପୃଷ୍ଠଭୂମିରେ ବର୍ଣ୍ଣିତ ଓ ଶେଷରେ କ୍ରୁର ପାଶବିକତାର ପଟ୍ଟଭୂମିରେ ନିଜ କନ୍ୟାର ହତ୍ୟା, ତା'ରି ଭାବନା ଯାହାକୁ କାବ୍ୟ ମାଧ୍ୟମରେ 'କେହି ରହିନାହିଁ ରହିବେ ନାହିଁଟି ଭବରଙ୍ଗ ଭୂମି ତଳେ' ପଙ୍କ୍ତିଟିରେ ପ୍ରକଟିତ ସେ ତା'ରି ଅଭିନବ ଅବତାରଣା କରିଛନ୍ତି ଓ ତାହା ହିଁ ଦେବେନ୍ଦ୍ରଙ୍କ ସ୍ୱାତନ୍ତ୍ର୍ୟ ଦୃଷ୍ଟିଭଙ୍ଗୀ ଯାହା ତାଙ୍କୁ ଅନ୍ୟ ସମାଲୋଚକଙ୍କ ଠାରୁ ପୃଥକ କରିଆସିଛି।

ଓଡ଼ିଆ ସାହିତ୍ୟର ଅନେକ ସାହିତ୍ୟିକ ବ୍ୟକ୍ତିତ୍ୱ ମଦନମୋହନ, ରାମକୃଷ୍ଣଙ୍କୁ ଲୋକଲୋଚନକୁ ଆଣିବାରେ ସେ ଥିଲେ ସିଦ୍ଧହସ୍ତ। 'ସାହିତ୍ୟକୋଷ' ଅନୁଯାୟୀ 'ରାଧାନାଥ ରାୟ ଓ ନଗେନ୍ଦ୍ର ବାଳାଙ୍କ ସମ୍ପର୍କ ସମ୍ବନ୍ଧିତ ପ୍ରାମାଣିକତା ଦର୍ଶାଇବାରେ ସେ ପ୍ରଥମ ଗବେଷକ' ଓ ଏହା ମୋ ମତରେ ଯଥାର୍ଥ।

୨୦୧୭-୧୮ ବେଳର କଥା। ମୁଁ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଚିବ ଥାଏ। ଏକାଡ଼େମୀ ପ୍ରକାଶିତ ନୀଳମଣି ମିଶ୍ରଙ୍କ ସମ୍ପାଦିତ ଜଗନ୍ନାଥ ଦାସଙ୍କ ଶ୍ରୀମଦ୍ ଭାଗବତର ବର୍ଣ୍ଣାଶୁଦ୍ଧି ଇତ୍ୟାଦି କଥା କହି ଖବରକାଗଜ ଜରିଆରେ ଜଣେ ବ୍ୟକ୍ତି କୋପବର୍ଷଣ କଲେ। ଅଗତ୍ୟା ଏକାଡ଼େମୀ ବାଧହେଲା ତା'ରି ସମ୍ପ୍ରସାରଣ ବନ୍ଦ ରଖି ତହିଁର ସମାଧାନର ସୂତ୍ର ଖୋଜିବାକୁ। ତତ୍‌କ୍ଷଣାତ୍ ଦେବେନ୍ଦ୍ର ଦାଶ, ଡ.ଗୌରାଙ୍ଗ ଦାଶ, ଡ.ସୁରେନ୍ଦ୍ର ମିଶ୍ରଙ୍କୁ ନେଇ ଏକ ନୂତନ ସମ୍ପାଦନା ମଣ୍ଡଳୀ ଗଠନ କରାଗଲା। ଉଦ୍ଦେଶ୍ୟ ପ୍ରକାଶମତେ ଭାଗବତର ପ୍ରତ୍ୟେକ ପଙ୍‌କ୍ତିକୁ ଅନୁଧ୍ୟାନ କରି ତା'ରି ସଂଶୋଧନ (ଆବଶ୍ୟକସ୍ଥଳେ) ପାଇଁ ଶୁଦ୍ଧିପତ୍ର ତିଆରି କରିବାକୁ। ଏହା ସମୟସାପେକ୍ଷ ଥିଲା। ତେବେ ତିନିଜଣଙ୍କର ଅକୁଣ୍ଠ ସହଯୋଗ ହେତୁ କାମଟି ସମାହିତ ହେଲା। 'ନୂତନ ଭାବେ' ଭାଗବତ ଛପାହେଲା। କିନ୍ତୁ ତାହା ଯେ ପୋଥି ଭାଗବତ ଓ ଅନ୍ୟାନ୍ୟ ଟୀକାକାରଙ୍କ ଭାଗବତଠାରୁ ମାନରେ ଉନ୍ନତ ଓ ପ୍ରମାଦମୁକ୍ତ, ଏ କଥା କେବଳ ଭାଗବତର ଅଭିଜ୍ଞ ପାଠକମାନେ ହିଁ କହିବେ। ମୁଁ ଏମାନଙ୍କୁ, ଅର୍ଥାତ୍ ସମ୍ପାଦନା ମଣ୍ଡଳୀଙ୍କୁ, ପୁସ୍ତକ ଜରିଆରେ ଔପଚାରିକ ଧନ୍ୟବାଦ ଦେଇନାହିଁ ଏହି କାରଣରୁ ଯେ, ମନ୍ଦିରଠୁ ମୁଖଶାଳାକୁ ବଡ଼ କରି ଦେଖିବାର ଅଭିଳାଷ ଆମ କାହାରିର ନଥିଲା। ଏ କାର୍ଯ୍ୟ ନିଷ୍ପାଦନଜନିତ ଶୁଦ୍ଧିପତ୍ର ଦେଖିଲେ ଦେବେନ୍ଦ୍ରଙ୍କ ନିଷ୍ଠା କଥା ବାରମ୍ବାର ମନେପଡ଼େ। ଅନ୍ୟ ଦି'ଜଣଙ୍କର ବି।

ଦେବେନ୍ଦ୍ର ଓ ଗାଳ୍ପିକ ଦୀପ୍ତିରଞ୍ଜନ ପଟ୍ଟନାୟକ ଉଭୟେ ନିଜ ନିଜ ମାର୍ଗରେ କିଭଳି ଯଶସ୍ୱୀ ଥିଲେ, ତା'ରି ପ୍ରମାଣ ସେମାନେ ଯୁଗ୍ମ ଭାବରେ ହାତକୁ ନେଇଥିବା ପ୍ରକଳ୍ପସବୁ। ୨୦୧୧ ମସିହାରେ ମୁଁ ଇଂରାଜୀ ତ୍ରୟମାସିକ 'Samas'ର ସମ୍ପାଦନା କରୁଥିଲି। ଦେବେନ୍ଦ୍ର ଓ ଦୀପ୍ତିରଞ୍ଜନଙ୍କ ମିଳିତ ଉଦ୍ୟମରେ ଲିଖିତ ଇଂରାଜୀ ପ୍ରବନ୍ଧ ଯଥା- Filial Censoring: Cultural Politics Behind the Bowdlerization of Fakirmohan's Autobiography। ସମ୍ପାଦନା ତଥା  ଅନୁବାଦ କଲାବେଳେ କିଭଳି ଉଦ୍ଦେଶ୍ୟମୂଳକ ଭାବେ କିଛି କିଛି ଅଂଶକୁ ବଦଳେଇ, ବାଦ୍‌ଦେଇ ନିଜ ବାଗରେ 'ଲେଖା'ଟିକୁ ପରିବେଷଣ କରାଯାଏ ଏ ପ୍ରବନ୍ଧଟିରେ ତାହା ହିଁ ଦର୍ଶାଯାଇଥିଲା। ଏଥିରେ ଉଭୟ ଲେଖକ ଫକୀର ମୋହନଙ୍କ ପୁଅ ମୋହିନୀମୋହନଙ୍କ ପ୍ରତି ଦୋଷାରୋପ କରି କହିଛନ୍ତି 'The greatest irony of them all is probably related to the very act of cen-

sorship- acting out of filial love, Mohinimohan committed parricida'। ଫକୀରମୋହନ ତାଙ୍କ 'ଲେଖା' ଯାହା 'ଉତ୍କଳ ସାହିତ୍ୟ'ରେ ଧାରାବାହିକ ଭାବେ ପ୍ରକାଶ ପାଉଥିଲା, ସେ ତା'ରି ନାଁ ରଖିଥିଲେ 'ଆତ୍ମଚରିତ'। ତାଙ୍କ ପୁଅ ତାକୁ ବଦଳେଇ ଲେଖିଲେ 'ଆତ୍ମଜୀବନ ଚରିତ'। ଏଇ ପ୍ରବନ୍ଧଟି କାନାଡ଼ାର ଅନ୍ୟ ଏକ ଗବେଷଣାତ୍ମକ ଜର୍ନାଲରେ ପ୍ରକାଶିତ ହେଲା। ଏଭଳି ପ୍ରବନ୍ଧଙ୍କ ସଂଖ୍ୟା ଖୁବ୍ ବେଶୀ।

ମୋ ଜାଣିବାରେ ଦେବେନ୍ଦ୍ର ସେଭଳି କିଛି ଆନୁଷ୍ଠାନିକ ମଞ୍ଚରେ ସମ୍ମାନିତ ହୋଇନଥିଲେ। କୌଣସି ଏକାଡ଼େମୀ ପୁରସ୍କାରରେ ବି। ତା'ରି କାରଣ ଅନେକସ୍ଥଳରେ ସିଏ ନିଜେ। ତାଙ୍କ ପ୍ରବନ୍ଧ ସଂକଳନଟିଏ ଖୋଜି ପାଇବା ମୁସ୍କିଲ୍। ଆଜିକାର ଯୁଗରେ ଚିହ୍ନା ବ୍ରାହ୍ମଣର ବି ପଇତା ଦରକାର ପଡ଼େ। ଏ ପୁରସ୍କାର ପଦ୍ଧତି କେଉଁଭଳି, ଉଦାହରଣଟିଏ ଦେଲେ ଯଥେଷ୍ଟ ହେବ। ୧୯୦୧ ମସିହା। ଫରାସୀ କବି ସୁଲି ପ୍ରୁଧୋଁଙ୍କ ସାହିତ୍ୟରେ ନୋବେଲ୍ ପୁରସ୍କାର ଦିଆଗଲା। ତାଙ୍କରି ପ୍ରତିଦ୍ୱନ୍ଦ୍ୱୀ ଥିଲେ ଲିଓ ଟଲଷ୍ଟୟ। ଆଜି ଟଲଷ୍ଟୟ କେଉଁଠି, ସୁଲି କେଉଁଠି ?

୮ ଅଗଷ୍ଟ ଥିଲା ଦେବେନ୍ଦ୍ରଙ୍କ ସହିତ ମୋର ଯୋଗାଯୋଗର ଶେଷଦିନ। ଦୀପ୍ତିରଞ୍ଜନ ଓ ସେ 'ଭାଗବତ' ଉପରେ ଲେଖିଥିବା ଇଂରାଜୀ ପ୍ରବନ୍ଧଟିକୁ ମୋ ନିକଟକୁ ପଠେଇଦେଇ ସେ ଚାଲିଯାଇଥିଲେ ସହଧର୍ମିଣୀଙ୍କ ଆଣ୍ଠୁ ଅପରେସନ୍ ପାଇଁ ବାଙ୍ଗାଲୋର। ନିଜ ଜିଦ୍‌ରେ ପରିବାରର ଅନ୍ୟ ସମସ୍ତଙ୍କ ଅନୁରୋଧ ଏଡ଼ାଇ ଚାଲିଆସିଲେ ଭୁବନେଶ୍ୱର ହୁଏତ ସାରସ୍ୱତ କର୍ମରେ ନିଜକୁ ନିୟୋଜିତ କରିବାକୁ। ଶୁଣିଲାବେଳକୁ ଜ୍ୱର ପାଇଁ ଆପୋଲୋ ହସ୍ପିଟାଲର ଆଇସିୟୁରେ। ମୁଁ ଯାଇ ପାଖରେ ଛିଡ଼ାହେଲି, ସତ କିନ୍ତୁ ସେ ଥିଲେ ନୀରବ, ନିଷ୍ପନ୍ଦ। ମୋ ଭାଇ ମତେ ଡାକିଲାନି 'ଦାଦା' ବୋଲି। ମୋ ପାଦତଳର ମାଟି ଯେମିତି ଖସି ଖସି ଯାଉଥିଲା। ଲାଗୁଥିଲା ଛାତଟି ଭାଙ୍ଗିରୁଜି ଆମ ଚାରିକଡ଼େ ଅଜାଡ଼ି ହୋଇପଡୁଛି। ବାସ୍ ସେତିକି ମାତ୍ର।

ଏବେ ଦେବେନ୍ଦ୍ର ଅତୀତ। ଏ ଦେଶରେ ତା'ରି ସ୍ମୃତିରକ୍ଷାର ଦାୟିତ୍ୱ ଆମ ସଭିଙ୍କର। ଆଳୁ କିଆରିର ଲୋକ ସାରୁ କିଆରି ଉପରେ କହିବାକୁ ଆସି କଖାରୁ ଉପରେ କହିଦେଇ ପଳଉଛନ୍ତି। କିନ୍ତୁ ତାଙ୍କ ମତକୁ ବଡ଼ କରିବାରେ କାହାରିର ଅବହେଳା ନାହିଁ। ସୋସିଆଲ୍ ମିଡ଼ିଆର ଛାଉଣି ବିଛେଇ ହୋଇପଡୁଛି। କେଉଁଟା ସତ, କେଉଁଟା ମିଛ ଜାଣିବା ଦିନକୁ ଦିନ କଷ୍ଟକର ହୋଇଯାଉଛି। ଉଡ଼ାଜାହାଜ ଅବତରଣ ପଡ଼ିଆର ଆଧୁନିକୀକରଣ ସମାଜପାଇଁ ଯେତିକି ଜରୁରୀ, ଦେବେନ୍ଦ୍ରର ସ୍ମୃତିରକ୍ଷା ମଧ୍ୟ ସେତିକି ଜରୁରୀ। ଏ ଆବଶ୍ୟକତା ସତ୍ୟର ଉନ୍ମୋଚନପାଇଁ। କଳାପ୍ରତି ନିଷ୍ଠା ଓ ଅଧ୍ୟବସାୟର ବୃଦ୍ଧିପାଇଁ। ଦେବେନ୍ଦ୍ରଙ୍କ ଆତ୍ମା ପ୍ରତି ଏହା ଯଥୋଚିତ ସମ୍ମାନ ହେବ ବୋଲି ମୋର ଆଶା ଓ ବିଶ୍ୱାସ।

ଭୁବନେଶ୍ୱର

କୈଳାସ ଚନ୍ଦ୍ର ଦାଶ

# ଦେବେନ୍ଦ୍ର କୁମାର ଦାଶ: ଏକ ବିଚାର

ବିଖ୍ୟାତ୍ ସାହିତ୍ୟ ସମୀକ୍ଷକ ତଥା ସମ୍ପାଦକ ଦେବେନ୍ଦ୍ର କୁମାର ଦାଶ ସାହିତ୍ୟ ଗଗନରୁ ଅସ୍ତ ହୋଇଗଲେ। ଏହି କଥା ମନେ ପକାଇଲା ବେଳେ ମୋର ସ୍ମୃତି ପଥ ହଠାତ୍ ଆଲୋକିତ ହୋଇଯାଏ। ତାଙ୍କ ସହିତ ମୋର ପ୍ରଥମ ସାକ୍ଷାତ ରାଉରକେଲାର ଷ୍ଟେସନ୍ ନିକଟରେ ଥିବା ଦି ବେଷ୍ଟ୍ ବହି ଦୋକାନରେ, ୧୯୮୦-୧୯୮୧ ମସିହାରେ । ସେତେବେଳେ ମୁଁ ରାଉରକେଲା ସାନ୍ଧ୍ୟ କଲେଜରେ ଇତିହାସ ଅଧ୍ୟାପକ । ସସ୍ତ୍ରୀକ ଦେବେନ୍ଦ୍ରବାବୁଙ୍କୁ ମୋତେ ପରିଚିତ କରାଇଥିଲେ ଦି ବେଷ୍ଟର ରବି ଦାସ, ତାଙ୍କ କଲେଜବନ୍ଧୁ । ସେ ସମୟରେ ମୁଁ ଜଗତସିଂହପୁର ଅଞ୍ଚଳର ବୋଲି କହିଲାରୁ ଦେବେନ୍ଦ୍ରବାବୁ ଖୁବ୍ ଖୁସି ହୋଇଗଲେ; କିନ୍ତୁ ପ୍ରଥମ ସାକ୍ଷାତରୁ ତାଙ୍କ ଭିତରେ ଥିବା ଉତ୍ତେଜିତ ମନୋଭାବ ସମ୍ପର୍କରେ ମୁଁ ଜାଣିପାରିଲି। ତାର ଏକ ବର୍ଷ ବ୍ୟବଧାନରେ ମୁଁ ତାଙ୍କୁ ଦେଖିଲି ରାଉରକେଲାର ବାସନ୍ତୀକଲୋନୀରେ ଏକ କ୍ୱାଟରରେ। ଘର ଭିତରେ ପୁସ୍ତକାଗାର ମୋତେ ଆମୋଦିତ କରିଥିଲା। ତାଙ୍କ ପାଖ ଘରେ ସ୍ଥାନୀୟ ବେଦବ୍ୟାସ ତଥା ମୁନିସ୍‌ପାଲ କଲେଜର କିଛି ତରୁଣ ଅଧ୍ୟାପକ ମେସ୍‌କରି ରହୁଥିଲେ ଏବଂ ସେହି ମେସ୍‌ରେ ମୁଁ ମଧ୍ୟ ଖାଉଥିଲି। ତାଙ୍କ ଘର ଅଗଣାରେ ସନ୍ଧ୍ୟା ସମୟରେ ଆମେ ବସି ସାହିତ୍ୟ ସଂସ୍କୃତି ସମ୍ପର୍କରେ ଆଲୋଚନା କରୁଥିଲୁ। ଦେବେନ୍ଦ୍ରବାବୁ ତାଙ୍କ ସାହିତ୍ୟ ଗବେଷଣା ସମ୍ପର୍କରେ କହୁ କହୁ ସାହିତ୍ୟରେ ମାନବ ପ୍ରତ୍ୟୟ ସମ୍ପର୍କରେ ଗବେଷଣା କରୁଥିବାର ସୂଚନା ଦେଲେ। ଏପରି ବିଷୟରେ କେହି ଓଡିଆରେ ଗବେଷଣା କରିନାହାନ୍ତି କିମ୍ବା କରିପାରିବେ ନାହିଁ ବୋଲି କହିଲେ। କଥାଟା ଶୁଣିବାକୁ ଭଲ ଲାଗିଲା। ମୁଁ ମଧ୍ୟ ତାଙ୍କ ପରି ସେତେବେଳେ ଚୋଡଗଙ୍ଗଦେବଙ୍କ ଉପରେ ଗବେଷଣା କରୁଥିବାର ସୂଚନା ଦେବାରୁ ସେ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ କଥା କହି ତାଙ୍କୁ ଓଡିଶାର ଏକମାତ୍ର ଐତିହାସିକ ରୂପେ ସ୍ୱୀକାର କଲେ। ଦିନେ ରାଉରକେଲାର ବାସନ୍ତୀକଲୋନୀର କଳିଂଗ କ୍ଲବ୍ ବୋଇତ ମହୋତ୍ସବ

ପାଳନରେ ମୋତେ ମୁଖ୍ୟବକ୍ତା ରୂପେ ଭାଷଣ ଦେବାର ସେ ଶୁଣିଲେ ଏବଂ ମୋତେ ପଚାରିଲେ, ଓଡିଶାର ନୌବାଣିଜ୍ୟ ସମ୍ପର୍କରେ କି କି ଶିଳାଭିଲେଖ ଓ ତାମ୍ରାଭିଲେଖ ଅଛି। ମୁଁ ମନେକଲ, ଦେବେନ୍ଦ୍ରବାବୁ ବେଶ୍ ଭଲ ଗବେଷକ । ତାଙ୍କର ମୂଳସୂତ୍ର ସମ୍ପର୍କରେ ଚର୍ଚ୍ଚା କରିବାର ଆଗ୍ରହ ଅଛି। ସେତେବେଳେ ରଜନୀକାନ୍ତ ଦାସ ତାଙ୍କ ଉଦିତନଗର ରାଇଟରସ୍ ଓ୍ୟାର୍କସପ୍‌ରେ ନବପତ୍ର ସାହିତ୍ୟ ପତ୍ରିକା ପ୍ରକାଶ କରୁଥିଲେ। ସେହି ନବପତ୍ରରେ ମୋର ଏକ ଲେଖା ଦେଖି ବହୁତ ଖୁସି ହୋଇ କହିଲେ– ଆପଣ ଓଡିଆରେ ଲେଖାଲେଖି କରନ୍ତୁ। ଦିନେ କିନ୍ତୁ ଦେବେନ୍ଦ୍ରବାବୁଙ୍କ ସହିତ ମନାନ୍ତର ହୋଇଗଲା ଏବଂ ମୁଁ ଆଉ ତାଙ୍କ ସହିତ ଯୋଗାଯୋଗ ରଖିପାରିଲି ନାହିଁ। ଅବଶ୍ୟ ସେ ସେତେବେଳେ ଶକ୍ତିନଗରରେ ରହିବାରୁ ତାଙ୍କ ସହିତ ଆଉ ଯୋଗାଯୋଗ ରହିପାରିଲା ନାହିଁ। ୧୯୯୨ ପର୍ଯ୍ୟନ୍ତ ମୁଁ ରାଉରକେଲାରେ ଥିଲି। ନବପତ୍ରରେ ମୋର ଏବଂ ଦେବେନ୍ଦ୍ରବାବୁଙ୍କର ଲେଖା ବାହାରୁଥାଏ। ତେଣୁ ବେଳେବେଳେ ଅନ୍ୟମାନଙ୍କଠାରୁ ମୋ ସମ୍ପର୍କରେ ତାଙ୍କ ମତାମତ ଶୁଣିବାକୁ ମିଳୁଥିଲା। ରାଉରକେଲାରେ ଥିବା ସମୟରେ ଦେବେନ୍ଦ୍ରବାବୁ କେତେକ ସାଂସ୍କୃତିକ ଅନୁଷ୍ଠାନ ସହିତ ଜଡିତ ଥିଲେ। ରାଉରକେଲାର ବାସନ୍ତୀକଲୋନୀରେ ବାସନ୍ତୀ ପାଠାଗାରର ଏକ ବାର୍ଷିକ ସଂଖ୍ୟା ପ୍ରକାଶ ପାଇବାର ସ୍ଥିର ହେଲା। ସେଥିରେ ମୁଁ ସୁନ୍ଦରଗଡ ପ୍ରଜା ଆନ୍ଦୋଳନ ସମ୍ପର୍କରେ ଏକ ଲେଖା ଶୁଭେନ୍ଦୁ ରଥଙ୍କ ଦେଇଥିଲି। ସେ ତାକୁ ଦେବେନ୍ଦ୍ରବାବୁଙ୍କୁ ଦେଲେ। ଏପରି ବଡ ପ୍ରବନ୍ଧ ଦେଖି ଦେବେନ୍ଦ୍ରବାବୁ ବହୁତ ଖୁସି ହୋଇ ଆରମ୍ଭରେ ସୂଚନା ଦେଇଥିଲେ– ଐତିହାସିକ କୈଳାସଚନ୍ଦ୍ର ଦାଶଙ୍କ ସୁନ୍ଦରଗଡର ପ୍ରଜା ଆନ୍ଦୋଳନ ଶୀର୍ଷକ ପ୍ରବନ୍ଧଟି ଓଡିଶା ଇତିହାସ ଗବେଷଣା କ୍ଷେତ୍ରରେ ଏକ ସ୍ୱତନ୍ତ୍ର ସଂଯୋଜନ।

୨

ଛାତ୍ରଜୀବନରେ ଦେବେନ୍ଦ୍ରବାବୁ ଓଡିଆରେ ପ୍ରବନ୍ଧ ଲେଖିବା ଆରମ୍ଭ କରିଥିଲେ। ମୋତେ ଯେତେଦୂର ଜଣାଅଛି, ତାଙ୍କର ପ୍ରଥମ ପ୍ରବନ୍ଧ ଆଗେମେମନନ୍ ଓ ପାର୍ବତୀ ସମ୍ବଲପୁର ବିଶ୍ୱବିଦ୍ୟାଳୟର ମୁଖପତ୍ର ସପ୍ତର୍ଷିର ପ୍ରଥମ ବର୍ଷ, ପଞ୍ଚମ/ଷଷ୍ଠ ସଂଖ୍ୟାରେ ପ୍ରକାଶ ପାଇଥିଲା। ତେବେ ବିଏ ଅନର୍ସଛାତ୍ର ଦେବେନ୍ଦ୍ର ଝଂକାରରେ ୧୯୭୩ ଫେବୃଆରି ସଂଖ୍ୟାରେ ପ୍ରେତ ଓ ପାର୍ବତୀ ଶୀର୍ଷକ ପ୍ରବନ୍ଧ ପ୍ରକାଶ କରିଥିଲେ । ସେତେବେଳେ ସେ ସମ୍ବଲପୁର ସହରର ଦୁର୍ଗାପ୍ରସାଦ ନନ୍ଦଙ୍କ ଘରେ ରହୁଥିଲେ। ଆଲେଚନା ପାଇଁ ଦାଶ ବହୁ ତଥ୍ୟ ତଥା ପୁସ୍ତକର ସାହାଯ୍ୟ ନେଇଥିଲେ। ତନମଧ୍ୟରେ ଡଗର ୨୪ ଭାଗ, ରାଧାନାଥଙ୍କ ଅନନ୍ୟ ପ୍ରତିଭା ସହିତ The Columbia Encyclopaedia, Shakespearan Tragedy, Readers' Encyclopaedia of World Drama ଏବଂ Encyclopaedia of Religion and Ethics ପରି ଉପାଦାନ ଗୁରୁତ୍ୱ ଲାଭକରିଥିଲା। ପ୍ରାଚୀନ ପ୍ରସ୍ତରଯୁଗର

ଅସଂସ୍କୃତ ମନୁଷ୍ୟଠାରୁ ଆରମ୍ଭ କରି ଯନ୍ତ୍ରଯୁଗର ସଭ୍ୟ ମନୁଷ୍ୟ ପର୍ଯ୍ୟନ୍ତ ସମସ୍ତଙ୍କ ମନରେ ଭୟ ଏକ ଅନ୍ତର୍ନିହିତ ଚେତନା କିମ୍ବା ମାନସିକ ଅଭିବ୍ୟକ୍ତି ରୂପେ ପ୍ରାଧାନ୍ୟ ଲାଭକରିଛି। ଏପରି ଆରମ୍ଭ ପ୍ରସଂଗଟିକୁ ମନୋଜ୍ଞ କରିଛି। ଏ ପ୍ରବନ୍ଧ ପ୍ରକାଶ ପାଇବାର ବହୁ ବର୍ଷ ପରେ ୧୯୭୯ ଫେବୃଆରି ମାସରେ ବିଶ୍ୱଭାରତୀ ଓଡ଼ିଆ ଗବେଷକ ଦେବେନ୍ଦ୍ର ପୁଣି ଝଂକାରରେ ଶିଳ୍ପସମ୍ଭୋଗ, ରସତତ୍ତ୍ୱ ପରି ତତ୍ତ୍ୱମୂଳକ ପ୍ରବନ୍ଧ ପ୍ରକାଶ କରିଥିଲେ। ଅବଶ୍ୟ ଏହି ସମୟରେ ୧୯୭୮ବେଳକୁ ସେ ମହାନଦୀ ରିଭ୍ୟୁରେ ବେଦରେ ମାନବ ପ୍ରତ୍ୟୟ ସମ୍ପର୍କରେ ଇଂରାଜୀ ଲେଖା ପ୍ରକାଶ କରିଥିଲେ।

ରାଉରକେଲାରେ ଦୀର୍ଘ ବର୍ଷ ଅବସ୍ଥାନ କାଳରେ ଦେବେନ୍ଦ୍ରଙ୍କର ସାହିତ୍ୟ ଜଗତ ପ୍ରସାରିତ ହେଲା। ସେଠାରେ ରହି ସେ ପ୍ରଗତି ଉତ୍କଳ ସଂଘର ସମ୍ପର୍କରେ ଆସି ଅନେକ ସାରସ୍ୱତ କାର୍ଯ୍ୟ କରିଥିଲେ। ପ୍ରଥମେ ସେ ରାଉକେଲା କଲଚରାଲ ଏକାଡେମୀର ନବପତ୍ରରେ ୧୯୮୪ରୁ ବହୁଲେଖା ପ୍ରକାଶ କରିଥିଲେ। ସେଗୁଡ଼ିକ ମଧ୍ୟରେ "କବିତା ଓ ବିଜ୍ଞାନ" ୧୯୮୪ ଅକ୍ଟୋବର-ଡିସେମ୍ବର, "ଆଧୁନିକ ଓଡ଼ିଆ ସାହିତ୍ୟିକର ମାନସିକ ସ୍ଥିତି" ୧୯୮୬ ଜାନୁଆରୀ-ମାର୍ଚ୍ଚ, "ଗୋଟିଏ ଫୁଲ ଫୁଟିବାର କାହାଣୀ", ୧୯୮୬, ଜୁଲାଇ-ସେପ୍ଟେମ୍ବର ଓ ଅକ୍ଟୋବର-ଡିସେମ୍ବର, "ସାହିତ୍ୟ ଓ ସମାଜ" ୧୯୮୮, ୧୬/୩ ଏବଂ ୧୯୮୯, ୧୭/୨, "ଓଡ଼ିଆ ନାଟକ: ସାମାଜିକ ସୀମାବଦ୍ଧତା" ୧୯୯୦, ୧୮/୩ ସ୍ୱତନ୍ତ୍ର। ରାଉରକେଲାରେ ମଧ୍ୟ ସେ ଓଡ଼ିଆ ଗବେଷଣା ପରିଷଦ ସହିତ ସମ୍ପର୍କ ରଖିଥିଲେ ଏବଂ ଏହାର ମୁଖପତ୍ରରେ ଅନେକ ପ୍ରବନ୍ଧ ତଥା  ସମ୍ପାଦିତ ଗ୍ରନ୍ଥ ପ୍ରକାଶ କରିଥିଲେ। ସେଗୁଡ଼ିକ ମଧ୍ୟରେ  "ଗ୍ରନ୍ଥସମୀକ୍ଷା : ଓଡ଼ିଆ ଐତିହାସିକ ଉପନ୍ୟାସ ଚର୍ଚ୍ଚା", ୧୯୮୬  ଡିସେମ୍ବର, "ବଳରାମଦେବ-କବି ଗଙ୍ଗାଧର ମେହେର: ସଂଗ୍ରହ ଓ ଆଲୋଚନା" ୧୯୮୭ ଜୁନ୍, "ବିଚାର ବିତର୍କ:  ଓଡ଼ିଆ ଐତିହାସିକ ଉପନ୍ୟାସ ଚର୍ଚ୍ଚା" ୧୯୮୭ ଡିସେମ୍ବର, "ରାଧାନାଥଙ୍କ ରଚିତ ଦୁଇଟି ଭୂମିକା: ସଂଗ୍ରହ, ଅନୁବାଦ ଓ ଆଲୋଚନା" ୧୯୮୯ ଜୁନ୍, "ଓଡ଼ିଆ ସାହିତ୍ୟର ଇତିହାସ ରଚନା ଓ ମନମୋହନ ଚକ୍ରବର୍ତ୍ତୀ", ୧୯୯୦, ଜୁ୍ନ୍, "ଦୁଇଟି ପତ୍ର-ଶ୍ରୀ ଦାଶରଥି ରାଉତ" ୧୯୯୦ ଡିସେମ୍ବର, "ଉନବିଂଶ ଶତକରେ ଓଡ଼ିଶା ବଂଗଳାର ସାଂସ୍କୃତିକ ସହଯୋଗ:ରାୟଚୌଧୁରୀ" ୧୯୯୩ ଜୁନ୍, "ଓଡ଼ିଶା ଓ ବଂଗଳାର ସାଂସ୍କୃତିକ ସହଯୋଗ: କବିରାଧାନାଥ ଓ ନଗେନ୍ଦ୍ରବାଳା", ୧୯୯୪, "ଭାରତମୁକ୍ତିର ଜଣେ ଅଣଭାରତୀୟ ସ୍ୱପ୍ନଦ୍ରଷ୍ଟା" ୧୯୯୫ ଜୁନ୍, "ଭୀମଭୋଇ ଓ ମହିମାଧର୍ମ", ଜୁନ୍ ୧୯୯୭, "ଜଗନ୍ମୋହନ ଲାଲ:ନବ ମୂଲ୍ୟାୟନ", ଜୁନ୍ ୧୯୯୯ ଅତି ପ୍ରସିଦ୍ଧ। ୧୯୯୦ ମସିହାରେ ଦେବେନ୍ଦ୍ର କ୍ଷେତ୍ରବାସୀ ସାହିତ୍ୟବିଦ୍ୟା ପୁରସ୍କାର ଲାଭ କରିଥିଲେ ତାଙ୍କର ସମୃଦ୍ଧ ସମାଲୋଚନା ପାଇଁ। ପୁରସ୍କାର ଗ୍ରହଣ କରି ସେ ଆପଣାର ଗବେଷକ ଜୀବନ ଓ ଗବେଷଣାର ଆଭିମୁଖ୍ୟ

ସମ୍ପର୍କରେ ସଂକ୍ଷିପ୍ତ ସୂଚନା ପ୍ରଦାନ କରି କହିଥିଲେ-ସମାଲୋଚନା ସାହିତ୍ୟର ଅନୁଗାମୀକ୍ରିୟା ନୁହେଁ, ସର୍ଜନଶୀଳ ସାହିତ୍ୟର ଅନ୍ୟାନ୍ୟ ବିଭାବ ଭଳି ଏକ ସୃଷ୍ଟିଶୀଳ କ୍ରିୟା।

ତାଙ୍କର ଅନେକ ପୁସ୍ତକ ପ୍ରକାଶ ପାଇ ଓଡିଆ ସାହିତ୍ୟ ଋଦ୍ଧିମନ୍ତ ହୋଇପାରିଛି। ସେ ମଧ୍ୟରେ ନନ୍ଦକିଶୋର ବଳ ସମ୍ପର୍କିତ ଗୋଟିଏ ଫୁଲ ଫୁଟିବାର ବେଳ ୧୯୯୦, ଗଙ୍ଗାଧର:କବିତା ଓ କବି ଆତ୍ମା ୧୯୯୫, ଫକୀରମୋହନ ଗ୍ରନ୍ଥାବଳୀ, ୨୦୦୬ରୁ ୨୦୦୯, ଗାନ୍ଧିଜୀଙ୍କ ଦୃଷ୍ଟିରେ ମଧୁସୂଦନ (ଆଚାର୍ଯ୍ୟଭାବାନନ୍ଦଙ୍କ ସହିତ) ୧୯୯୯, ମଦନମୋହନ ରଚନା ସଂଗ୍ରହ (ପ୍ରଗତି ଉତ୍କଳ ସଂଘ) ୨୦୦୪, ଉତ୍କଳ ସମ୍ମିଳନୀ ୧୯୦୩ରୁ ୧୯୩୬ ସମ୍ପାଦନା (ପ୍ରଥମ ଭାଗ)୨୦୦୫, ଉତ୍କଳମଣି ଗୋପବନ୍ଧୁ ରଚନାବଳୀ, ପ୍ରଥମ ଖଣ୍ଡ(କବିତା), ୨୦୦୩, ରାଧାନାଥ ଗ୍ରନ୍ଥାବଳୀ, ଫକୀରମୋହନ ସେନାପତିଙ୍କ ଆତ୍ମଚରିତ ଅନ୍ୟତମ। ରାଉରକେଲାସ୍ଥ ପ୍ରଗତି ଉତ୍କଳ ସଂଘର ସାଂସ୍କୃତିକ ସଂଗଠନ କାର୍ଯ୍ୟ ସହିତ ଅନେକ ସମ୍ପାନରେ ଯୋଗଦେଇ ତାଙ୍କର ପ୍ରସାରିତ ଦୃଷ୍ଟିକୋଣର ପରିଚୟ ଛାଡିଯାଇଅଛନ୍ତି। ଦିଲ୍ଲୀଠାରେ Fakir Mohan Senapati:A View from Below ଆନ୍ତର୍ଜାତିକ ସମ୍ପାନରେ Canonization and Translation of Fakir Mohan's Works ପ୍ରବନ୍ଧ ଉପସ୍ଥାପନ କରିଛନ୍ତି। କେନ୍ଦ୍ର ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ମଣିପୁର ଇମ୍ପାଲଠାରେ ଅନୁଷ୍ଠିତ ଆଲୋଚନାଚକ୍ରରେ Migrant Literature in India ପ୍ରବନ୍ଧ ଉପସ୍ଥାପନ କରିଛନ୍ତି। ତାଙ୍କର ପ୍ରବନ୍ଧ ତଥା ଆଲୋଚନାରେ ତଥ୍ୟ ଓ Contextକୁ ଗୁରୁତ୍ୱ ଦିଆଯାଇଛି, ଯାହା ଓଡିଆସାହିତ୍ୟ ସମାଲୋଚନା ତଥା ଚର୍ଚ୍ଚାରେ ଅନେକ କ୍ଷେତ୍ରରେ ଅନୁପସ୍ଥିତ। ଦେବେନ୍ଦ୍ରବାବୁଙ୍କ ରଚନା ସମଗ୍ର ଓଡିଆସାହିତ୍ୟ ସଂସ୍କୃତି ଚର୍ଚ୍ଚାକ୍ଷେତ୍ରରେ ଅବିସ୍ମରଣୀୟ ସଂଯୋଜନ। ତାଙ୍କର ଅକାଳ ବିୟୋଗରେ ଓଡିଆସାହିତ୍ୟର ଯେଉଁ କ୍ଷତିଘଟିଲା ତାହା ଅପୂରଣୀୟ। ତେବେ ବର୍ତ୍ତମାନର ଗବେଷକଗବେଷିକାମାନେ ଏଥିପ୍ରତି ସଚେତନ ହେବା ଆବଶ୍ୟକ।

*ଭୁବନେଶ୍ୱର*

ଧନେଶ୍ୱର ସାହୁ

# ସାରସ୍ୱତ ସାଧକ ଦେବେନ୍ଦ୍ର

ବିଶିଷ୍ଟ ସାହିତ୍ୟ-ଗବେଷକ, ସମାଲୋଚକ, ବୁଦ୍ଧିଜୀବୀ ଓ ହେତୁବାଦୀ-ଚିନ୍ତକ ଦେବେନ୍ଦ୍ର କୁମାର ଦାଶଙ୍କର ଆକସ୍ମିକ ଦେହାନ୍ତ ବିଷୟ ଜାଣିବାକୁ ପାଇ ମର୍ମାହତ ହେଲି । ସେ ଯେ ଏତେ ଶୀଘ୍ର ସଂସାରରୁ ଚାଲିଯିବେ, ତାହା ବିଶ୍ୱାସ କରିହେଉନାହିଁ ଏହି ସତ୍ୟକୁ ଅସ୍ୱୀକାର କରିହେବ ନାହିଁ । ଦେବେନ୍ଦ୍ରବାବୁ ଥିଲେ ସ୍ୱତନ୍ତ୍ର, ଜଣେ ପ୍ରତିଭାବାନ ଓ ମୁକ୍ତ-ଚିନ୍ତକ । ତାଙ୍କ ବିୟୋଗ, ଆମ ସାହିତ୍ୟଜଗତରେ ଅପୂରଣୀୟ ଶୂନ୍ୟତା ସୃଷ୍ଟି କରିଛି ।

ଦେବେନ୍ଦ୍ରବାବୁଙ୍କ ସହ ମୋର ସମ୍ପର୍କ ଗତ କିଛି ଦଶନ୍ଧିର । ରାଉରକେଲାରେ ସେ ଅଧ୍ୟାପନା କରୁଥାନ୍ତି । ସେଠାରେ କେରଳର ଅନେକ ଇଞ୍ଜିନିୟର ଚାକିରି କରୁଥିଲେ । ସେମାନେ ସେଠାରେ "ଓଡିଶା ରେସନାଲିଷ୍ଟ ଆସୋସିଏଶନ" ନାମରେ ଏକ ସଂଗଠନ ଷଷ୍ଠ ସପ୍ତମ ଦଶକରେ ଆରମ୍ଭ କରିଥିଲେ । ଟି.ପି.ଏନ. ପିଲାଇ, ପ୍ଲାଣ୍ଟର ଜଣେ ଇଞ୍ଜିନିୟର, ଏହି ହେତୁବାଦୀ ସଂଗଠନର ପ୍ରଥମ ସ୍ଥପତି ଓ ସଂଗଠନର ସଦସ୍ୟ । କେବଳ ଷ୍ଟିଲ ପ୍ଲାଣ୍ଟର କର୍ମଚାରୀ ଓ ପ୍ରାୟତଃ କେରଳର ହେତୁବାଦୀ ବନ୍ଧୁ । ସେମାନେ ସେଠାରେ ବିଭିନ୍ନ ଆଲୋଚନାଚକ୍ର ଓ ସଂପାନମାନ ଆୟୋଜନ କରି ହେତୁବାଦର ବିଭିନ୍ନ ଦିଗ ଉପରେ ଚର୍ଚ୍ଚା କରୁଥିଲେ । ଏହି ସଂଗଠନ ସହ ମୋର ସମ୍ପର୍କ ୧୯୮୨ରୁ । କାରଣ ଓଡିଶା ହେତୁବାଦୀ ସମାଜ ନାମରେ ମୁଁ ଏକ ସଂଗଠନ ୧୯୮୦ରେ ଆରମ୍ଭ କରିଥିଲି । ରାଉରକେଲା ସଂଗଠନରେ ଧୀରେ ଧୀରେ ଅନେକ ବୁଦ୍ଧିଜୀବୀ, ପ୍ରଗତିଶୀଳ ଚିନ୍ତକ ଓ ସଂସ୍କାର-ପ୍ରୟାସୀ ବ୍ୟକ୍ତି ସଂପୃକ୍ତ ହେଲେ । ପିଲାଇଙ୍କ ପରେ ଦେବେନ୍ଦ୍ରବାବୁ ରାଉରକେଲାସ୍ଥିତ ଓଡିଶା ରେସନାଲିଷ୍ଟ ଆସୋସିଏଶନର ସଭାପତି ହେଲେ ଓ ପ୍ରାୟ ରାଉରକେଲା ଛାଡିବା ପର୍ଯ୍ୟନ୍ତ ଏହାର ସଭାପତି ପଦରେ ରହିଥିଲେ । ସେ ସଭାପତି ହେବା ପରେ ବିଭିନ୍ନ ପ୍ରକାର ଶିକ୍ଷଣୀୟ କାର୍ଯ୍ୟକ୍ରମ ଆରମ୍ଭ ହୋଇଥିଲା । ସର୍ବଭାରତୀୟ ସ୍ତରର ବିଶିଷ୍ଟ ହେତୁବାଦୀ- ମାନବବାଦୀ

ବୁଦ୍ଧିଜୀବୀମାନଙ୍କୁ ରାଉରକେଲାକୁ ଡକାଯାଇ ବିଭିନ୍ନ କାର୍ଯ୍ୟକ୍ରମ କରାଯାଉଥିଲା । ସୁନ୍ଦରଗଡ ଜିଲ୍ଲାରେ ଗାଁ ଗହଳରେ କଳା-ଯାଦୁ, ଗୁଣିଗାରେଡି ଓ ନାନା ଅପବିଶ୍ୱାସ ବ୍ୟାପକ ଭାବେ ରହିଥିଲା ଓ ଏହି କୁସଂସ୍କାରକୁ ନେଇ ବେଳେବେଳେ ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି ହେଉଥିଲା । ଏହି ପରିପ୍ରେକ୍ଷୀରେ ଦେବେନ୍ଦ୍ରବାବୁଙ୍କ ସଭାପତିତ୍ୱରେ ଲୋକଙ୍କ ମନରୁ କୁସଂସ୍କାର ଦୂରୀକରଣ ପାଇଁ ପ୍ରଶାସନର ସାହାଯ୍ୟରେ ବିଭିନ୍ନ କାର୍ଯ୍ୟ ହାତକୁ ନିଆଯାଇଥିଲା । ସର୍ବଭାରତୀୟ ସ୍ତରର କେତେକ ବୁଦ୍ଧିଜୀବୀ, ସମାଜସେବୀ ଓ ବୈଜ୍ଞାନିକମାନଙ୍କୁ ଆମନ୍ତ୍ରଣ କରି "ଚମତ୍କାରିତା ପଶ୍ଚାତରେ ବିଜ୍ଞାନ'' (Science Behind Miracles) କାର୍ଯ୍ୟକ୍ରମମାନ ଆୟୋଜନ କରାଯାଉଥିଲା । ଏଥି ସହିତ ରାଉରକେଲାର ବିଭିନ୍ନ ବିଦ୍ୟାଳୟଗୁଡ଼ିକୁ ଯାଇ ପିଲାମାନଙ୍କ ଭିତରେ ବୈଜ୍ଞାନିକ ମନୋଭାବ ଓ ଅନିସନ୍ଧିତ୍ସୁ ଦୃଷ୍ଟିକୋଣ ସୃଷ୍ଟି କରିବାକୁ ପ୍ରୟାସ ହୋଇଥିଲା । ଦେବେନ୍ଦ୍ରବାବୁ ଥିଲେ ସକଳ କାର୍ଯ୍ୟର ପରିଚାଳକ ।

ରାଉରକେଲା ସଂଗଠନ ଆନୁକୂଲ୍ୟରେ ଓ ଦେବେନ୍ଦ୍ରବାବୁଙ୍କ ସଂପାଦନାରେ 'ଜିଜ୍ଞାସା' ନାମରେ ଏକ ହେତୁବାଦୀ ପ୍ରବନ୍ଧ ସଂକଳନ ପ୍ରକାଶ ପାଇଥିଲା । ସେ ସେହି ସଂକଳନରେ ଏକ ଭାବଗର୍ଭକ ପ୍ରବନ୍ଧ ଓ ସୁନ୍ଦର ସମ୍ପାଦକୀୟ ଲେଖିଥିଲେ। ହେତୁବାଦ ଏକ ଜୀବନ-ଦର୍ଶନ, ଯାହାର ମୂଳଭିତ୍ତି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଓ ମାନବବାଦ ଉପରେ ବିକଶିତ । ସମାଜ ସଂସ୍କାର, ମାନବିକ ଅଧିକାର, ସାମାଜିକ ନ୍ୟାୟ, ମୁକ୍ତ ମନ, ବୈଜ୍ଞାନିକ ମନୋଭାବ ଇତ୍ୟାଦି ମୂଲ୍ୟଚୟ ହେତୁବାଦ ପ୍ରସାର କରିଥାଏ। ଦେବେନ୍ଦ୍ରବାବୁଙ୍କ ଜୀବନ ଏହି ଆଦର୍ଶର ଥିଲା ପ୍ରୟୋଗଶାଳା ।

ସେ ଥିଲେ ମୁଖ୍ୟତଃ ଜଣେ ଓଡ଼ିଆ ଭାଷା ସାହିତ୍ୟର ଅଧ୍ୟାପକ । ତାଙ୍କର ବୃତ୍ତିଗତ ଜୀବନରେ ଅଧ୍ୟାପନା ସହ ସେ ଗବେଷଣାରେ ନିଜକୁ ସମର୍ପିତ କରିଥିଲେ । ଓଡ଼ିଆ ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟକୁ ତାଙ୍କର ବେଶ ଅବଦାନ ରହିଛି । ବିଦ୍ୟାର ବହୁ ବିଷୟରେ ତାଙ୍କର ଗଭୀର ଅଧ୍ୟୟନ ରହିଥିଲା ଓ ମୌଳିକ ଗବେଷଣା କ୍ଷେତ୍ରରେ ସେଥିପାଇଁ ସେ କୃତବିଦ୍ୟ ଥିଲେ । ଫଳରେ ସାହିତ୍ୟ କ୍ଷେତ୍ରରେ ଅନେକ ନୂତନ ତଥ୍ୟ ଓ ଅନାଲୋଚିତ ବିଭବମାନ ସେ ତାଙ୍କ ଗବେଷଣାରେ ଦର୍ଶାଇଛନ୍ତି। ଗଙ୍ଗାଧର ମେହେର ଓ ନନ୍ଦକିଶୋର ବଳଙ୍କ କୃତି ସମ୍ପର୍କରେ ସେ ତାଙ୍କ ପୁସ୍ତକ "ଗଙ୍ଗାଧର : କବି ଓ କବିଆତ୍ମା" ଏବଂ "ଗୋଟିଏ ଫୁଲ ଫୁଟିବାର କାହାଣୀ"ରେ ସେ ଯେଉଁ ଗମ୍ଭୀର ଓ ମନୋଜ୍ଞ ଆଲୋଚନା କରିଛନ୍ତି, ତାହା ତାଙ୍କ ସୃଜନଧର୍ମୀ ବିଶ୍ଳେଷଣର ପରିଚୟ ।

ଓଡ଼ିଆ ସାହିତ୍ୟର ସର୍ବମାନ୍ୟ କବି, କଥାକାର ଓ ଲେଖକମାନଙ୍କର କେତେକ କୃତିକୁ ସଂପାଦନା କରିବା କ୍ଷେତ୍ରରେ ଯେ ଯେଉଁ ଭାବଗର୍ଭକ ମୁଖବନ୍ଧମାନ ଲେଖିଛନ୍ତି, ତାହା ଯେକୌଣସି ପାଠକକୁ ବିମୋହିତ କରିଥାଏ । ସଂଯୋଜନ ଓ ବିଶ୍ଳେଷଣରୁ ତାଙ୍କ

ବୌଦ୍ଧିକ ସ୍ୱଚ୍ଛତା ଓ ଗଭୀରତାର ପରିଚୟ ମିଳିଥାଏ । କବିବର ରାଧାନାଥ, ବ୍ୟାସକବି ଫକୀରମୋହନ, ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁଙ୍କ ପରି ବିଶିଷ୍ଟ ସ୍ରଷ୍ଟାମାନଙ୍କର ଚଚନାବଳୀକୁ ଅନ୍ୟ ସହ ମିଶି ସେ ଯେପରି ସଂପାଦନା ଓ ମୁଖବନ୍ଧ ରଚନାରେ ନିଜର ସ୍ୱାକ୍ଷର ରଖିଛନ୍ତି । ସେଗୁଡ଼ିକ ତାଙ୍କ ମୌଳିକତା, ବୌଦ୍ଧିକତା ଓ ସୃଜନଶୀଳତାର ପ୍ରମାଣ ।

'ଆମ ଓଡିଶା' ଆନୁକୂଲ୍ୟରେ ପ୍ରକାଶିତ 'ସାହିତ୍ୟକୋଷ' ଓଡିଆ ସାହିତ୍ୟର ଏକ ଅମୂଲ୍ୟ ଜ୍ଞାନକୋଷ । ଏହାର ସଂପାଦନା ସହିତ ସେ ମଧ୍ୟ ସଂପୃକ୍ତ ଥିଲେ । ତିନି ଦଶନ୍ଧିରୁ ଅଧିକ ସମୟ ଧରି ତାଙ୍କ ସହ ମୋର ପରିଚୟ । ତାଙ୍କ ଅନୁରୋଧକ୍ରମେ ରାଉରକେଲା ହେତୁବାଦୀ କାର୍ଯ୍ୟକ୍ରମରେ ଯୋଗଦେବାକୁ ଯାଇଛି ଓ ଅନ୍ୟ କେତେକ ସଂପାନରେ ଏକାଠି ଭାଗନେବାର ଅବକାଶ ପାଇଛି । ତାଙ୍କ ଅବର୍ତ୍ତମାନରେ ସେହି ସ୍ମୃତି ମନକୁ ଆସି ବ୍ୟଥିତ କରୁଛି । ସେ ଥିଲେ ଜଣେ ଦରିଦୀ ମଣିଷ, ପ୍ରଜ୍ଞା ଓ ମାନବିକତାର ଅନ୍ତରଙ୍ଗ ସମୀକରଣ । ତାଙ୍କ ପ୍ରତି ହୃଦୟଭରା ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିବା ସହ ତାଙ୍କ ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ଗଭୀର ସମବେଦନା ଜଣାଉଛି ।

*ଢେଙ୍କାନାଳ*

## ବିଭୂତି ପଣ୍ଡା

# ଦେବେନ୍ଦ୍ର ବ୍ୟକ୍ତିତ୍ୱ

ବର୍ଷଣମୁଖୀ ମେଘଟିଏ ବର୍ଷା କରିନପାରିବା କାରଣରୁ ଯେଭଳି ଆକାଶରେ ଜମାଟ ବାନ୍ଧିଲା ଭଳି ସ୍ଥିର ହୋଇ ରହିଥାଏ, ଠିକ୍ ତାହାରି ଅନୁରୂପ ଅଗଷ୍ଟ ୨୩ ତାରିଖ ସକାଳ ପହରଠାରୁ ମନଟି ମୋର ଭାରାକ୍ରାନ୍ତ ମନେହେଉଥିଲା । ଏକ ଅଜଣା ଅସହାୟବୋଧର ଭାବ ହେତୁ କିଛି ଭଲ ଲାଗୁନଥିଲା । କାହିଁକି ସେପରି ଏକ ଅନୁଭବ ଆସିଥିଲା ତାହାର କାରଣ ମୁଁ ପାଇପାରୁ ନଥିଲି । ଅବଶ୍ୟ ଅନେକଙ୍କ ଜୀବନରେ ବି କିଛି କାରଣ ନ ଥାଇ ଏକ ଅଭାବବୋଧର ଭାବନା ଆସି ସେମାନଙ୍କୁ ଆଶଙ୍କାଗ୍ରସ୍ତ କରିଥାଏ କଥାଟି ଶୁଣିବାକୁ ମିଳିଥାଏ । ତେଣୁ ସେଭଳି କିଛି ଭାବନାର ସହ ମନକୁ ଶାନ୍ତ କରିବାର ପ୍ରଚେଷ୍ଟା କରୁଥିଲି । ବାଧବାଧକତାରେ ମଧ୍ୟାହ୍ନଭୋଜନ ଶେଷ କଲାପରେ ଫୋନ୍‌ରେ ଖବର ଆସିଲା, 'ଦେବେନ୍ଦ୍ର ଆଉ ନାହିଁ' । କଥାଟି ପ୍ରଥମେ ଅବିଶ୍ୱାସ୍ୟ ମନେହେଲା, କାରଣ ତା'ସହ କେଇଟିଦିନ ପୂର୍ବରୁ ତା'ର ପତ୍ନୀ ଗୀତାର ଆଣ୍ଠୁ ପ୍ରତିରୋପଣ ପରର ସ୍ୱାସ୍ଥ୍ୟାବସ୍ଥା ତଥା ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟକୁ ସ୍ୱଭାବକବି ଗଙ୍ଗାଧର ବେହେରଙ୍କ ଜୟନ୍ତୀ ପାଳନ ପାଇଁ ଯାଇଥିବା ତଥା ତା' ପରେ ପରେ ବାଲେଶ୍ୱରସ୍ଥିତ ଫକୀରମୋହନ ବିଶ୍ୱବିଦ୍ୟାଳୟରେ କେନ୍ଦ୍ର ସାହିତ୍ୟ ଅକାଦେମୀର ସାହିତ୍ୟ ସଭାକୁ ଯାଇଥିବା କଥା ନେଇ କଥାବାର୍ତ୍ତା ହୋଇଥିଲା । ଅବଶ୍ୟ ଲାଗ୍ ଲାଗ୍ ଦୁଇଟି ସ୍ଥାନକୁ ଓଡ଼ିଶାର ପଶ୍ଚିମଭାଗରୁ ଉତ୍ତରଭାଗକୁ ଯାତ୍ରାଜନିତ କାରଣରୁ ଅଣ୍ଟାବ୍ୟଥା ତଥା ଜ୍ୱର ହୋଇଥିବା କଥା କହିଥିଲେ ବି ଶୀଘ୍ର ସେ ସୁସ୍ଥ ହୋଇଯିବ ଆଦି କଥାଛଳରେ କହିଥିଲା । ସେହି କାରଣରୁ କଥାର ସତ୍ୟତା ଜାଣିବା ପାଇଁ କ୍ଷୀରୋଦକୁ ଫୋନ୍ କରିଥିଲି ଓ ମୃତ୍ୟୁସମ୍ବାଦକୁ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲି । ତଥାପି 'ମୃର୍ତ୍ୟୋମାଂ ଅମୃତ ଗମୟଃ' ଭାବ ଅନୁସରଣରେ ଭକ୍ତକବି ମଧୁସୂଦନ ରାଓ ପ୍ରାର୍ଥନାରେ ଲେଖିଥିବା 'କରିଅଛି ମରଣକୁ ଅମୃତ ସୋପାନ' ପଦ ବାଲ୍ୟକାଳରୁ ବାରମ୍ବାର ଉଚ୍ଚାରଣ କରିଆସୁଥିଲେ

ହେଁ ସତରେ କ'ଣ କେହି ଆପଣା ଜନର ମୃତ୍ୟୁସମ୍ବାଦ ପାଇଲେ ସହଜରେ ଗ୍ରହଣ କରିପାରେ ଭଳି କଥାଟି ଜଣକୁ ଅଥୟ କଲା ସଦୃଶ ଭାବନା ଭାବନାରେ ଅନେକକଥା ଆସିବା ଆରମ୍ଭ କରିଥିଲା। ଅବଶ୍ୟ ମୃତ୍ୟୁ ହିଁ ଚିରନ୍ତନ ମୃତ୍ୟୁ ହୋଇପାରେ, ପଞ୍ଚଭୂତର ଦେହଟି ଯେଉଁଠାରୁ ଆସିଥାଏ ସେହି ସେହି ଭାବ ସହ ମିଳିତ ହୋଇଯାଏ। ମାତ୍ର ଶରୀର ଭିତରେ ଥିବା ଆତ୍ମାର ଅହଂଚେତନା ସହ ଥିବା ସମ୍ପର୍କକୁ ଅନ୍ୟ ଏକ ବ୍ୟକ୍ତି ବା ମଣିଷ କ'ଣ ପାସୋରିଯିବା ସମ୍ଭବ ହୋଇନଥାଏ, ବରଂ ଜଣକ ସହ ଅନ୍ୟଜଣଟିର ଥିବା ସମ୍ପର୍କଟି ପ୍ରତ୍ୟେକ କ୍ଷଣରେ ଚେତାଇ ଦେଉଥାଏ ସେ ଅଛି ତୋ ସାଥେ ସାଥେ ଅଛି। ଫଳରେ ସମ୍ପର୍କର କ୍ଷଣସବୁକୁ ଅପର ବ୍ୟକ୍ତିଟିର ଆଖି ସାମ୍ନାରେ ଆସି ଛିଡ଼ାହେବା ଆରମ୍ଭ କରିଥାଏ। ଫଳରେ ନାହିଁ ଭିତରେ ବି ସେ ଅଛି ଭାବନାଟି ହେତୁ ସ୍ଥାପିତ ସମ୍ପର୍କସବୁର ଅପାସୋରା ଦୃଶ୍ୟରାଜି ସ୍ମୃତିପଟଳରେ ଚଳଚ୍ଚିତ୍ରର ଦୃଶ୍ୟରାଜି ସଦୃଶ ଉଦ୍‌ଭାସିତ ହେବା ଆରମ୍ଭ କରିଥାଏ। ତେଣୁ ଦେବେନ୍ଦ୍ର ଅଛି ଓ ରହିବ; ମୋ ପାଖରେ, ଅନ୍ୟମାନଙ୍କ ପାଖରେ ତଥା ଆମେ ସମସ୍ତେ ଗଲାପରେ ବି ଓଡ଼ିଆ ସାହିତ୍ୟ ସମାଲୋଚନାର ଇତିହାସ ପୃଷ୍ଠାରେ। ତେଣୁ ସେ ଏବେ ବି ଅଛି ଓ କାଳକାଳକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ଦେବେନ୍ଦ୍ର କୁମାର ଦାଶର ନାମ।

ଦେବେନ୍ଦ୍ର କୁମାର ଦାଶ ସଂକ୍ଷେପରେ ଦେବେନ୍ଦ୍ର ସହ ମୋର ପ୍ରଥମ ସାକ୍ଷାତ ଏବେ ବି ମାନସପଟରେ ଲିପିବଦ୍ଧ। ସେ ବୋଧହୁଏ ଥିଲା ଅଗଷ୍ଟ ୧୯୭୦ ମସିହାର କୌଣସି ଏକ ଦିନ। ମୋର ବି.ଏ. ଶେଷବର୍ଷ ଆରମ୍ଭ ହୋଇସାରିଥିଲା ଓ ସେ ଥିଲା ଫାଷ୍ଟଇୟର ଡିଗ୍ରୀ କଳାର ଛାତ୍ର। ଆମେ ଉଭୟେ ପାଠ ପଢୁଥିଲୁ ବର୍ତ୍ତମାନର ଗଙ୍ଗାଧର ମେହେର ବିଶ୍ୱବିଦ୍ୟାଳୟ ବା ଅତୀତର ଗଙ୍ଗାଧର ମେହେର ମହାବିଦ୍ୟାଳୟରେ। ମୋର ସହପାଠୀ ଦ୍ୱାରୀକାଦ୍ୱାରୀ ପରିଚୟ କରାଇ ଦେଇଥିଲା ଯେ 'ବୁଝିଲ ବିଭୂତି, ଦେବେନ୍ଦ୍ର ଫାଷ୍ଟ ଇୟରରେ ଓଡ଼ିଆ ଅସ୍ୱନାଲ ବିଷୟ ନେଇ ପଢୁଛି। ବହୁତ ପଢ଼ାପଢ଼ି କରେ।" କ୍ରମେ ସମ୍ପର୍କ ବଢ଼ିଲା। ସେ ସମୟରେ ସେ ଉମେଶଚନ୍ଦ୍ର ସରକାର ଓ ରାମଶଙ୍କର ରାୟଙ୍କ ରଚିତ ଉପନ୍ୟାସର ତୁଳନାତ୍ମକ ଅଧ୍ୟୟନପୂର୍ବକ ଲେଖିଥିଲା। ଓଡ଼ିଆ ପ୍ରଥମ ଉପନ୍ୟାସ କେଉଁଟି ସମ୍ପର୍କିତ ସମାଲୋଚନାତ୍ମକ ପ୍ରବନ୍ଧ। ସେହି ପ୍ରବନ୍ଧଟିକୁ ଓଡ଼ିଆ ଭାଷା ସାହିତ୍ୟ ବିଭାଗର ପାଠଚକ୍ରରେ ପାଠ କରିବା ପାଇଁ ଅନୁରୋଧ କଲା ସମୟରେ ସେ ରାଜି ହୋଇଥିଲା। ତା'ର ପ୍ରବନ୍ଧ ପାଠ ପରେ ତହିଁରେ ରହିଥିବା ଅନୁସନ୍ଧିତ୍ସାର ଭାବ ସହ ଯୁକ୍ତିସିଦ୍ଧ ତାର୍କିକ ଆକଳନ ହେତୁ ସଭାରେ ସଭାପତିତ୍ୱ କରୁଥିବା ସ୍ୱର୍ଗତ ପ୍ରଫେସର ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ) ତଥା ଅନ୍ୟ ସମସ୍ତ ଅଧ୍ୟାପକ ତା'ର ପ୍ରଶଂସା କରିଥିଲେ। ପରେ ସେ ଓଡ଼ିଆ ସମ୍ମାନର ସହ ବି.ଏ. ପଢ଼ିଲା ଓ ମୁଁ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗରେ ପାଠ ପଢ଼ିଲି। ସେହି କାଳଖଣ୍ଡରେ ଅର୍ଥାତ୍ ୧୯୭୧ରୁ ୧୯୭୩ ମୁଁ ସ୍ନାତକୋତ୍ତର ଓଡ଼ିଆ ବିଭାଗ ଓ ସେ ଓଡ଼ିଆ

ସମ୍ମାନ ନେଇ ସ୍ନାତକ ଶ୍ରେଣୀରେ ପାଠ ପଢୁଥିଲା ସମୟରେ ୧୯୭୨ ସମୟକୁ କୁଳପତି ଡକ୍ଟର ଭୁବନେଶ୍ୱର ବେହେରାଙ୍କ ନେତୃତ୍ୱରେ ବିଶ୍ୱବିଦ୍ୟାଳୟର ମୁଖପତ୍ର ଭାବରେ ସାହିତ୍ୟ ପତ୍ରିକା 'ସପ୍ତର୍ଷି' ପ୍ରକାଶଲାଭ କଲା। ସେହି ପତ୍ରିକାରେ ୧୯୭୨ର କୌଣସି ଏକ ସଂଖ୍ୟାରେ କବି ଗଙ୍ଗାଧରଙ୍କ 'ତପସ୍ୱିନୀ' କାବ୍ୟର ସୀତା ଚରିତ୍ରକୁ ଲେଖିଥିବା ଇଂରାଜୀ ଭାଷା ସାହିତ୍ୟ ବିଭାଗର ତତ୍କାଳୀନ ପ୍ରଫେସର ଡକ୍ଟର ପ୍ରଫୁଲ୍ଲ କୁମାର ପତିଙ୍କ ଏକ ସମାଲୋଚନା ପ୍ରକାଶଲାଭ କରିଥିଲା। ସେହି ପ୍ରବନ୍ଧରେ ସୀତାଙ୍କ ଚରିତ୍ର ସମ୍ପର୍କରେ ଥିବା କିଛି ମତାମତକୁ ବିରୋଧପୂର୍ବକ ସ୍ନାତକ ଶ୍ରେଣୀର ଛାତ୍ର ଥିଲା ଅବସ୍ଥାରେ ଦେବେନ୍ଦ୍ର ବିରୋଧ କରିବାପୂର୍ବକ ଏକ ଦୀର୍ଘ ଚିଠି ସମ୍ପାଦନାମଣ୍ଡଳୀ ପାଖକୁ ପ୍ରେରଣ କରିଥିଲା। ସମ୍ପାଦନାମଣ୍ଡଳୀ ସହ ସମ୍ପୃକ୍ତ ଥିବା ପ୍ରଫେସର ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା ତାହା ପାଠ କଲାପରେ ଏବଂ ପ୍ରବନ୍ଧ ଭାବରେ ତାକୁ ସପ୍ତର୍ଷିର ପରବର୍ତ୍ତୀ ସଂସ୍କରଣରେ ସ୍ଥାନିତ କରିଥିଲେ। ଦେବେନ୍ଦ୍ର ରଚିତ ସେହି ପ୍ରବନ୍ଧଟି ସେ ସମୟରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା। ନିଜର ଅନ୍ୱେଷାଭାବ ସହ ଯୁକ୍ତିସିଦ୍ଧ ତର୍କ କରି ପ୍ରବନ୍ଧ ରଚନା କରିବାର ଧାରା ଦେଖାଯାଇଥିଲା ଦେବେନ୍ଦ୍ରଙ୍କ ପାଖରେ। ସମୟକ୍ରମେ ଆଗକୁ ଆଗକୁ ବିସ୍ତାରିତ ହୋଇଥିବା କଥାଟି ମୋର ବାରମ୍ବାର ସ୍ମରଣରେ ଆସିଥାଏ। ସେହି କାଳଖଣ୍ଡ ପରେ ମୋର ଅଧ୍ୟାପନାବର୍ଷ ଓ ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ସ୍ନାତକୋତ୍ତର ଶିକ୍ଷା ପରେ ଗବେଷଣା ପାଇଁ ଶାନ୍ତିନିକେତନ ଚାଲିଯାଇଥିବା ହେତୁ ପରସ୍ପର ପାଖରୁ ଦୂରେଇ ଯାଇଥିଲୁ। ମାତ୍ର ପୁନଶ୍ଚ ମୋର ରାଜେନ୍ଦ୍ର ମହାବିଦ୍ୟାଳୟରେ ଅଧ୍ୟାପନା କଲାପରେ ଦୀର୍ଘ ଦଶବର୍ଷର ବ୍ୟବଧାନ ପରେ ୧୯୮୩-୮୪ ସମୟକୁ ଆମର ପୁନର୍ବାର ସାକ୍ଷାତ ଘଟିଲା। ପୂର୍ବ ସମ୍ପର୍କର ସମୟ ପୁଣି ଲେଉଟିଆସିଲା। ଆମ ଉଭୟଙ୍କର ପତ୍ନୀ ଉପର ତଳ କ୍ଲାସରେ ବଲାଙ୍ଗୀର ମହିଳା ମହାବିଦ୍ୟାଳୟରେ ପାଠ ପଢ଼ିଥିବା ତଥା ବି.ଏଡ୍. ଏକାସାଥିରେ କରିଥିବା ତଥା ଦେବେନ୍ଦ୍ରର ଶାଶୁ ସେ ସମୟରେ ମୋର ପତ୍ନୀ ପ୍ରିୟମ୍ବଦାର ପୂର୍ବରୁ ଶିକ୍ଷୟିତ୍ରୀ ଓ କର୍ମକ୍ଷେତ୍ର ବଲାଙ୍ଗୀରର ବାଳିକା ବିଦ୍ୟାଳୟରେ ପ୍ରଧାନ ଶିକ୍ଷୟିତ୍ରୀ ଥିବା କାରଣରୁ ପାରିବାରିକ ସମ୍ପର୍କ ଧୀରେ ଧୀରେ ଘନିଷ୍ଠ ହେବାରେ ଲାଗିଥିଲା। ସେମିତିରେ ୧୯୯୨ରେ ମୋର ସରକାରୀ ମହାବିଦ୍ୟାଳୟ ରାଉରକେଲାକୁ ବଦଳି ହୋଇଯିବା ପରେ ଆମେ ଉଭୟେ ପୁଣି ଥରେ ଘନିଷ୍ଠ ହୋଇଉଠିଥିଲୁ। ସେ ସମୟକୁ କବି ନନ୍ଦକିଶୋର ବଳଙ୍କ ରଚନା ଆଧାରରେ ତା' ବହି 'ଫୁଲ ଫୁଟିବାର କାହାଣୀ' ପ୍ରକାଶଲାଭ କରିସାରିଥିଲା। 'ରାଉରକେଲା' ସହର ଓଡ଼ିଶାର ସୀମାନ୍ତ ଅଞ୍ଚଳ ହୋଇଥିବା ତଥା ଇସ୍ପାତ କାରଖାନାର ପ୍ରତିଷ୍ଠା ହେତୁ ଓଡ଼ିଆ ଅସ୍ମିତାର ସଙ୍କଟ କାରଣରୁ ସାହିତ୍ୟ ଓ ଭାଷାର ପ୍ରତିଷ୍ଠା ପାଇଁ 'ପ୍ରଗତି ଉତ୍କଳ ସଂଘ' ଆଦର୍ଶ ପାଠାଗାର 'କଲଚରାଲ ଏକାଡ଼େମୀ', 'ବାସନ୍ତୀ ପାଠାଗାର' ଆଦି ସହ ଦେବେନ୍ଦ୍ରର ସମ୍ପୃକ୍ତି ରହିଥିଲା ତଥା ଓଡ଼ିଆ ଭାଷା ସାହିତ୍ୟରେ ତା'ର ପାଣ୍ଡିତ୍ୟ ତଥା ଜ୍ଞାନକୁ ନେଇ ତା'ର

ଆଦର ରହିଥିଲା । ଫଳରେ କବି ନନ୍ଦକିଶୋରଙ୍କ ସମ୍ପର୍କିତ ପୁସ୍ତକ 'ଗଙ୍ଗାଧର କବିତା ଓ କବିଆତ୍ମା' ଶୀର୍ଷକ ବହିଟି 'ପ୍ରଗତି ଉତ୍କଳ ସଂଘ' ସୌଜନ୍ୟର ପ୍ରକାଶଲାଭ କରିଥିଲା । ଓଡ଼ିଆ ଅସ୍ମିତା ସହ ଭାଷା ସାହିତ୍ୟ ଓ ସଂସ୍କୃତିର ପ୍ରଚାର ପ୍ରସାର ପାଇଁ ବଦ୍ଧପରିକର ଥିବା 'ପ୍ରଗତି ଉତ୍କଳ ସଂଘ' ଅନୁଷ୍ଠାନ ପକ୍ଷରୁ ଆଚାର୍ଯ୍ୟ ଭାବାନନ୍ଦଙ୍କ ସହ ଦେବେନ୍ଦ୍ରର ସମ୍ପାଦନାରେ ମଧୁସୂଦନ ଦାସଙ୍କ ଜୀବନ ଆଧାରିତ ଇଂରାଜୀ ଏବଂ ଓଡ଼ିଆ ପୁସ୍ତକ ପ୍ରକାଶଲାଭ କରିବା ଉଲ୍ଲେଖନୀୟ ଘଟଣା ।

ପରେ ପରେ କବିବର ରାଧାନାଥ ରାୟ, ବ୍ୟାସକବି ଫକୀରମୋହନ ସେନାପତି ଆଦିଙ୍କ ଗ୍ରନ୍ଥାବଳୀ ସମ୍ପାଦନାରେ ସହଯୋଗ କରିଥିବା ଦେଖାଯାଏ । ବିଶେଷତଃ 'ପ୍ରଗତି ଉତ୍କଳ ସଂଘ'ର ଉଦ୍ଦେଶ୍ୟ ଚରିତାର୍ଥ ପାଇଁ ଅନେକ ପରିଶ୍ରମପୂର୍ବକ ଭିନ୍ନ ଭିନ୍ନ ସ୍ଥାନ ଯଥା– କଟକ ରାମଚନ୍ଦ୍ର ଭବନ, ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ବ୍ରହ୍ମପୁରସ୍ଥିତ ବାସଭବନରେ ଥିବା ବ୍ୟକ୍ତିଗତ ପାଠାଗାର ଆଦିରୁ ଭିନ୍ନ ଭିନ୍ନ ତଥ୍ୟ ସଂଗ୍ରହକ୍ରମେ 'ଉତ୍କଳ ସମ୍ମିଳନୀ' ୧୯୦୩ରୁ ୧୯୩୬ ଗ୍ରନ୍ଥ ତଥା ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ରଚନାବଳୀ ସଂଗ୍ରହପୂର୍ବକ ପୁସ୍ତକ ପ୍ରକାଶନ ଓଡ଼ିଶାର ଇତିହାସରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଗବେଷଣା ପାଇଁ ଏକ ଏକ ଅମୂଲ୍ୟ ଗ୍ରନ୍ଥ ଭାବରେ ପ୍ରତିଭାତ ହୋଇଥାଏ । ଠିକ୍ ସେମିତି ଏବେ ଏବେ ନ୍ୟାସନାଲ ବୁକ୍ ଟ୍ରଷ୍ଟ ପକ୍ଷରୁ ପ୍ରକାଶଲାଭ କରିଥିବା ଫକୀରମୋହନଙ୍କ ଗଳ୍ପ ପୁସ୍ତକ ତା'ର ବହୁଦିନର ଅଧ୍ୟବସାୟର ଫଳ । ସେ ଯେ କେବଳ ନିଜ ପାଇଁ କାମ କରୁଥିଲା ତା' ନୁହେଁ, ଅନ୍ୟମାନଙ୍କ କାମକୁ ଲୋକଲୋଚନକୁ ଆଣିବା ମଧ୍ୟ ତା'ର ବ୍ୟକ୍ତିତ୍ୱର ଏକ ଉଜ୍ଜ୍ୱଳ ଦିଗ । ସେମିତିରେ ତା'ର ବାରମ୍ବାର ତାଗିଦ୍ ହେତୁ ହିଁ ବିଗତ ଶତାବ୍ଦୀର ଅଶିଦଶକରେ ମୋର ଗବେଷଣାର ଫଳଶ୍ରୁତି 'ଓଡ଼ିଆ କ୍ଷୁଦ୍ର ଗଳ୍ପ ଓ ସୁରେନ୍ଦ୍ର ମହାନ୍ତି' ଶୀର୍ଷକ ନିବନ୍ଧର ଏକ ଅଂଶବିଶେଷ ମଧ୍ୟରୁ ଗାଳ୍ପିକ ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପ ଆଲୋଚନାର ଅଂଶଟି 'ସୁରେନ୍ଦ୍ର ଗଳ୍ପଦୀକ୍ଷା' ଶୀର୍ଷକରେ ୨୦୧୧ ମସିହାରେ ପୁସ୍ତିକା ଆକାରରେ ପ୍ରକାଶିତ ହୋଇଥିଲା । ସେମିତିରେ ଏକଦା ଗଳ୍ପ ଓ ଆଲୋଚନା ଲେଖାରୁ ଦୀର୍ଘବର୍ଷ ପାଇଁ ସୃଷ୍ଟିଶୀଳତା ହଜେଇଦେଇ ନୀରବ ପଡ଼ିଯାଇଥିବା । ମୁଁ ୨୦୧୬ରେ ପୁଣିଥରେ ଉପନ୍ୟାସ ରଚନାକ୍ଷେତ୍ରକୁ ଫେରିବା ପରେ ସେ ହିଁ ବେଶି ଖୁସି ହୋଇଥିଲା । କାରଣ ଛାତ୍ରାବାସରୁ ହିଁ ମୋର ଲେଖାଲେଖିର ଜଣେ ନିୟମିତ ପାଠକ ଭାବରେ ସେ ମୋ ଉପରେ ଅନେକ ବିଶ୍ୱାସ ରଖିଥିଲା । ସେ ଯେମିତି ଲେଖେ ଅନ୍ୟମାନଙ୍କୁ ବି ସେ ଦିଗରେ ଆଗେଇବା ପାଇଁ ପ୍ରୋତ୍ସାହିତ କରିଥାଏ । ସେହି କାରଣରୁ ଭିନ୍ନ ଭିନ୍ନ ସଂକଳନର ସମ୍ପାଦନା, ସମ୍ବାଦ ତଥା ଆମ ଓଡ଼ିଶା ପକ୍ଷରୁ 'ସାହିତ୍ୟ କୋଷ'ର ସମ୍ପାଦନା ସମୟରେ ଭିନ୍ନ ଭିନ୍ନ ବ୍ୟକ୍ତିଙ୍କ ସହଯୋଗ ପାଇଁ ପ୍ରଚେଷ୍ଟା କରିବା ଆଦି କାର୍ଯ୍ୟ ସେ ନିଃସ୍ୱାର୍ଥପର ଭାବରେ କରିଥିଲା । ସେମିତିରେ ମୋର ସୃଷ୍ଟିଶୀଳତା

ଫେରିପାଇବା ପରେ ୨୦୧୯ରେ କବି ଭୀମଭୋଇଙ୍କ ଜୀବନ ଆଧାରରେ ଏକ ଚରିତ ଉପନ୍ୟାସ ରଚନା ପାଇଁ କ୍ଷେତ୍ର ଭ୍ରମଣ ଓ ଅଧ୍ୟୟନ ଯେତେବେଳେ ମୁଁ ଆରମ୍ଭ କଲି ସେ ଅନେକ ବହି ମୋତେ ଯୋଗାଇ ଦେଇଥିଲା, ଯାହାଫଳରେ 'ଭୂମାନ୍ୱେଷୀ' ରଚିତ ଉପନ୍ୟାସ ତଥା 'ଭୀମଭୋଇ ! ଭୂମି ଓ ବିଭା' ପୁସ୍ତକ ଦୁଇଟି ରଚନା କରିବା ମୋ ପାଇଁ ସହଜ ହୋଇଥିଲା । ମୋ ଭଳି ଅନେକ ତା'ର ସାହାଯ୍ୟ ପାଇଥିବା କଥା ନେଇ ତା'ର ଅବର୍ତ୍ତମାନରେ ତାକୁ ସ୍ମରଣ କରୁଥିବା କଥାଟି ମଧ୍ୟ ସତ୍ୟ ।

ଦେବେନ୍ଦ୍ରର ଅବର୍ତ୍ତମାନରେ ସେ ପ୍ରାୟତଃ ଶେଷ କରିଥିବା 'ଉତ୍କଳ ସମ୍ମିଳନୀ'ର ୧୯୩୬ ମସିହା ପରବର୍ତ୍ତୀ ଭାଗ ତଥା ବଡ଼ବିଲ ମହାବିଦ୍ୟାଳୟର କବି ଭୀମଭୋଇଙ୍କ ରଚନାକୁ ନେଇ ହୋଇଥିବା ସମ୍ମାନରେ ପ୍ରକାଶ ପାଇଥିବା ଭୀମଭୋଇଙ୍କ ରଚନାବଳୀର ଆଲୋଚନା ସମ୍ପର୍କିତ ସ୍ମରଣିକା (ଯାହାକି ସେ ଅତିଥି ସମ୍ପାଦକ ଭାବରେ ସମ୍ପାଦନା କରିଥିଲା) କୁ ନେଇ ଦୁଇଟି ପୁସ୍ତକ ପ୍ରକାଶନ ପାଇଁ ଯୋଜନା କରିଥିଲା । ସେ କାମ କେତେଦୂର ଆଗେଇଛି ତାହା ପୂର୍ଣ୍ଣାଙ୍ଗ କରିବାର ଦାୟିତ୍ୱ ଏବେ ରହିଛି । ଦେବେନ୍ଦ୍ରର ଅବର୍ତ୍ତମାନରେ ସେ ଦୁଇଟି ବହି ପ୍ରକାଶଲାଭ କରିପାରିଲେ ଓଡ଼ିଆ ସାହିତ୍ୟର ବାଣୀଭଣ୍ଡାର ଅଧିକ ପରିପୁଷ୍ଟ ହୋଇପାରିବ ବୋଲି ଆଶା । ଅବଶ୍ୟ ଦେବେନ୍ଦ୍ରର ଏମିତି ଏକ ଅସମୟରେ ହଠାତ୍ ଚାଲିଯିବା ତା'ର ପରିବାରର ସମସ୍ତଙ୍କ ପାଇଁ ଯେମିତି ଅବିଶ୍ୱାସ୍ୟ ତଥା ଦୁଃଖଦ ଠିକ୍ ଅନୁରୂପ ଭାବରେ ତା'ର ଗୁରୁ ସ୍ଥାନୀୟ ବ୍ୟକ୍ତିବିଶେଷ ତଥା ଆମଭଳି ସତୀର୍ଥ ଓ ଅନୁଜ ଗବେଷକମାନଙ୍କ ପାଇଁ ମଧ୍ୟ ଦୁଃଖଦ ତଥା ଅପୂରଣୀୟ । ଓଡ଼ିଆ ସାହିତ୍ୟଜଗତ ପାଇଁ ମଧ୍ୟ ଏକ ବିଶେଷ କ୍ଷତି କହିଲେ ଅତ୍ୟୁକ୍ତି ହେବନାହିଁ । ବାହାରକୁ ଅନେକଙ୍କ ପାଇଁ କଠୋର ମନେହେଉଥିବ । ଦେବେନ୍ଦ୍ର ଯେ ଅନ୍ତରରେ ଅତ୍ୟନ୍ତ କୋମଳ ଥିଲା ତାହା ତା' ସଂସ୍ପର୍ଶରେ ଆସିଥିବା ବ୍ୟକ୍ତି ସ୍ୱୀକାର କରିବେ ଏଥିରେ ସନ୍ଦେହ ନାହିଁ । ପୁରି ସେ ହେତୁବାଦୀ ଭାବରେ ଯେଉଁ ବିଶ୍ୱାସ ମନ ଭିତରେ ରଖିଥିଲା ତାହା ତା' ପାଇଁ । ତେଣୁ ଅନ୍ୟର ବିଶ୍ୱାସରେ ବାଧା ଦେବା ପାଇଁ ସେ ଇଚ୍ଛା କରୁନଥିଲା । ସେମିତି ସେମିତି ଅନେକ କଥା ଦେବେନ୍ଦ୍ର ସମ୍ପର୍କରେ କହିଲେ କଥା ବଢ଼ିଚାଲିବ ସିନା ସରିବ ନାହିଁ । ତେଣୁ ଅଛିରୁ ନାହିଁ ନାହିଁ ଭିତରେ ବି ଅସ୍ତି ଭାବଟିଏ ନେଇ ଦେବେନ୍ଦ୍ର ଅଛି, ସେ ରହିବ ତା'ର ଶେଷନାହିଁ । ତା'ର ଆତ୍ମାର ସଦ୍‌ଗତି କାମନା ପାଇଁ ପ୍ରଭୁ ଜଗନ୍ନାଥଙ୍କୁ ପ୍ରାର୍ଥନା ଜଣାଉଛି ତଥା ଏଭଳି ଏକ ସମୟରେ ସମସ୍ତଙ୍କୁ ପ୍ରଭୁ ଜଗନ୍ନାଥ ସାହସ ଦିଅନ୍ତୁ ପ୍ରାର୍ଥନା କରୁଛି ।

*ରାଉରକେଲା*

ଗୁରୁଚରଣ ବେହେରା

# ସମାଲୋଚକ ଦେବେନ୍ଦ୍ର କୁମାର ଦାଶ

ସେଦିନ ମୁଁ ଫୋନ୍ କଲି ଦେବେନ୍ଦ୍ରବାବୁଙ୍କୁ। ଆଗରୁ ତାଙ୍କ ସହ ନନ୍ଦକିଶୋର ବଳଙ୍କ ଉପରେ ମୋର ଏକ ପ୍ରକଳ୍ପ ବିଷୟରେ ଆଲୋଚନା ହୋଇଥିଲା, ଆଲୋଚନା ଅସମାପ୍ତ ରହିଯାଇଥିଲା। ଗଙ୍ଗାଧର ମେହେର ଜୟନ୍ତୀ ଉତ୍ସବରେ ଯୋଗ ଦେବାକୁ ଯାଇ ସେତେବେଳେ ସେ ଥିଲେ ସମ୍ବଲପୁରରେ। ସେଠାରେ ଭାଷଣ କାର୍ଯ୍ୟ ସାରି ଭୁବନେଶ୍ୱର ଫେରିବେ, ଦିନେ ଦୁଇଦିନ ପରେ ଯିବେ ବାଲେଶ୍ୱର, ଫକୀରମୋହନଙ୍କ ଉପରେ ଅଭିଭାଷଣ ଦେବାକୁ। ପ୍ରତିଶ୍ରୁତି ଦେଇଥିଲେ, ସମ୍ବଲପୁର ଓ ବାଲେଶ୍ୱର କାର୍ଯ୍ୟକ୍ରମ ସାରି ଫେରିଲେ ଅବଶିଷ୍ଟ ଆଲୋଚନା କରିବାକୁ। ଭୁବନେଶ୍ୱର ଫେରିଲେ ସତ, କିନ୍ତୁ ଅସୁସ୍ଥ ହେଇପଡିଲେ। ଆଉ ସେ ସୁସ୍ଥ ହେଲେନାହିଁ, ସବୁଦିନ ପାଇଁ ଚାଲିଗଲେ ।

ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ଥିବାବେଳେ ଖୁବ୍ କମ୍ ଥର ତାଙ୍କ ସହିତ ମୋର କଥାବାର୍ତ୍ତା ହୋଇଥିଲା। ସେ ଯେ ଜଣେ ବିଜ୍ଞ ଗବେଷକ, ତାର ଝଲକ ପାଇଥିଲି ତାଙ୍କ ସହିତ କେଇପଦ କଥାବାର୍ତ୍ତାରୁ। ତା ସହିତ ମୋର ଧାରଣା ହେଇଥିଲା ସେ ଜଣେ ଅନମନୀୟ ଭାବେ ବିଜ୍ଞ, ଅର୍ଥାତ୍ ପ୍ରତିପକ୍ଷ ମତାମତକୁ ସହଜରେ ସେ ଗ୍ରହଣ କରନ୍ତିନାହିଁ। ପରେ ବୁଝିଲି ମୋର ଏ ଧାରଣା ଠିକ୍ ନୁହେଁ । ଯେତେବେଳେ ୨୦୧୮ ମସିହାରେ ଅବସର ନେଇ ଭୁବନେଶ୍ୱରରେ ଅବସ୍ଥାନ କଲି ଏବଂ ତାଙ୍କ ସମ୍ପର୍କରେ ଅଧିକ ଆସିଲି, ସାହିତ୍ୟ ଆଲୋଚନା କଲି, ତାଙ୍କ ଘରେ ଆଉ ବାହାରେ ସେମିନାରରେ, ମୋର ପୂର୍ବ ଧାରଣା ଦୂର ହେଲା। ତର୍କସମ୍ମତ ଯୁକ୍ତି ପ୍ରତି ସେ ଥିଲେ ସଦା ଉନ୍ମୁକ୍ତ। ରାଧାନାଥ ରାୟଙ୍କ ମହାଯାତ୍ରା କାବ୍ୟ ଉପରେ କାମ କଲା ବେଳକୁ ମୁଁ ତାଙ୍କଠାରୁ ବହୁତ ସାହାଯ୍ୟ ପାଇଥିଲି ।

କଥୋପକଥନରେ ଦେବେନ୍ଦ୍ର ବାବୁ ଥିଲେ ଚମତ୍କାର। ବଡ ଆକର୍ଷଣୀୟ ତାଙ୍କର ବାକ୍ ପଟୁତା। ତଥ୍ୟ ଓ ତତ୍ତ୍ୱରେ ରସାଳ ତାଙ୍କ କଥାବାର୍ତ୍ତା। ପୂରା ଧରି ରଖିଲା ଭଳି, ଆକୃଷ୍ଟ

କରି ରଖିବାଭଳି ଜଣେ ବୁଦ୍ଧିଦୀପ୍ତ ବକ୍ତା ଥିଲେ ସେ। ସେ ଧୈର୍ଯ୍ୟ ହରାନ୍ତି ନାହିଁ, କହିଚାଲିଥାନ୍ତି। ବରଂ ମୋତେ ହିଁ ମୋ ପଟରୁ ଆଲୋଚନାକୁ ସମାପ୍ତ କରିବାକୁ ପଡ଼େ। ସେହିଭଳି ଟେଲିଫୋନ୍‌ରେ କହିଚାଲିଥିବେ। ଅସରନ୍ତି ତାଙ୍କର ବାର୍ତ୍ତାଳାପର ଆବେଗ । ମୋର ଇଚ୍ଛା ହୁଏ, କଥାକୁ ଲମ୍ବାଇ ରଖାଇବାକୁ। କିନ୍ତୁ ଦେବେନ୍ଦ୍ର ବାବୁ ମୁଖ୍ୟତଃ ସ୍ୱଭାବଗତ ଓ ଅଭ୍ୟାସଗତ ଭାବେ ଜଣେ ବକ୍ତା। କେତେବାର ମୋତେ ସେ କହୁଥିଲେ, ସେ ଲେଖନ୍ତି ନାହିଁ, ଲେଖି ବି ପାରନ୍ତି ନାହିଁ। ମୁଁ ଆଶ୍ଚର୍ଯ୍ୟ ହେଇଗଲି ତାଙ୍କର ଏ ବିପୁଳ ସମାଲୋଚନା ସମ୍ଭାର ଦେଖି। ସେ କହନ୍ତି ସେ ମୁହଁରୁ ଡାକନ୍ତି, ତାଙ୍କର ବଂଧୁ ଶ୍ରୀଚରଣ ମହାନ୍ତି ଲେଖନ୍ତି। ତାହାକୁ ସେ ପଢି ବିସ୍ତୃତ ଭାବେ, ପୁଙ୍ଖାନୁପୁଙ୍ଖ ଭାବେ ସଂଶୋଧନ ଓ ସମ୍ପାଦନା କରିଥାନ୍ତି। ନିର୍ଣ୍ଣାୟକ ପ୍ରବନ୍ଧ ତିଆରି କରନ୍ତି । ତାଙ୍କର ପରମ ବନ୍ଧୁ ଶ୍ରୀଚରଣ ବାବୁ ମାୟାଧର ମାନସିଂହ ସାହିତ୍ୟର ଜଣେ ବିଶିଷ୍ଟ ଗବେଷକ। ବଡ ସରଳ ନିଷ୍କପଟ ଲୋକ। ଆମେ ତାଙ୍କୁ ସନ୍ଥ ବୋଲି କହିଥାଉ।

କୌଣସି ସମ୍ମାନରେ ଦେବେନ୍ଦ୍ରବାବୁ ପ୍ରବନ୍ଧ ପାଠ କରିବା ମୁଁ ଦେଖିନାହିଁ । ସେ ଖାଲି କହନ୍ତି, ବକ୍ତୃତା ଦିଅନ୍ତି। ମୋର ମତ ଯେ କୌଣସି ସମ୍ମାନରେ , ଏକ ବିଜ୍ଞମଣ୍ଡଳୀରେ ପ୍ରଦତ୍ତ ଭାଷଣ ସର୍ବଦା ଲିଖିତ ହେବା ଉଚିତ। କିନ୍ତୁ ସେ ଖାଲି କହନ୍ତି, କହି ଚାଲିଥାନ୍ତି। ତାରିଖ, ସ୍ଥାନର ବିବରଣୀ, ନିର୍ଭୁଲ ଭାବରେ, ଯଥା ସ୍ଥାନରେ ଅଦ୍ଭୁତ ସ୍ମରଣଶକ୍ତିର ମଣିଷ ଦେବେନ୍ଦ୍ରବାବୁ। ଜଣେ ଉତ୍କୃଷ୍ଟ ବକ୍ତା। ବେଶ୍ ସୁନ୍ଦର ଶାଣିତ ତର୍କ ସମ୍ବଳିତ, ସୁସଂଗଠିତ, ମାର୍ଜିତ ଭାଷଣ ସଂରଚନା ତାଙ୍କର। ମୁଁ ବଡ ବଡ ବିଜ୍ଞ ତତ୍ତ୍ୱବିତ୍ ହୋମି କେ. ଭାଭା, ବିଲ୍ ଆସ୍କ୍ରଫ୍‌ଟ, ହେଲେନ୍ ଟିଫିନ୍, ଗାୟତ୍ରୀ ସ୍ପିଭାକ୍, ଆଇଜାଜ୍ ଅହମଦ୍‌ଙ୍କୁ ଶୁଣିଛି। ସେମାନଙ୍କ ପ୍ରଦତ୍ତ ଭାଷଣ ଲିଖିତ ଭାଷଣ। କେବଳ ମୋର ନୁହେଁ, ଅନେକଙ୍କ ମତ ଗମ୍ଭୀର ଗବେଷଣାମୂଳକ ଅଭିଭାଷଣ ଲିଖିତ ହେବା ଉଚିତ। କେତେକ କଥିତ ଭାଷଣକୁ ଅଗ୍ରାଧିକାର ଦେଇଥାନ୍ତି, ଲିଖିତ ଭାଷଣକୁ ନାକ ଟେକନ୍ତି, ଏହା ସର୍ବସାଧାରଣ ସଭା ପାଇଁ ଅଧିକ ପ୍ରଯୁଜ୍ୟ। କିନ୍ତୁ ଦେବେନ୍ଦ୍ର କୁମାର ଦାଶଙ୍କ ଭାଷଣ ଶୁଣି ମୋର ମତ ବଦଳାଇବାକୁ ବାଧ୍ୟ ହେଉଛି। ସେ ଯେପରି ଆମ ଭାରତୀୟ ଶ୍ରୁତି ପରମ୍ପରାର ଯୋଗ୍ୟ ମଣିଷଟିଏ ? ତାଙ୍କର ଭାଷଣ ହିଁ ଗୋଟିଏ ଗୋଟିଏ ସୁଗଠିତ ସୁସଜ୍ଜିତ ପ୍ରବନ୍ଧ। ତାଙ୍କର ପରିଚ୍ଛନ୍ନ ଚିନ୍ତାଧାରା, ସ୍ୱଷ୍ଟ ଅଭିବ୍ୟକ୍ତି, ତର୍କ ସଂରଚନା କେବଳ ବୁଦ୍ଧିଦ୍ୟୋତକ ନୁହେଁ, ଆନନ୍ଦଦାୟକ ମଧ୍ୟ। ତାଙ୍କ ତର୍କର ପାଖୁଡ଼ା ଫୁଟି ଆସେ, ସୌରଭ ଖେଳାଇଦିଏ, ମନରେ ସରସତା ଭରିଦିଏ। ସମାଲୋଚନା ସାହିତ୍ୟ କେବଳ ଏକ ଶୁଷ୍କ, କାଂଟ ଛାଂଟ, ମାପିଚୁପି ସଂରଚନା ନୁହେଁ, ଏହାର ନାନ୍ଦନିକ ଆବେଦନ ଥାଏ, ତାହା ତାଙ୍କ ଭାଷଣ ଓ ଲେଖାରୁ ଜଣାଯାଏ। ଜାକ୍ ଦେରିଦା କଥନ ଓ ଲିଖନ ଭିତରେ ଥିବା ଦ୍ୱୈତତାକୁ ଯେପରି ଭାଙ୍ଗି ଦେଇଛନ୍ତି, ତାର ଦୃଷ୍ଟାନ୍ତ ହେଉଛି ଦେବେନ୍ଦ୍ର ବାବୁଙ୍କ ଭାଷଣ-ଲେଖା।

ଗ୍ରନ୍ଥ ସଂପାଦନା ଓ ଗ୍ରନ୍ଥ ସମୀକ୍ଷା ତାଙ୍କ ସାହିତ୍ୟର ଦୁଇଟି ଦିଗ। ପାଂଡୁଲିପି ସଂଗ୍ରହ, ଏହାର ଶୁଦ୍ଧ ପଠନ, ଟୀକା ଟୀପ୍‌ପଣି ପ୍ରସ୍ତୁତି, ଏବଂ ଗ୍ରନ୍ଥ ପ୍ରସ୍ତୁତି। ସେ କହୁଥିଲେ କିପରି କୀଟଦଂଷ୍ଟ୍ର, ଘୁଣଖିଆ ମଇଳା ପୃଷ୍ଠାରୁ ତାଙ୍କୁ ପାଠ୍ୟ ପ୍ରସ୍ତୁତ କରିବାକୁ କେତେ କଷ୍ଟ କରିବାକୁ ପଡ଼େ। ତାଙ୍କ ସମାଲୋଚନା-ସମୀକ୍ଷାର ସରଣୀ ସମୟଖଂଡ଼ର ପରିପ୍ରେକ୍ଷୀ ଓ ସମୟ ସମଗ୍ରର ପ୍ରେକ୍ଷାପଟରେ ଗ୍ରନ୍ଥର ପ୍ରକୃଷ୍ଟ ମୂଲ୍ୟାୟନ। ତାଙ୍କର ସମାଲୋଚନା ରୀତି ହେଉଛି ପରିପ୍ରେକ୍ଷୀ ଭିତ୍ତିକ ଅଧ୍ୟୟନ, ନିରୋଳା ଗ୍ରନ୍ଥ ବିଶ୍ଲେଷଣ ନୁହେଁ କି ପୃଷ୍ଠଭୂମି ଅଧ୍ୟୟନ ନୁହେଁ। ଏହା ହେଉଛି ପରିପ୍ରେକ୍ଷୀ ଓ ପୁସ୍ତକ ମଧ୍ୟରେ ଥିବା ଆଦାନପ୍ରଦାନ ପ୍ରକ୍ରିୟାର ବିଶ୍ଲେଷଣ। ଦୀର୍ଘ ଟୀକା ଓ ପରିଶିଷ୍ଟରେ ତାଙ୍କର ସମାଲୋଚନା ପରିପୁଷ୍ଟ।

ଊନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ ଗବେଷଣା କ୍ଷେତ୍ରରେ ନଟବର ସାମନ୍ତରାୟଙ୍କ ପରେ ସେ ହେଉଛନ୍ତି ଅନ୍ୟତମ ଗବେଷକ। ସାମନ୍ତରାୟଙ୍କ ସମାଲୋଚନାରେ ରହିଯାଇଥିବା ଶୂନ୍ୟସ୍ଥାନ ସେ ପୂରଣ କରିଛନ୍ତି ଓ ତାଙ୍କ ଭ୍ରାନ୍ତିକୁ ସଜାଡ଼ିଛନ୍ତି, ତାଙ୍କ ସମାଲୋଚନାର ଦିଗନ୍ତକୁ ଆଗେଇ ନେଇଛନ୍ତି।

ଦେବେନ୍ଦ୍ର କୁମାର ଦାଶ ଜଣେ ନିରୋଳା ସାହିତ୍ୟ ସେବକ ଓ ସାଧକ। ସେ ଥିଲେ ସମାଲୋଚକ ରେନେ ଓଏଲେକ୍‌ଙ୍କ ପ୍ରଶଂସକ। ଏଫ୍. ଆର୍. ଲିଭିସ୍ ଓ ରେନେ ଓଏଲେକଙ୍କ ମଧ୍ୟରେ ଚାଲିଥିବା ବିତର୍କକୁ ସେ ଭଲ ଭାବରେ ବୁଝିଥିଲେ। ନୂତନ ସମାଲୋଚନା ତଥା ପ୍ରାକ୍ଟିକାଲ୍ ବା ପ୍ରାୟୋଗିକ ସମାଲୋଚନା ଓ ତତ୍ତ୍ୱ ଅଧ୍ୟୟନ ବା ଥିଓରିର ସନ୍ଧିକ୍ଷଣର ସମାଲୋଚକ ଥିଲେ ଓଏଲେକ୍ । ଏହା ହିଁ ହେଉଛି ଓଡ଼ିଆ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଦେବେନ୍ଦ୍ର କୁମାର ଦାଶଙ୍କ ସ୍ଥିତି ।

ଅନେକ ବିରଳ ପୁସ୍ତକ ତାଙ୍କ ବ୍ୟକ୍ତିଗତ ପାଠାଗାରରେ ଉପଲବ୍ଧ । ମୋତେ ଏହାର କିଂଚିତ ବିନିଯୋଗ କରିବାର ସୁଯୋଗ ମିଳିଥିଲା। ଦେଖି ଆଶ୍ଚର୍ଯ୍ୟ ହେଲି ଯେ, ସାମ୍ପ୍ରତିକ ପାଶ୍ଚାତ୍ୟ ସାହିତ୍ୟ ଓ ସମାଲୋଚନାତତ୍ତ୍ୱ, ଯାହାକୁ ଆମେ ଥିଓରି ବୋଲି କହୁ ତା ଉପରେ ଅତି ନିକଟରେ ପ୍ରକାଶିତ ବହିମାନ ତାଙ୍କ କପ୍‌ବୋର୍ଡ଼ର ଥାକ ମଂଡ଼ନ କରିଥାଏ। ତାଙ୍କର ବ୍ୟକ୍ତିଗତ ପାଠାଗାର ଏକ ଗବେଷଣା କେନ୍ଦ୍ର କହିଲେ ଚଳେ। ଅତି ବିରଳ ପୁରୁଣା ବହି, ବିଶେଷତଃ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ଗ୍ରନ୍ଥମାନ ତାଙ୍କ ପାଠାଗାରରେ ହିଁ ମଳେ। ବହି ଉଧାର ଦେବାକୁ ସେ କୁଂଠିତ ହୁଅନ୍ତି ନାହିଁ, ଦେଇଥାନ୍ତି ଚିହ୍ନରା ଗ୍ରାହକ ଦେଖି। ମୁଁ ଉପକୃତ ହେଇଛି ତାଙ୍କର ଏ ଉଦାରତାପାଇଁ। ମୋର ସମସ୍ତ ପ୍ରଶ୍ନ, ମୋ ବିଷୟବସ୍ତୁର ସକଳ ଦିଗ ଉପରେ ତାଙ୍କ ସହ ମୋର ଆଲୋଚନା ହୁଏ ଓ  ନୂତନ ତଥ୍ୟ, ନୂତନ ଅନ୍ତର୍ଦୃଷ୍ଟିରେ ପୁଷ୍ଟ ହୋଇ ମୁଁ ଫେରେ।

ତାଙ୍କର କୌଣସି ଗବେଷଣାମୂଳକ ଡ଼ିଗ୍ରି, ପିଏଚ୍.ଡି. କି ଡ଼ି.ଲିଟ. ନାହିଁ। ସେଥିପାଇଁ କୌଣସି ଆଗ୍ରହ କି ପ୍ରଚେଷ୍ଟା ବି କରିନାହାନ୍ତି। ଏକ ମୁକ୍ତ ଚିନ୍ତନର ଗବେଷକ ସେ। ଶିକ୍ଷାୟତନର ମାନଦଂଡ଼ରେ ତାଙ୍କ ମେଧାକୁ ମପାଯାଇନପାରେ। ଏଫ୍.ଆର. ଲିଭିସଙ୍କର ବି କୌଣସି ପିଏଚ୍.ଡ଼ି., କି ଡି.ଲିଟ୍ ନଥିଲା। ସେ ପୁଣି ଥିଲେ ୟୁରୋପୀୟ ସାହିତ୍ୟ ସମାଲୋଚନାର ଉତ୍ତୁଙ୍ଗ ବ୍ୟକ୍ତିତ୍ୱ। ଆଜିକାଲି ପୁରସ୍କାର ସମ୍ମାନପାଇଁ ଯେପରି ଧରାଧରି, ଲବି, ତଂଟିକଟା ପ୍ରତିଯୋଗିତା ଚାଲିଛି ସେ ସେଥିରୁ ଥିଲେ ବହୁଦୂରରେ। ପୁରସ୍କାରପାଇଁ ପୁସ୍ତକ ଆହ୍ୱାନ ପ୍ରତି ସମ୍ପୂର୍ଣ୍ଣ ଭାବେ ଅନାଗ୍ରହୀ। ସେ ଜଣେ ନିଆରା ସାହିତ୍ୟ ସାଧକ-ସେବକ। ତାଙ୍କ ପରି ଜଣେ ବିରଳ ଧୀମାନ୍ ବ୍ୟକ୍ତିଙ୍କ ପ୍ରତି ଏହା ମୋର ଶ୍ରଦ୍ଧାଞ୍ଜଳି।

*ଭୁବନେଶ୍ୱର*



**Satya P Mohanty**

# Debendra Kumar Dash: A Scrupulous and Uncompromising Scholar

I woke up this morning to get the shocking news that the leading Odia literary scholar Debendra Kumar Dash has passed away suddenly. We had just spoken at length on the phone a week or so ago. I am not prepared to believe this.

Debendra babu was such a gentleman and such a scrupulous and uncompromising scholar. He edited, among many other texts, the new "granthabali" (collected works) of Fakir Mohan Senapati. It is hard for me to imagine doing any work on Fakir Mohan without being able to have long conversations with him.

Debendra babu's world was one where conversation, the give and-take of ideas, occupied a central place. He knew more about Odia and other Indian literary traditions than most people I work with, but for him the research he did, the scholarly work he oversaw or led, culminated in the oral culture of talking with friends and colleagues with similar interests and passions, learning about ideas, exploring the past and connecting it to our lives here and now. I have vivid memories of such conversations with him in Bhubaneswar, standing in some

street corner,  talking for hours, but also of similar discussions on the phone – New York to Bhubaneswar. As I came to realize over the years, his was a profoundly egalitarian and democratic sensibility, one at odds with the values of our neoliberal academy.

More than anything else he embodied a quality that I see in many of us Odias, scholars and writers alike — that of being uncompromising. It's a quality that links us to an earlier age. That quality, together with the almost child-like joy he expressed whenever he was talking about literature, history and culture, remain an example for so many of us who teach and do scholarly work.

Debendra babu and I had been talking about doing this book on Fakir Mohan together, with the BHU Professor Dipti Ranjan Pattanaik. I, like so many others, will miss him very deeply.

*Cornell University, America*

**Ishita Banerjee-Dube**

# A Dedicated Scholar of Rare Intellectual Curiosity

It is with great sadness and a profound sense of personal loss that I write these words in honour of our esteemed colleague, Dr. Debendra Kumar Dash—DebendraBabu— a dedicated scholar and a kind human being. Long before I met Dr. Dash in person in Bhubaneswar with the help of Dr. Nivedita Mohanty, I had read his essay in Eshana as a doctoral student conducting research on Mahima Dharma. By the time we met, I had read more of Dr. Dash's works and he had also read my book on Mahima Dharma. During our first meeting, I was struck by DebendraBabu's intellectual curiosity, his close and careful reading of academic writings and his real interest in sharing ideas and knowledge and in helping others. Since then, he became a close and selfless collaborator of my all my research projects, referring me to relevant works in Odia, answering queries, spending hours talking with me and enriching my understanding with his critical insights. He also took the trouble of mailing me photocopies of the material I couldn't go through while in Bhubaneswar. I still have two books he lent me from his own large collection that he told me he was in no hurry to get back. I will cherish them now as I will cherish the fact that I had the opportunity of getting to know Dr. Dash and of learning from him.

Rest in peace DebendraBabu, and continue to guide us with your example ofgraciousness and spirited dedication to intellectual pursuit.

*El Colegio de Mexico*

**Himanshu S Mohapatra**

# A Trooper for the Intellect: Tribute to Debendra K Dash

The untimely death of Debendra Kumar Dash on 25 August 2022 robbed Odisha of one her worthiest sons. The loss is not simply to be measured by the number of projects he left unfinished and the number of books he had still to write. The extent of the loss can be imagined by the void that has suddenly opened up in Odisha's intellectual life by the sudden disappearance of a living and walking encyclopedia of Odisha's literature, history and politics.

Yes, that was what Debendra Kumar Das really was, a towering figure and a walking encyclopedia. He served as the irrefutable source of information on every aspect of the literary history of Odisha, ranging from core questions of authorship, time and textuality to peripheral matters to do with the literary grapevine. He was, therefore, the most reliable fact checker ever.

I remember an incident from last year. A dispute arose—on Facebook—among us English academics over the authorship of the Odia rendering of the last lines of Robert Frost's poem "Stopping by the Woods on a Snowy Evening". Madhusudan Rao and Radhamohan Gadnayak were the possible names that came up. An appeal to Debendra Dash at this juncture yielded a least suspected name, Golak Bihari Dhal.

This effectively settled the dispute. To quote Prof. Bijay Kumar Danta's closing comment in the Facebook trail of discussion, "Debendra Dash has the final word."

If this was the extent of Debendra Dash's mastery over factoids, his command over his cherished subjects such as Fakir Mohan Senapati, Radhanath Ray and Gangdhar Meher can only be imagined. It was staggering, to say the least. I had living, breathing proof of that mastery and expertise when he recently collaborated with him on the writing of an introduction to Rebati: Speaking in Tongues (Dhauli Books, 2021), a book containing renderings of Fakir Mohan's iconic short story "Rebati" in thirty six languages, 24 Indian and 12 overseas.

My association with Debendra Dash was not limited to a single instance of an intensive month-long collaboration. It was spread over two decades during the leisurely course of which I saw the workings of a formidable intellect that constantly fretted against limits and hacked away at boundaries fencing off one discipline from another.

By profession Debendra Dash was an Odia academic. Yet he was the most intellectually-oriented among not only his peers in Odia department but also among academics in fields of English, history and philosophy. To the latter an intellectual orientation is said to come instinctively. If this is so, it is by virtue of the fact of their discoursing in English language which seemingly has a near monopoly on knowledge. In fact, it was Debendra Dash who helped to deconstruct for me the binary of Odia and English by showing how English's hospitality to knowledge was an illusion fostered by the said language's proximity to power. He didn't of course put it in the intellectually obscurantist way that I have put it. He put it in his characteristically simple, matter of fact and bantering way: 'Say something in Odia and it is devoid of value, but say the same thing in

English and suddenly it seems to resonate with meaning and value.'

Interestingly, his 'decolonial' perspective on English didn't entail for him a rejection of the intellectual products in that language. He embraced them. In fact, he was the most avid reader I knew of those texts. As a matter of fact, there is no English academic in Odisha I know who could survive a strictly intellectual comparison with Debendra Babu or would match him when it came to familiarity with the defining books of our time in the fields of literary and cultural studies, especially ones with a focus on India and Odisha.

Be it Derrida, Bakhtin or Judith Butler in the field of theory, be it Tapan Raychoudhury, Dipesh Chakravarty, Partha Chatterjee or Benedict Anderson in the field of historiography, be it Sheldon Pollock or Satya Mohanty in the field of comparative studies of Indian languages and literatures or be it Lawrence Venuti, Sherry Simon or Paul St-Pierre in the field of translation studies, he had read them all. Not only that; he also poached into more intimate territory of English academics, reading the most current book on Anglo-American literary criticism, thereby stealing their thunder. This was my plight when I went to Debendra Dash one day—this was in 2019—to inform him of a just published book entitled Literary Criticism: A Concise Political History (by Joseph North) only to be confronted with the actual book itself. He had already procured the same and read it. He was glad to lend it to me. He was the most generous sharer of books and ideas ever.

Debendra Dash taught all his life at non-Government colleges of Odisha. In Odisha's cultural climate this fact betokens marginality and lack of respect. He knew this, but was undeterred by it. He was educated. His formative educational years were spent at G.M. College (now G.M. University) and

Sambalpur University. His productive years were spent in Rourkela. Both facts represented a telling denial of the seductions of Bhubaneswar, the capital of power. He made sure that the reverberations of the ground-breaking work he did in his peripheral location were heard and felt at the centre.

It was towards the fag end of his career that he came to Bhubaneswar, but he continued to define himself through his cutting edge work and chose such allies (Sudarshan Acharya, Gaganendra Nath Das, Dasarathi Das, Pradipta Panda, Gouranga Dash, Dipti Ranjan Pattanaik) who were fired by the same passion for an alternative imagining of Odisha's society and literature and were similarly distanced from power. As Gouranga Dash put it revealingly, 'We are because Bhaina—his endearing term for Debendra Dash—is.' Debendra Dash took voluntary retirement from his job for the sake of the unhindered pursuit of his literary activism. By then he had consolidated his position not only as a scholar extraordinaire but also as a person to look up to for his courage in storming the Bastille of privilege and power in the sphere of the intellect.

For me Debendra Kumar Das will remain not just a perpetual wonder but a perennial inspiration for having defied what Raymond Williams has termed 'the known calculus of forces' (read Ravenshaw College, Utkal University, Cuttack/Bhubaneswar) in the way he came to be. The loss for Odisha letters at the death of such a person is incalculable.

My heart-felt salutations to him and my deepest condolences to his family!

*Bhubaneswar*

Kalidas Mishra

# A Brief Luminous Life: Remembering Debendra Kumar Dash

I got the sad and disturbing news when I was away at Ranchi for a Seminar. I could not meet him because of some personal constraints when he came to Sambalpur University as a chief speaker for the Gangadhar Jayanti Celebrations. The news gave me a jolt as I wanted to meet him in person in September. My association with him goes back to my student days at G. M. College, Sambalpur. He was doing his B.A (Odia Hons.), and was one year senior to me.

And now that he is gone, I have only to live with a whole host of fond memories. I experienced Debendra Bhai as a brilliant scholar, a modest and wholly unpretentious man, a warm-hearted human being always ready to help and I had relied on him for so long for instant information and critical insight. His passion and dedication to literary scholarship was exemplary. He was a philomath and a polymath, a unique blend of scholar, cultural historian, biographer, editor and social critic. And he wrote on a wide variety of subjects over his life--- ranging from Bhima Bhoi , Gangadhar Meher , Radhanath Ray, Madhusudan Das, Fakir Mohan Senapati, Umesh Chandra Sarkar and Gopabandhu Das and we now have the wonderful, diverse, profound, insightful body of work that he leaves behind. I , for

one, am grateful to have known him. I was even more grateful for getting to know his works that have so enriched my life. In fact I was looking forward to many such meetings. To be around him was energizing and I had had many such occasions when he would be discussing Odia literary texts with ease, but with critical rigour and insight. I believe that the world is a very livelier and enriching place for his having been here.

They say that Death is non-existent in a timeless, spaceless world. Perhaps Professor Debendra Kumar Dash is not dead. He inhabits now an order of life that is just a 'hyphen' away from our life; he has in fact crossed that bridge to reach a transcendent realm that is more eloquent than our life here on this planet. Live well, dear Debendra Bhai, and be at peace with your own serene self. And we shall carry on with our lives here in this earth planet with your fond memories to sustain and guide us through. Shantih.

*Sambalpur*

**Prasanna Kumar Dash**

# In Memory of Prof. Debendra Kumar Dash

Prof. Debendra Dash's sudden and untimely death was a great shock to me. I had spoken to him just four days before his death and he was complaining about minor problems in bowel movement. During the course of our conversation I wished him welbeing and also suggested him to compile his lectures which Prafulla would be glad to publish as a book. He was excited with this idea and promised to refresh his lectures. But that was not to be. Sudden death has brought an end to his ideas and promises. He was an independent thinker and never minded the consequences of his thinking. His analytical mind was not fettered by any fear of criticism or reaction. He was an encyclopaedia on Odia literature and was a store house of knowledge. He used to give a convincing solution with logic and past history to any query raised by me. He played  a vital role in the evolution of  the Pragati Pathagar and made it sustainable. Pragati is one of the landmark installations now in Rourkela.

Sri Dash had attended the book release function of 'Sahikua' written by my father, organised by Prafulla Pathagar and suggested that more such books should be tried to help in the codification of the social history of the area which is largley forgotten. His death is a great loss not only to me but also to our state and it is an irreparable loss for Odia literature.

*(Former Member, CBDT, India)*

সংকেত দাশ (মুনু)

# মো ননা: মো আদর্শ ও গুরু

মণিষ এক বহু প্রতিভাসম্পন্ন প্রাণী । এহি জীবন ও প্রতিভা, জণে মণিষ নিজর মাতাপিতাঙ্কঠারু পাইথাএ । তেণু প্রত্যেক মণিষর নিজ মাতাপিতাঙ্ক প্রতি অসীম স্নেহ রহিবা যথার্থ । যেতেবেলে মাতাপিতাঙ্ক বিয়োগ ঘটে । মণিষ ভাঙ্গিপডিবা স্বাভাবিক । শোক সাগররে জীবন বোইত বুডিযিবা স্বাভাবিক । কিন্তু দিংবগত আত্মার সন্তুষ্টি পাইঁ নিজ পরিবার ও নিজর দায়িত্ব পূরণ করিবাপাইঁ মণিষকু জীবন সংগ্রাম অব্যাহত রখিবাকু পডে । যাহাঠারু জীবন সংগ্রাম অব্যাহত রখিবা পাইঁ প্রেরণা পাএ, সে তার আদর্শ । যাহার মূল্যবোধর সংরক্ষণপাইঁ মণিষ জীবন সংগ্রাম অব্যাহত, রখে সে তা'র গুরু ।

মো ননা দেবেন্দ্র কুমার দাশ তাঙ্ক বয়স অনুযায়ী সুস্থ ও অতিশয় সক্রিয় থিলে । তেণু ২৫.৮.২০২২রে তাঙ্কর আকস্মিক মৃত্যু মোতে পূর্ণ্ণ রূপে দোহলাই দেলা । মুঁ কেবে দুঃস্বপ্নরে মধ্য ভাবি নথিলি, ননা এতে শীঘ্র চালিযিবে । তাঙ্কর শেষ মুহূর্ত্তরে তাঙ্কু ন দেখিপার অবসোস মোর জীবন সারা রহিব । যেতেবেলে ভাইনা ননাঙ্কর পার্থিব শরীরে মুখাগ্নি দেলা, সেতেবেল পর্য্যন্ত মোতে আভাস হেউথিলা কি, ননা পুণি উঠিবে । 'মুনু, গুড্ডু' কহিকি তাঙ্ক স্নেহভরা কণ্ঠরে ডাকিবে । সেহিদিন মোর স্মৃতিরু ও মোর জীবনরু লোপ পাইযিব ।

কিন্তু তাহা ঘটিবার ন থিলা । ননা উঠিলেনি । বরং তাঙ্ক পার্থিব শরীর পাউঁশ হোইগলা । মো জীবনরে এক শূন্যতা অনুভূত হেলা । ননাঙ্ক বহি, ননাঙ্ক ফটো, ননাঙ্ক লাপটপ-সবুকিছি দেখি মোতে কান্দ মাডিলা । এপটে এহি

ଅଘଟଣକୁ ବୋଉ ମଧ୍ୟ ସ୍ୱୀକାର କରିପାରୁ ନଥାଏ ଓ କାନ୍ଦି କାନ୍ଦି ତାର ଅବସ୍ଥା ଖରାପ ହୋଇଯାଉଥାଏ। ଏହି ସମୟରେ ମୁଁ ମନେପକାଇଲି କି, ଆଜିକି ୫୩ବର୍ଷ ପୂର୍ବେ ଜଣେ ଦରିଦ୍ର ଘରର ୧୫ବର୍ଷର ବାଳକ ଏହିପରି ରୂପେ ନିଜର ପିତାଙ୍କୁ ହରାଇ ନିଜକୁ ସର୍ବହରା ମନେ କରୁଥିବ । କିନ୍ତୁ ନିଜ କ୍ଷତି ସତ୍ତ୍ୱେ ସେ ଭାଙ୍ଗି ପଡି ନଥିଲା । ବରଂ ଅଦମ୍ୟ ଚେଷ୍ଟାଦ୍ୱାରା ନିଜକୁ ଏକ ବିଦ୍ୱାନ, ସଚ୍ଚୋଟ ଓ ସ୍ନେହୀ ମଣିଷ ଭାବେ ଉପସ୍ଥାପନ କରିପାରିଥିଲା । ଜଣେ ସଫଳ ପିତା ଓ ସଫଳ ମଣିଷ ହେବାର ସୌଭାଗ୍ୟ ଅର୍ଜନ କରିଥିଲା । ନିଜ ବୃତ୍ତି ଓ ପ୍ରବୃତ୍ତି- ଉଭୟରେ ସଫଳତା ଅର୍ଜନ କରିଥିଲା । ସେହି ବାଳକ ମୋ ନନା ଥିଲେ । ସେ ମୋର ଆଦର୍ଶ । ତାଙ୍କ ପରି ଭଲ ମଣିଷ, ଉଦାରବାଦୀ, ଦାୟିତ୍ୱବାନ ପିତା ହେବା ଓ ଜିଜ୍ଞାସୁ ହେବା ମୋର ଲକ୍ଷ୍ୟ । ମୋର ମୂଲ୍ୟବୋଧ ମୋ ନନାଙ୍କଠାରୁ ପାଇଛି । ତାଙ୍କ ମୂଲ୍ୟବୋଧର ଚାରୋଟି ମୁଖ୍ୟ ଅଙ୍ଗ । ସେଗୁଡିକ : ୧- ପ୍ରଶ୍ନ କରିବ, ଜିଜ୍ଞାସୁ ହେବ ଓ ନିଜର ପ୍ରଶ୍ନର ଉତ୍ତର ପାଇବାପାଇଁ ପୂର୍ଣ୍ଣ ଅନୁସନ୍ଧାନ କରିବ, ୨- ଭଲ ମଣିଷ ହେବ, କୌଣସି ପ୍ରଲୋଭନ କିମ୍ବା ଚାପ ଯୋଗୁଁ ନିଜର ମୂଲ୍ୟବୋଧ ସହ ସାଲିସ କରିବ ନାହିଁ , ୩- ଯାହା ତୁମର କର୍ତ୍ତବ୍ୟ ତାହା ପୂର୍ଣ୍ଣ ନିଷ୍ଠାରେ କରିବ । କର୍ତ୍ତବ୍ୟ ଭଲ ହେଉ କିମ୍ବା ମନ୍ଦ, ସବୁବେଳେ ସୁଚାରୁ ରୂପେ କରିବ, ୪- ପରିବାର ପ୍ରତି ଦାୟିତ୍ୱ ଠିକ ଭାବରେ ସମ୍ପାଦନ କରିବ ।

ମୋ ନନା ଆଉ ନାହାନ୍ତି, କିନ୍ତୁ ତାଙ୍କର ମୂଲ୍ୟବୋଧ ମୋ ସାଙ୍ଗରେ ଅଛି । ମୁଁ ସେହି ମୂଲ୍ୟବୋଧ ଅନୁଯାୟୀ ମୋର ଜୀବନକୁ ବଞ୍ଚିପାରିବି ଓ ନିଜକୁ ତାଙ୍କର ଯୋଗ୍ୟ ପୁତ୍ର ଭାବେ ପ୍ରମାଣିତ କରିପାରିବି । ଏତିକି ମୋର କାମନା ।

*(ଦେବେନ୍ଦ୍ର କୁମାର ଦାଶଙ୍କ ସାନପୁଅ)*

## ସୌମ୍ୟରଂଜନ ପଟ୍ଟନାୟକ

# ଦେବେନ୍ଦ୍ରବାବୁଙ୍କ ସ୍ମୃତିରେ

ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶଙ୍କ ଅକାଳ ବିୟୋଗକୁ ମୁଁ ସହଜରେ ଗ୍ରହଣ କରିପାରୁନାହିଁ। ଗତ ମାସରେ ଗୋଟିଏ କାର୍ଯ୍ୟକ୍ରମରେ ତାଙ୍କ ସହିତ ଦେଖା ହୋଇଥିଲା। ଆମେ ଉଭୟେ ମଞ୍ଚାସୀନ ଅତିଥି ହୋଇ ଭାଗ ନେଇଥିଲୁ। ସେତେବେଳେ ତାଙ୍କୁ ଦେଖି ମୁଁ ଆଦୌ ଆଶଙ୍କା କରୁନଥିଲି ଯେ ଅଳ୍ପ କେତେଦିନ ଭିତରେ ସେ ଆମଠାରୁ ବିଦାୟ ନେଇଯିବେ।

ଦେବେନ୍ଦ୍ରବାବୁଙ୍କୁ ମୁଁ ବହୁଦିନରୁ ଜାଣେ। ରାଉରକେଲା ସହିତ ଘନିଷ୍ଠ ଭାବେ ସଂପୃକ୍ତ ଥିବା ଦୃଷ୍ଟିରୁ ଏବଂ ସେ ରାଉରକେଲାରେ ବହୁବର୍ଷ ଧରି ଅଧ୍ୟାପନା ଓ ସାହିତ୍ୟ-ସଂସ୍କୃତି ଅନୁଷ୍ଠାନ ସହିତ ଜଡ଼ିତ ଥିବା କାରଣରୁ, ଏହା ଏକ ସ୍ୱାଭାବିକ ପ୍ରକ୍ରିୟା ଥିଲା। ତେବେ 'ସମ୍ବାଦ' ଓ 'ଆମ ଓଡ଼ିଶା' ତରଫରୁ 'ସାହିତ୍ୟକୋଷ' ପ୍ରକାଶନର ଯୋଜନା ହେବା ଫଳରେ ଆମର ସଂପର୍କ ଅଧିକ ଘନିଷ୍ଠ ହେଲା ଏବଂ ତାଙ୍କୁ ଅଧିକ ନିକଟରୁ ଜାଣିବାର ଅବକାଶ ମିଳିଲା।

ଦେବେନ୍ଦ୍ରବାବୁ ଆମ ଓଡ଼ିଆ ସାହିତ୍ୟର କେବଳ ଜଣେ ସଫଳ ଅଧ୍ୟାପକ ନଥିଲେ, ଗବେଷଣା କ୍ଷେତ୍ରରେ ତାଙ୍କର ଅବଦାନ ଅତୁଳନୀୟ ଥିଲା। ସାହିତ୍ୟ ଅନୁଷ୍ଠାନ ଗଢ଼ିବା ସହିତ ଓଡ଼ିଆ ଭାଷାସାହିତ୍ୟର ପ୍ରସାର ଓ ସୁରକ୍ଷା ପାଇଁ ସେ ଅହରହ ଚିନ୍ତା କରୁଥିଲେ। ଯେଉଁ ବିଷୟଗୁଡ଼ିକ ସଂପର୍କରେ ଅନ୍ୟ କେହି ଗବେଷଣା କରିବାପାଇଁ ପ୍ରସ୍ତୁତ ନଥିଲେ, ସେ ସେହି ବିଷୟଗୁଡ଼ିକୁ ତାଙ୍କର ଗବେଷଣାପାଇଁ ଆପଣେଇ ନେଉଥିଲେ।

'ସାହିତ୍ୟକୋଷ' ପ୍ରସ୍ତୁତି ସମୟରେ ବରିଷ୍ଠ ଅଧ୍ୟାପକଙ୍କର ଶାରୀରିକ ଅସୁସ୍ଥତା ଯୋଗୁଁ ଯେତେବେଳେ ପ୍ରକାଶନ ବିଳମ୍ବ ହେଲା, ଏବଂ ଆମେ ଅତ୍ୟନ୍ତ ଚିନ୍ତିତ ହୋଇ ପଡ଼ିଥିଲୁ, ସେତେବେଳେ ଦେବେନ୍ଦ୍ରବାବୁ ଆମକୁ ନିଃସଙ୍କୋଚରେ ସହଯୋଗ କରିବାକୁ

ଆଗେଇ ଆସିଥିଲେ। ତାଙ୍କ ସାହାଯ୍ୟ ଓ ସହଯୋଗ ଆଦୌ ଭୁଲି ହେବନାହିଁ। ତାଙ୍କର ସହଯୋଗ ନ ମିଳିଥିଲେ 'ସାହିତ୍ୟକୋଷ'ର ପ୍ରକାଶନ ଆହୁରି ବିଳମ୍ବିତ ହୋଇଥାନ୍ତା।

ଦେବେନ୍ଦ୍ରବାବୁଙ୍କର ଗୋଟିଏ ଗୁଣ ମୋତେ ଗଭୀରଭାବେ ପ୍ରଭାବିତ କରିଥିଲା। ଆଜିକାଲି କିଛି ନ କରି ଶ୍ରେୟ ନେବାପାଇଁ ଅନେକେ ଚେଷ୍ଟିତ ଥିବାବେଳେ ସେ ଏହାର ବ୍ୟତିକ୍ରମ ଥିଲେ। 'ସାହିତ୍ୟକୋଷ'ର ପ୍ରକାଶନ ଏବଂ 'ସମ୍ବାଦ-ଆମ ଓଡ଼ିଶା'ର ବିଭିନ୍ନ କାର୍ଯ୍ୟକ୍ରମରେ ସଂପୃକ୍ତ ଥାଇ ମଧ୍ୟ, ସେ ଶ୍ରେୟ ନେବାପାଇଁ କେବେ ଆଗ୍ରହୀ ହୋଇନାହାନ୍ତି; ବରଂ ଅନ୍ୟକୁ ଶ୍ରେୟ ଦେବାରେ କେବେ କାର୍ପଣ୍ୟ ପ୍ରକାଶ କରିନାହାନ୍ତି।

ଓଡ଼ିଆ ଅଧ୍ୟାପକମାନଙ୍କୁ ଯେଉଁମାନେ ନାକ ଟେକି ଦେଖନ୍ତି, ସେମାନେ ଅନ୍ତତଃପକ୍ଷେ ଦେବେନ୍ଦ୍ରବାବୁଙ୍କ ସଂସ୍ପର୍ଶରେ ଆସିବା ନିହାତି ଆବଶ୍ୟକ ଥିଲା। ଈଶ୍ୱର ତାଙ୍କ ପରିବାରକୁ ଏହି ବିୟୋଗ ଦୁଃଖକୁ ସାମ୍ନା କରିବାକୁ ଆଶୀର୍ବାଦ ଓ ସାହସ ଦିଅନ୍ତୁ।

ଦେବେନ୍ଦ୍ରବାବୁଙ୍କ ବିୟୋଗରେ ଓଡ଼ିଆ ସାହିତ୍ୟର ଅପୂରଣୀୟ କ୍ଷତି ଘଟିଲା ବୋଲି ମୁଁ କହିବାକୁ ଚାହେଁନାହିଁ। ବରଂ ଅନ୍ୟ ସାହିତ୍ୟିକ ବନ୍ଧୁମାନେ ଯେତେଶୀଘ୍ର ସମ୍ଭବ ସେହି କ୍ଷତିକୁ ଭରଣା କରିପାରିବେ ବୋଲି ସଂକଳ୍ପ ନିଅନ୍ତୁ। ଏହାହିଁ ହେବ ତାଙ୍କ ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି।

*ସଂପାଦକ, 'ସମ୍ବାଦ' ଓ ଅଧ୍ୟକ୍ଷ, 'ଆମ ଓଡ଼ିଶା'*

ନିତ୍ୟାନନ୍ଦ ସାହୁ

# ମୋ ଛାତ୍ର ଦେବେନ୍ଦ୍ର

ଉପଲକ୍ଷ୍ୟ ମନେ ନାହିଁ। ପ୍ରଥମ ବର୍ଷର ଛାତ୍ର ଦେବେନ୍ଦ୍ରଙ୍କର ଗୋଟିଏ ପ୍ରବନ୍ଧକୁ ଓଡ଼ିଆ ବିଭାଗର ମୁଖ୍ୟ ସ୍ୱର୍ଗତ ବାଇଧର ମହାନନ୍ଦିଆ ମହୋଦୟ ପ୍ରତ୍ୟାଖ୍ୟାନ କରିଦେଲେ। କାରଣ ସ୍ୱରୂପ ମୋତେ କହିଲେ, "ଏ ଲେଖା ଏ ପିଲାର ନୁହେଁ।" କାରଣ ସ୍ୱରୂପ ମୋତେ କହିଲେ, "ଏ ଲେଖା ଏ ପିଲାର ନୁହେଁ। କେଉଁଠୁ ଉତାରି ଆଣିଛି।" ମୁଁ ପ୍ରତ୍ୟୁତ୍ତରରେ କହିଥିଲି, "ସାର୍, ଆପଣ ଏ ପିଲାକୁ ଜାଣିନାହାନ୍ତି। ବ୍ୟକ୍ତିଗତ ଭାବେ ମୁଁ ତାକୁ ଜାଣେ। ଏଇ ବୟସରେ ସେ ଯେତିକି ବହି ପଢ଼ିଛି, ଆପଣଙ୍କ ଅଧ୍ୟାପକମାନେ ସେତିକି ପଢ଼ିନାହାନ୍ତି। ଏ ଲେଖା ସେ ପିଲାର ନିଜସ୍ୱ।"

ଦେବେନ୍ଦ୍ର ସେଇ ଅଭ୍ୟାସଟି ଏ ପର୍ଯ୍ୟନ୍ତ ଅବ୍ୟାହତ ରଖିଥିଲେ। ସେ ବହୁପାଠୀ। ପ୍ରଚୁର ନୋଟ୍ କରନ୍ତି, ମନେ ରଖନ୍ତି ଓ ନିଜସ୍ୱ ରୀତିରେ ସେଗୁଡ଼ିକର ବ୍ୟାଖ୍ୟା କରନ୍ତି। ତାଙ୍କର ସମାଲୋଚନା ଓ ସଂପାଦନାରେ ଆମେ ସେଇ ପାଣ୍ଡିତ୍ୟ ଓ ନିଜସ୍ୱ ରୀତିର ପରିଚୟ ଅବଶ୍ୟ ପାଇବା। ଓଡ଼ିଆ ଭାଷା ଓ ସାହିତ୍ୟ କ୍ଷେତ୍ରରେ ସେ ଥିଲେ ଏକ ଉଜ୍ଜ୍ୱଳ ଓ ଚଳମାନ ପ୍ରତିଭା। ସୁସ୍ୱାଦୁ ଫଳନ୍ତି ଗଛଟିଏ। ଅନ୍ୟ ପକ୍ଷରେ ସେ ଥିଲେ ସ୍ୱାଭିମାନୀ ଓ ସ୍ୱାଧୀନଚେତା। ରାଉରକେଲାରେ ତାଙ୍କର ସାଂଗଠନିକ ଦକ୍ଷତାରେ ମଧ୍ୟ ପରିଚୟ ମିଳିଥାଏ। ପ୍ରଗତି ଉତ୍କଳ ପାଠାଗାରର ସାଂପ୍ରତିକ ସ୍ଥିତି ଓ ପ୍ରତିଷ୍ଠାପାଇଁ ତାଙ୍କର ଅବଦାନ ଅତୁଳନୀୟ ଓ ଅବିସ୍ମରୀୟ। ଏତେ ଚଞ୍ଚଳ ଈଶ୍ୱର ତାଙ୍କୁ ନେଇଯିବା ଫଳରେ ବିରାଟ ଶୂନ୍ୟସ୍ଥାନ ସୃଷ୍ଟିହେଲା। ଓଡ଼ିଆ ସମାଲୋଚନା ସାହିତ୍ୟପାଇଁ ତାହା ଅପୂରଣୀୟ ହୋଇରହିବ। ସେ ଆତ୍ମାର ସଦ୍‌ଗତି ହେଉ, ଈଶ୍ୱରଙ୍କ ନିକଟରେ ଏତିକି ପ୍ରାର୍ଥନା।

*ଭୁବନେଶ୍ୱର*

ଦାଶରଥି ଦାସ

# ବନ୍ଧୁ ଦେବେନ୍ଦ୍ରନାଥଙ୍କ ତିରୋଭାବ: ଶୋକ ଓ ଶୂନ୍ୟତା

ଦେବେନ୍ଦ୍ରକୁମାର ଦାଶଙ୍କୁ ପ୍ରିୟତମ ବନ୍ଧୁ ଭାବରେ ପାଇବା ଥିଲା ଲେଖକର ଦୀର୍ଘ ଜୀବନର ଅନ୍ୟତମ ବିଶେଷ ମୂଲ୍ୟବାନ ପ୍ରାପ୍ତି; ସେଇଥିପାଇଁ ହରାଇବାର ଆକସ୍ମିକତା ହୋଇଛି ଘୋର ନିଶ୍ଛିଦ୍ର ଶୂନ୍ୟତା। ବନ୍ଧୁତ୍ୱ ଆରମ୍ଭ ହୋଇଥିଲା ଦିନେ ପ୍ରାୟ ୪୦ ବର୍ଷ ତଳେ ଗ୍ରାମସି ଓ ତାଙ୍କ ହେଜିମନିତତ୍ତ୍ୱରୁ; ଏଇ ପାଞ୍ଚଦିନ ତଳେ ଶେଷ ହେଲା ସମ୍ପାଦିତ 'ଫକୀରମୋହନଙ୍କ ଶ୍ରେଷ୍ଠଗଳ୍ପ' ସଂକଳନ ପ୍ରକାଶନରେ। ସଦ୍ୟ ପ୍ରକାଶିତ ବହିଟି ପ୍ରାପ୍ତିର ଆନନ୍ଦ ଉଲ୍ଲାସ ମୋତେ ଜଣାଇଥିଲେ ଫୋନ୍‌ରେ ସେ। ଦୁହିଁଙ୍କର ସେଦିନ ସମଦଶା ଉପସ୍ଥିତ ଥିଲା ଅବଶ୍ୟ। ଅସୁସ୍ଥତା ଓ ପେଟପୀଡ଼ା। ଅବଶ୍ୟ କଣ୍ଠସ୍ୱର ଓ କହିବାର ଭଙ୍ଗୀ ଥିଲା ସୁସ୍ଥ ଓ ବ୍ୟବସ୍ଥିତ, ଚାଲିଯିବାର କୌଣସି ପ୍ରକାର ଦୁର୍ବଳତା ନଥିଲା ସେଥିରେ। ଅଥଚ ସେ ଦୁଇଦିନ ପରେ ତିରୋହିତ ହୋଇଗଲେ। ସେ ଲେଖକକର ଛାତ୍ର ନ ଥିଲେ, ଯଦିଓ ଛାତ୍ରଠୁଁ ବଳି ଅଧିକ ଶ୍ରଦ୍ଧା, ସମ୍ମାନ ଓ ଭକ୍ତି ଜଣାଉଥିଲେ ଆମରଣ। ଏଣେ ସେ ମୋର ଗୁରୁ ନ ଥିଲେ, ଅଥଚ ପଢ଼ାଉଥିଲେ ଦୀର୍ଘକାଳ ଊନବିଂଶ ଶତାବ୍ଦୀର ଓଡ଼ିଆ ସାହିତ୍ୟ, ଦେଶବିଦେଶର ନୂଆ ସମାଜ ବିଜ୍ଞାନ, ପୋଷ୍ଟ କଲୋନିଆଲିଜିମ୍, ନିଓହିଷ୍ଟୋରିସଜିମ୍‌ଠାରୁ ଆରମ୍ଭ କରି ରଣଜିତ ଗୁହଙ୍କ ନିମ୍ନବର୍ଗର ଇତିହାସ ପର୍ଯ୍ୟନ୍ତ। ବେଳେବେଳେ ସିଧା ବହି ଧରାଇ ଦିଅନ୍ତି, ପଢ଼ନ୍ତୁ। ତାଙ୍କ ସହିତ ଏକତ୍ର କାମ କରିବାକୁ ପଡ଼ିଥିଲା ଦିନେ "ଆମ ଓଡ଼ିଶା" ଆନୁକୂଲ୍ୟରେ ପ୍ରକାଶିତ 'ସାହିତ୍ୟକୋଷ' ପ୍ରସ୍ତୁତି ଉପଲକ୍ଷ୍ୟେ; ସଦ୍ଭାବ ଘନିଷ୍ଠତର ହୋଇଥିଲା ସେଇ କେତେବର୍ଷ। ଏକଦା ଏ କ୍ଷେତ୍ରରେ ତାଙ୍କର ଆଗ୍ରହ, ଉତ୍ସାହ ଓ ଉଦ୍ୟମ ଥିଲା ସବୁଠାରୁ ବେଶି, ତେବେ ଶେଷ ପର୍ଯ୍ୟନ୍ତ କାହିଁକି ନିରୁତ୍ସାହିତ ହୋଇପଡ଼ିଲେ। 'ସମ୍ବାଦ ସାହିତ୍ୟ

କୋଷ’ ପ୍ରକାଶିତ। ସୁଦର୍ଶନ ଆଚାର୍ଯ୍ୟଙ୍କ ଅନଳସ ଅକ୍ଲାନ୍ତ ସହଯୋଗ ଓ ଗୌରାଙ୍ଗଚରଣ ଦାସଙ୍କ ତନ୍ନିଷ୍ଠ ଶ୍ରମ, ସମୟ ଓ ଅଭିନିବେଶ ବଳରେ ଉଜ୍ଜ୍ୱଳ ସାହିତ୍ୟ କୋଷଟି ଏବେ ଏକ ସାରସ୍ୱତ କୀର୍ତ୍ତିର ମର୍ଯ୍ୟାଦା ପାଇଛି। ଛତ୍ରେ ଛତ୍ରେ କିନ୍ତୁ ଅଛି ଦେବେନ୍ଦ୍ରବାବୁଙ୍କ ଆନ୍ତରିକ ସ୍ପର୍ଶର ଉଷ୍ମତା। ବହୁ ବହି ଯୋଗାଇଛନ୍ତି ସେ, ଉପାଦାନ, ଉପକରଣ ସଂଗ୍ରହ କରିଛନ୍ତି ଦୀର୍ଘକାଳ ଆମ ପାଇଁ। ଭଲ ବହି କିଣିବା ପ୍ରଶ୍ନ ଉଠିଲେ ଦେବେନ୍ଦ୍ରଙ୍କ ନାମଟି ପ୍ରଥମେ ମନକୁ ଆସେ। ଲେଖକର ବହୁ ବନ୍ଧୁ ବହି କିଣନ୍ତି– ସବୁଠାରୁ ବେଶି କିଣନ୍ତି ଓ ବେଶି ପଢ଼ନ୍ତି ବୋଧହୁଏ ଏହି ଅଧ୍ୟାପକ– କେତେ ବିଭାଗର କେତେ ଭାଷାର କେତେ ବହି ସେ କିଣନ୍ତି ତାହାର ହିସାବ ଅବଶ୍ୟ ପାଖରେ ନାହିଁ, ତେବେ ଏତିକି କହି ହେବ ଯେ, ବିଶେଷତଃ ଇଂରାଜୀ ଭାଷାରେ ଲିଖିତ ସାହିତ୍ୟତତ୍ତ୍ୱ, ସାହିତ୍ୟ ଇତିହାସ, ସମାଲୋଚନା ସାହିତ୍ୟର ଇତିହାସ, ନନ୍ଦନତତ୍ତ୍ୱ, ନୂଆ ସାମାଜିକ ସାଂସ୍କୃତିକ ବିଚାର ବିମର୍ଶନର ପୁସ୍ତକ, ଇତିହାସ ସଂକ୍ରାନ୍ତ ଦୁର୍ମୂଲ୍ୟ ଦୁଷ୍ପ୍ରାପ୍ୟ ନୂଆ ଗ୍ରନ୍ଥରାଶିରେ ତାଙ୍କ ଫ୍ଲାଟ୍ ପରିପୂର୍ଣ୍ଣ। ଖୋଜିଲେ ଆରିଷ୍ଟଟଲ୍‌ଙ୍କଠାରୁ ବାକ୍‌ଟିନ୍‌ଙ୍କ ପର୍ଯ୍ୟନ୍ତ, ମାର୍କସଙ୍କଠାରୁ ଆରମ୍ଭ କରି ଲାକାଁଙ୍କ ପର୍ଯ୍ୟନ୍ତ, ଫୁକୋଙ୍କଠାରୁ ଆରମ୍ଭ କରି ଜେନେଟିକ ଡେରାଡ଼ ପର୍ଯ୍ୟନ୍ତ– ସମସ୍ତଙ୍କ ବହି ତାଙ୍କ ଘରେ ମିଳିଯିବ। ସଦ୍ୟ ପ୍ରକାଶିତ ସମ୍ଭ୍ରାନ୍ତ ଗେଟ ଅପ୍‌ର ବିରାଟ ବିରାଟ ନୂଆବହି ତାଙ୍କ ଦୁଇଟି ଫ୍ଲାଟ୍‌କୁ ଏମିତି ଆଲୋକ ଉଜ୍ଜ୍ୱଳ କରି ରଖିଥାନ୍ତି ଯେ, ଦେଖିଲେ ଛାଡ଼ି ଆସିବାକୁ ଇଚ୍ଛା ହେବ ନାହିଁ। ଲେଖକର ଗାଁ ପାଖର ଜଣେ ବିଶ୍ୱବିଖ୍ୟାତ ଦାର୍ଶନିକ ଅଛନ୍ତି J.N. Mohanty। ତାଙ୍କ ବହି ବି ମିଳିଗଲା ତାଙ୍କ ଘରେ। ଏବେ ବି ତାଙ୍କ The self and its other ବହିଟି ଲେଖକ ପାଖରେ ଅଛି। ଅଦ୍ଭୁତ କଥା ଯେ, ସେ ଅକୃପଣ ଭାବରେ ଲକ୍ଷଲକ୍ଷ ଟଙ୍କା ଦେଇ ବହି କିଣନ୍ତି, କିନ୍ତୁ ପଢ଼ିବାକୁ ମାଗିଲେ କାହାକୁ ମନା କରନ୍ତି ନାହିଁ, ବରଂ ଘଣ୍ଟା ଘଣ୍ଟା ଧରି ଖୋଜି ବହି ବାହାର କରି ମାଗିଲାଙ୍କୁ ଦିଅନ୍ତି। ପଢ଼ିବା ଓ ପଢ଼େଇବା ଯେମିତି ଥିଲା ତାଙ୍କର ସତ୍ ଆଦତ୍। ଯେତେ ଓଡ଼ିଆ ଅଧ୍ୟାପକ ଅଛନ୍ତି, ସେହି ସମସ୍ତଙ୍କଠାରୁ ବେଶି ଇଂରାଜୀ ବହି ପଢ଼ିଛନ୍ତି ଏହି ଦେବେନ୍ଦ୍ର କୁମାର ଦାଶ। ଲେଖକ ବହି ପାଇଁ ତାଙ୍କ ପାଖରେ ଆଜୀବନ ଋଣୀ। ସେଇ ଯେ ଚାଳିଶ ବର୍ଷ ତଳେ ଗ୍ରାମ୍ସିଙ୍କ Selection from Prison Note books ଡାକରେ ପଠାଇଥିଲେ; ସେଦିନଠାରୁ ଆଜିପର୍ଯ୍ୟନ୍ତ ଏହି ଲେଖକର ଲେଖା ପାଇଁ ଯେତେ ଯାହା ଉପାଦାନ ଉପକରଣ ତାଙ୍କ ପାଖରେ ଥାଏ ତାହା କୌଣସି ପ୍ରକାରେ ପାଖରେ ପହଞ୍ଚାଇ ଦିଅନ୍ତି। କଠିନ ଶ୍ରମସାଧ୍ୟ ହାତଲେଖା ନୋଟ୍ (Note) ଠାରୁ ଆରମ୍ଭ କରି Xerox copy ପର୍ଯ୍ୟନ୍ତ, ନୂଆ ବହିଠାରୁ ଦୁଷ୍ପ୍ରାପ୍ୟ ଗ୍ରନ୍ଥ ପର୍ଯ୍ୟନ୍ତ ସେ ଯୋଗାଇଥାନ୍ତି ଅବିଳମ୍ୱେ। ଆଶ୍ଚର୍ଯ୍ୟ ହୁଏ, ବିଷୟ ନିର୍ବାଚନ କରି ପ୍ରବନ୍ଧ ପ୍ରସ୍ତୁତ କରୁଛି ଲେଖକ, ଅଥଚ ଉପାଦାନ ଉପକରଣ ସବୁ ଗଚ୍ଛିତ ଅଛି ଦେବେନ୍ଦ୍ରବାବୁଙ୍କ ପାଖରେ। ବଙ୍ଗଳା ସାହିତ୍ୟରେ

ମଧ୍ୟ ତାଙ୍କର ଗଭୀର ପ୍ରବେଶ ଥିଲା, ସେ କେବଳ ଲେଖକଙ୍କୁ ନଗେନ୍ଦ୍ରବାଳାଙ୍କ ସମ୍ବାଦ ଜଣାଇ ନ ଥିଲେ, ସବୁ ଦିଗ୍‌ଗଜ ସମାଲୋଚକମାନଙ୍କ ସହିତ ପରିଚିତ କରାଇ ଦେଇଥିଲେ ମଧ୍ୟ । ଗ୍ରନ୍ଥସମ୍ପାଦନାଠାରୁ ଆରମ୍ଭ କରି ମୌଳିକ ପ୍ରବନ୍ଧ ଲେଖିବା ପର୍ଯ୍ୟନ୍ତ ଅନେକତ୍ର ଥିଲେ ସେ ଲେଖକର ଦିଗ୍‌ଦର୍ଶକ ଓ ପୃଷ୍ଠପୋଷକ । ସେ ଆଜି ନାହାନ୍ତି । ଲେଖକର ଲେଖାଲେଖି ସମାପ୍ତ ହେଲା ବୋଧହୁଏ । ଏଣିକି କେବଳ ଶୋକ ଓ ଶୂନ୍ୟତା; ସାନ୍ତ୍ୱନାହୀନ ଶୋକ ଓ ଅନପନେୟ ଶୂନ୍ୟତା ।

ଓଡ଼ିଶା ଦେବେନ୍ଦ୍ର ଦାଶଙ୍କୁ ଉପଯୁକ୍ତ ଶ୍ରଦ୍ଧା ଓ ସମ୍ମାନ ଦେଇପାରି ନାହିଁ । ମୋତିମୂଲ୍ୟ କାହୁଁ ଜାଣିବ ଶବର ? ଓଡ଼ିଶାରେ ଗୁଣୀ ଭର୍ତ୍ତି, କିନ୍ତୁ ଗୁଣଗ୍ରାହୀ ପ୍ରବିରଳ । ଅଧିକନ୍ତୁ ଓଡ଼ିଶାରେ ଭୁଲ ବୁଝାମଣା ବେଶି । ଆମ ମାନଦଣ୍ଡ ଠିକ୍ ନୁହେଁ । ଶିକ୍ଷା, ଅଧ୍ୟାପନା ଓ ସାହିତ୍ୟବୋଧର ଯେଉଁସବୁ ମାନଦଣ୍ଡ ଆମେ ବ୍ୟବହାର କରୁ ସେଥିରେ ଭଦ୍ରଲୋକଟି ଉତ୍ତୀର୍ଣ୍ଣ ହୋଇପାରିଲେ ନାହିଁ । ଶିକ୍ଷାର ମାନଦଣ୍ଡ ଡିଗ୍ରୀଲାଭ, ପିଏଚ୍.ଡି. ଓ ଡି.ଲିଟ୍ । ଅଧ୍ୟାପନାର ମାନଦଣ୍ଡ ବିଶ୍ୱବିଦ୍ୟାଳୟରେ ପ୍ରଫେସର ପଦ ମଣ୍ଡନ; ଆଉ ସାହିତ୍ୟର ମାନଦଣ୍ଡ ପ୍ରଚୁର ଅର୍ଥମୂଲ୍ୟଯୁକ୍ତ ପୁରସ୍କାରପ୍ରାପ୍ତି । ଦେବେନ୍ଦ୍ରନାଥଙ୍କ ପାଇଁ ଶିକ୍ଷାଲାଭ ମାନେ ବିଦ୍ୟାଲାଭ, ଅଧ୍ୟାପନା ମାନେ ଶିକ୍ଷାଦାନ । ଦେବେନ୍ଦ୍ରବାବୁ ପଢ଼ାନ୍ତି ଭଲ । ଆଉ ସାହିତ୍ୟ ମାନେ ଆତ୍ମାର ଆନନ୍ଦ । ସେ ଚାହିଁଥିଲେ ସରକାରୀ କଲେଜ୍‌ରେ କି ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ହୋଇପାରିଥାନ୍ତେ । ସେ ରହିଗଲେ କୌଣସି କାରଣରୁ ଇସ୍ପାତ କଲେଜରେ । ରାଉରକେଲାରେ । ହୁଏତ ନିଯୁକ୍ତିଦାତା ପ୍ରଫେସରମାନଙ୍କ ଆନୁକୂଲ୍ୟ ପାଇଲେ ନାହିଁ, କିମ୍ବା ଯେତିକି ସେବା ଓ ଆନୁଗତ୍ୟ ଯୋଗାଇବା କଥା ତାହା ଯୋଗାଇ ପାରିଲେ ନାହିଁ । ତେବେ ଅଧ୍ୟାପକ ଭାବରେ ତାଙ୍କ ଯୋଗ୍ୟତା ଓ ଦକ୍ଷତା ଦିଗ୍‌ବିଦିଗରେ ଖ୍ୟାତ ଥିଲା । ସେ ସିନା Ph.D. କି D.Litt. ଡିଗ୍ରୀ ହାସଲ କରି ପାରିନାହାନ୍ତି, ଅନେକ ପ୍ରଫେସରଙ୍କୁ କିନ୍ତୁ ଏସବୁ ଡିଗ୍ରୀଲାଭ କ୍ଷେତ୍ରରେ ଦିଗ୍‌ଦର୍ଶନ ଦେଇଛନ୍ତି । ଅଧ୍ୟୟନ, ଗ୍ରନ୍ଥସମ୍ପାଦନା, ଗବେଷଣା ଓ ପ୍ରବନ୍ଧ ରଚନାରେ ସେ ନିତ୍ୟ ବ୍ୟାପୃତ ଥିଲେ । ଦିନ ଥିଲା ଓଡ଼ିଶା ବାହାରର ଗବେଷକ ଓ ପଣ୍ଡିତବର୍ଗ ଓଡ଼ିଶାର ସାହିତ୍ୟ, ସଂସ୍କୃତି ଓ ଧର୍ମଦର୍ଶନ ସମ୍ବନ୍ଧରେ ଜାଣିବାକୁ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମୂଲ୍ୟବାନ ସାହାଯ୍ୟ ସହଯୋଗ ଲୋଡୁଥିଲେ । ଆମ ସମୟରେ ଦେଶବିଦେଶର ବହୁ ବିଦ୍ୱାନ ଦେବେନ୍ଦ୍ରକୁମାର ଦାଶଙ୍କୁ ଖୋଜନ୍ତି । ଆମେରିକାର S.P. Mohanty ଓ ବଙ୍ଗଳାର ଇଷିତା ବାନାର୍ଜି ଦୁହେଁ ପ୍ରାୟ ତାଙ୍କୁ ଖୋଜିଥାନ୍ତି । ବହୁତ କଥା ସେ ଜାଣିଥିଲେ । ଆର୍କିଭାଲ୍ ଫାକ୍ଟରେ ସେ ବିଶ୍ୱାସ କରନ୍ତି । ଶୁଦ୍ଧପାଠ ପ୍ରସ୍ତୁତିରେ ଆତ୍ମୋତ୍ସର୍ଗ କରନ୍ତି । ଜଳଜଳ ଦିଶେ ତାଙ୍କ ସମ୍ପାଦିତ ଗ୍ରନ୍ଥ ଓ ରଚିତ ରଚନା । ରାଧାନାଥ ଗ୍ରନ୍ଥାବଳୀ, ମଦନ ମୋହନ ରଚନାସଂଗ୍ରହ, ମଧୁସୂଦନ ଦାସଙ୍କ ଓଡ଼ିଆ ରଚନାବଳୀ, ରାମକୃଷ୍ଣଙ୍କ କାବ୍ୟସଂଗ୍ରହ, ଗୋପବନ୍ଧୁ ଗ୍ରନ୍ଥାବଳୀ, ଫକୀରମୋହନ ଗ୍ରନ୍ଥାବଳୀ

(୧ମ ଓ ୨ୟ ଭାଗ) ତାଙ୍କ ଶୁଦ୍ଧ ସମ୍ପାଦନାର ସୁବର୍ଣ୍ଣ ଫସଲ। ଶୁଦ୍ଧ ପାଠ ବିନା ସାହିତ୍ୟ ସମାଲୋଚନା ଅଚଳ। ଭିତ୍ତି ପ୍ରତିଷ୍ଠାରେ ଶ୍ରୀ ଦାସଙ୍କ କୀର୍ତ୍ତି ଓ କୃତିତ୍ୱ। ସମ୍ପାଦନାର ସୁଖ୍ୟାତି ଅନ୍ତରାଳରେ ରହିଯାଇଛି ତାଙ୍କର ଅନ୍ୟାନ୍ୟ ଅନେକ ପରିଚୟ। ଗଙ୍ଗାଧର ଓ ନନ୍ଦକିଶୋରଙ୍କ ସମ୍ବନ୍ଧରେ ସେ ସମାଲୋଚନାତ୍ମକ ଗ୍ରନ୍ଥ ଲେଖିଛନ୍ତି, ଲେଖିଛନ୍ତି ଓଡ଼ିଆ ଓ ଇଂରାଜୀରେ ଅନେକ ପ୍ରବନ୍ଧ। ମଧୁସୂଦନଙ୍କ ଋଷିଚିତ୍ର, 'ସାହିତ୍ୟ ଦେଶାତୀତ ଓ କାଳାତୀତ' ପ୍ରବନ୍ଧ ବେଶ୍ ପ୍ରଭାବଶାଳୀ। ନୂଆ କଥା ଲେଖନ୍ତି ପ୍ରାୟ। ଚର୍ବିତଚର୍ବଣତ୍ୱ ନଥାଏ। ତାଙ୍କୁ ସମାଲୋଚନା କ୍ଷେତ୍ରରେ ଡକ୍ଟର ନଟବର ସାମନ୍ତରାୟଙ୍କ ପଟଶିଷ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ। ନୂଆ ଉପାଦାନ ଉପକରଣ ଖୋଜନ୍ତି, ଐତିହାସିକ ତଥ୍ୟ ଓ ତତ୍ତ୍ୱ ଉପରେ ନିର୍ଭର କରନ୍ତି, ଦୃଷ୍ଟିକୋଣ ସବୁବେଳେ ଥାଏ ମୌଳିକ। ସିଦ୍ଧାନ୍ତ ସୁଚିନ୍ତିତ। ଭାଷା ଋଜୁ ତ ପରିଚ୍ଛନ୍ନ। ପଦ୍ଧତି ଐତିହାସିକ ପଦ୍ଧତି। ସବୁରଚନା ପ୍ରାୟ ତଥ୍ୟଭୂୟିଷ୍ଠ, କେହି କେହି ବରଂ ତଥ୍ୟଭାରାକ୍ରାନ୍ତ। ସମାଜ ଇତିହାସର ପ୍ରେକ୍ଷାପଟରେ ଯେ କେହି ସାହିତ୍ୟପାଠଶିକ୍ଷା ଘେନିବାକୁ ଚାହୁଁଥିଲେ ତାଙ୍କୁ ଅବଶ୍ୟ ନଟବର ସାମନ୍ତରାୟ ଓ ଦେବେନ୍ଦ୍ରକୁମାର ଦାଶଙ୍କ ପାଖକୁ ଆସିବାକୁ ହେବ।

ଫକୀରମୋହନ ସେନାପତି ଆମ ଦେବେନ୍ଦ୍ରକୁମାର ଦାଶଙ୍କର ସାହିତ୍ୟିକ ହିରୋ। ଫକୀରମୋହନଙ୍କ ଗଳ୍ପ, ଉପନ୍ୟାସ ଓ ଆତ୍ମଚରିତ ସମ୍ବନ୍ଧରେ ତାଙ୍କ ଗବେଷଣା ବୋଧହୁଏ ତାଙ୍କ ଦୃଷ୍ଟିରେ ସର୍ବୋତ୍ତମ ଗବେଷଣା। N.B.T. ଆନୁକୂଲ୍ୟରେ ତାଙ୍କର ତିନୋଟି ଗ୍ରନ୍ଥ ପ୍ରକାଶିତ। ଆତ୍ମଚରିତ ଉଭୟ ଓଡ଼ିଆ ଓ ଇଂରାଜୀ ଭାଷାରେ ପ୍ରକାଶିତ। ସଦ୍ୟ ସଦ୍ୟ ପ୍ରକାଶିତ ଫକୀରମୋହନଙ୍କ ଶ୍ରେଷ୍ଠ ଗଳ୍ପ। ଭୂମିକା ଅବଶ୍ୟ ପଠନୀୟ। ଫକୀରମୋହନଙ୍କୁ ଜାଣିବାକୁ ହେଲେ ଭୂମିକା ଦୁଇଟି ଉନ୍ମୁକ୍ତ ଦ୍ୱାର ସ୍ୱରୂପ। ଆପ୍ରାଣ ଆମରଣ ସେ ଫକୀରମୋହନଙ୍କ କଥା ହିଁ ଭାବିଛନ୍ତି। ନିକଟରେ ଛାପିଥିଲେ ଲଲାଟେନ୍ଦୁ ଦାସ ମହାପାତ୍ରଙ୍କ ସହିତ ଯୁଗ୍ମ ସମ୍ପାଦନାରେ 'ଫକୀରମୋହନ ଚର୍ଚ୍ଚା: ଆଦିପର୍ବ' (ପ୍ରଥମଭାଗ), ଏମିତି ୪/୫ଟି ଭାଗରେ ସବୁ ଚର୍ଚ୍ଚା ପ୍ରକାଶିତ ହୋଇଥାନ୍ତା। ସେ ଲେଖିଥାନ୍ତେ ଫକୀରମୋହନଙ୍କ ପୂର୍ଣ୍ଣାଙ୍ଗ ଜୀବନୀ N.B.T. ଆନୁକୂଲ୍ୟରେ। 'ପ୍ରାୟଶ୍ଚିତ୍ତ'ଟିର ଶୁଦ୍ଧ ସମ୍ପାଦନା କରିଥାନ୍ତେ। ଏହି ଲେଖକ ତାଙ୍କୁ ଫକୀରମୋହନଙ୍କ ଦସ୍ତଖଦ ଥାଇ ପ୍ରଥମ ସଂସ୍କରଣର ବହିଟିଏ ଘରୁ ସଂଗ୍ରହ କରି ତାଙ୍କୁ ଦେଇଥିଲା। କାମଟି ଅସମ୍ପୂର୍ଣ୍ଣ ରହିଗଲା। ଏଇ ଯେମିତି ଫକୀରମୋହନ ତାଙ୍କ ଉପରେ ପୂରା ନିର୍ଭର କରିଥିଲେ, ତାଙ୍କ ପାଇଁ ବି ଉପୁଜିଲା ଶୋକ ଓ ଶୂନ୍ୟତା। ଫକୀରମୋହନଙ୍କ ସାହିତ୍ୟ ସମ୍ବନ୍ଧରେ ଅନେକ ଗବେଷଣାତ୍ମକ ଓ ସମାଲୋଚନାତ୍ମକ କାମ ବାକି ଅଛି। ବାକି ରହିଗଲା ବୋଧହୁଏ।

ଶେଷକୁ ବ୍ୟକ୍ତିଗତ ସୁଖ ସ୍ମୃତିଟିଏ ଉଦ୍‌ବୋଧନ ନ କରି ରହି ପାରୁନାହିଁ। ଦେବେନ୍ଦ୍ର କୁମାର ଦାଶ ଥାଆନ୍ତି ଇସ୍ପାତ କଲେଜରେ। ଆୟୋଜନ କରନ୍ତି ଏକ ସେମିନାରର। ବିଷୟବସ୍ତୁ

ଥାଏ: "ଓଡ଼ିଶାର ଭାଷା ଓ ସାହିତ୍ୟ ଉପରେ ଶିଳ୍ପାୟନର ପ୍ରଭାବ ଓ ପ୍ରତିକ୍ରିୟା" । ରାଉରକେଲା ପାଇଁ ଉପଯୁକ୍ତ ପ୍ରସଙ୍ଗ । ମୁଖ୍ୟ ବକ୍ତବ୍ୟ ଉପସ୍ଥାପନ କରିବା ଦାୟିତ୍ୱ ଥିଲା ଏହି ଲେଖକ ଉପରେ । ସେଦିନ ରାଉରକେଲା ଯାଇ ନ ଥିଲେ ମନୋଜ୍ଞ ଏକ ସାରସ୍ୱତ ଅଭିଜ୍ଞତାରୁ ବଞ୍ଚିତ ହୋଇଥାନ୍ତା ଚିରକାଳ । ଏମିତିଆ ସମ୍ଭ୍ରାନ୍ତ ଏକ ସୁବିଶାଳ ସେମିନାର ଆୟୋଜନ ପୂର୍ବରୁ କେବେ ଦେଖି ନ ଥିଲା । ସଙ୍ଗଠନ ଥିଲା ସୁଦୃଢ଼, ସୁଶୃଙ୍ଖଳ ଓ ବ୍ୟବସ୍ଥିତ ଯଥାସମ୍ଭବ । ସମଗ୍ର କଲେଜଟି ଗୋଟିଏ ବ୍ୟକ୍ତିତ୍ୱ ଘେନି ଦେବେନ୍ଦ୍ର ବାବୁଙ୍କୁ ସାହାଯ୍ୟ ଓ ସହଯୋଗ ଯୋଗାଉଥିଲା, ସମଗ୍ର ରାଉରକେଲାର ସାଂସ୍କୃତିକ ଜୀବନର ଉତ୍ସାହ ଉନ୍ମାଦନା ଉପସ୍ଥିତ ଥିଲା, ଉପସ୍ଥିତ ଥିଲା ବି ଷ୍ଟିଲ୍‌ପ୍ଲାଣ୍ଟର ଅକୃପଣ ବଦାନ୍ୟତା । ଦେବେନ୍ଦ୍ରବାବୁ ଆକର୍ଷଣର କେବଳ କେନ୍ଦ୍ରବିନ୍ଦୁ ନ ଥିଲେ; ଥିଲେ ବି ସହଯୋଗ, ସୌହାର୍ଦ୍ଦ୍ୟ ଓ ଅନ୍ତରଙ୍ଗତାର ପ୍ରତିଭୂ । ଆମକୁ ରଖିବାର ବ୍ୟବସ୍ଥା କରିଥିଲେ ଦେବେନ୍ଦ୍ରବାବୁ ଏମିତି ଏକ ଗେଷ୍ଟ ହାଉସ୍‌ରେ ଯେ, ଯେଉଁଠି ଆସିଲେ ପ୍ରଧାନମନ୍ତ୍ରୀ ରହନ୍ତି । ବିଶାଳ ଶ୍ରୋତାମଣ୍ଡଳୀ ଆଗରେ ବହୁ ପଦସ୍ଥ ଅଫିସର ଓ ବିଦ୍ୱାନଙ୍କ ସମ୍ମୁଖରେ ପ୍ରବନ୍ଧଟି ପଢ଼ିଥିଲା, ପ୍ରାୟ ୪୦ ମିନିଟ୍ ଧରି । ଗ୍ରାହକତାର ମଜା ବି ନେଇଥିଲା । ଆନନ୍ଦ, ଉଲ୍ଲାସ, ଆଗ୍ରହ, ଉଦ୍ଦୀପନା ଓ ଆନ୍ତରିକତାରେ ପରିପୂର୍ଣ୍ଣ ଥିଲା ଦୁଇଦିନ ବ୍ୟାପୀ ସେମିନାର । ଦେବେନ୍ଦ୍ରବାବୁଙ୍କର ବହୁ ଲୋକଙ୍କ ପ୍ରୀତିଧନ୍ୟ ବ୍ୟକ୍ତିତ୍ୱଟି ଭାରି ଭଲ ଲାଗିଥିଲା । ସାରା ରାଉରକେଲା ଯେମିତି ତାଙ୍କୁ ଭଲ ପାଉଥିଲା; ଆଉ ତାଙ୍କ କାର୍ଯ୍ୟଟିକୁ ସବୁଦିଗରୁ ସର୍ବାନ୍ତଃକରଣରେ ସୁସମାହିତ କରିବାରେ କୌଣସି ପ୍ରକାର ହେଳା କରି ନ ଥିଲା । ସେମିତିକା ସେମିନାର ଅବଶିଷ୍ଟ ଜୀବନରେ ଆଉ ଦେଖିନାହିଁ । ରାଉରକେଲାର ସାଂସ୍କୃତିକ ଜୀବନ ଆଜି ଶୋକସନ୍ତପ୍ତ ହୋଇ ଉଠିଥିବ ନିଶ୍ଚୟ । ସେଠାରେ ବି ଥିବ ଶୋକ ଓ ଶୂନ୍ୟତା ।

*କଟକ*

ସୁଦର୍ଶନ ଆଚାର୍ଯ୍ୟ

# ଅତୃପ୍ତ ଜିଜ୍ଞାସା, ଉନ୍ମୁକ୍ତ ଉବାଚ: ଦେବେନ୍ଦ୍ର

ତଥାପି ଦେବେନ୍ଦ୍ରଙ୍କ ଆବେଶରୁ ମୁକୁଳିବା ସମ୍ଭବ ହେଉନି । ବିଶ୍ୱାସ ହେଉନି ସିଏ ଆଉ ନାହାନ୍ତି ବୋଲି । ସିଏ ଗୋରା ତକ୍‌ତକ୍ ଚେହେରା ଉଜ୍ଜ୍ୱଳ ଦନ୍ତପଙ୍‌କ୍ତି, ହସ ହସ ମୁହଁ । ଦେଖା ହେଲେ କି ଫୋନ କଲେ ପ୍ରଥମ ପ୍ରଶ୍ନ ସାର୍ ଆଉ କେମିତି ଅଛନ୍ତି । ଦେବେନ୍ଦ୍ରଙ୍କ ସହିତ ସମ୍ପର୍କ ସାରସ୍ୱତ; ଆତ୍ମୀୟତା ଘନିଷ୍ଠ । ଥରେ କଥା ଆରମ୍ଭ ହେଲେ ଅଛିଣ୍ଡା ; ଗୋଟିଏ ପିରିୟଡ ଅର୍ଥାତ ୪୫ ମିନିଟ । ଢିଙ୍କିରୁ ଢେଙ୍କାନାଳ ପର୍ଯ୍ୟନ୍ତ ପ୍ରଲମ୍ବିତ କିନ୍ତୁ ବାଚାଳତା ନୁହେଁ, ସାର୍ଥକ । କଥା ଭିତରେ ଥରେ ଦୁଇଥର ନିଶ୍ଚୟ ଶୁଣିବାକୁ ମିଳିବ, 'ଆପଣ ବୋଧହୁଏ ଜାଣି ନଥିବେ' । ପ୍ରକୃତରେ ରାଜଧାନୀରୁ ଦୂରରେ ରହିଥିବା ଯୋଗୁଁ ସାହିତ୍ୟ ଓ ରାଜନୀତି ସହିତ ମୋର ପ୍ରତ୍ୟକ୍ଷ ପରିଚୟ ନ ଥାଏ । ଦେବେନ୍ଦ୍ରଙ୍କଠାରୁ ବହୁ କଥା ଜାଣିହୁଏ । ତାଙ୍କର କାର୍ଯ୍ୟବ୍ୟସ୍ତତା ତଥା ମୋର ସ୍ୱାସ୍ଥ୍ୟଗତ କାରଣରୁ ଏହି ଦୀର୍ଘ କେତେଦିନ ଧରି କଥା ହେବାର ସୁଯୋଗ ମିଳି ନଥିଲା । ଆଉ ସେ ସୁଯୋଗ ମିଳିବାର ନାହିଁ । ଦେବେନ୍ଦ୍ରଙ୍କ ସହ କେଉଁ ଶୁଭ ମୁହୂର୍ତ୍ତରେ ଦେଖା ହୋଇଥିଲା ଠିକ୍ ମନେପଡୁନି । ବୋଧହୁଏ ବାଲେଶ୍ୱର କି ବାରିପଦା ମହାବିଦ୍ୟାଳୟରେ ଆୟୋଜିତ ଏକ ଅଧ୍ୟାପକ ଉଜ୍ଜୀବନ କାର୍ଯ୍ୟକ୍ରମରେ ଉଭୟ ଯୋଗ ଦେଇଥାଉ । ମୋର ବକ୍ତବ୍ୟ ଥାଏ, ଦ୍ୱିତୀୟ/ ତୃତୀୟ ପିଢିର ପ୍ରବାସୀ ଓଡିଆ ଓ ଓଡିଆ ଲୋକସାହିତ୍ୟ । ଦେବେନ୍ଦ୍ରଙ୍କ ଜିଜ୍ଞାସୁ ଦୃଷ୍ଟି ମତେ ତାତ୍ତ୍ୱିକ ଆଲୋଚନା ପାଇଁ ଅଧିକ ପ୍ରୋତ୍ସାହିତ କରିଥିଲା । ସେହିପରି ଆଉ ଏକ କାର୍ଯ୍ୟକ୍ରମରେ ମୋର ବକ୍ତବ୍ୟ ଥାଏ । ପ୍ରାଚ୍ୟ ଅଳଙ୍କାର ଶାସ୍ତ୍ର ପରିପ୍ରେକ୍ଷୀରେ ସାଂପ୍ରତିକ ଓଡିଆ ସାହିତ୍ୟ ଆଲୋଚନାଗୁଡିକ ବୋଧହୁଏ ତାଙ୍କୁ ଭଲ ଲାଗିଥିଲା । ଏହିପରି ଆଉ ଗୋଟିଏ ଦୁଇଟି ଆଲୋଚନାଚକ୍ରରେ ଉଭୟ ସମାନ ଚିନ୍ତାଧାରା ବିଶିଷ୍ଟ ଥିବା ଅନୁଭବ କରିଥିଲୁ । ତା ପରେ ମୁଁ ଦେବେନ୍ଦ୍ରଙ୍କୁ ପ୍ରାୟ ଭୁଲି ଯାଇଥିଲି । ସେ ଥିଲେ ରାଉରକେଲାରେ ଏବଂ ମୁଁ ଥିଲି ବ୍ରହ୍ମପୁରରେ । ଓଡିଶାର

ଦୁଇ ପ୍ରାନ୍ତରେ । ଯୋଗାଯୋଗର ସୁଯୋଗ ନ ଥିଲା । କିନ୍ତୁ ସେ ବୋଧହୁଏ ମୋତେ ଭୁଲି ନଥିଲେ । ଯେତେବେଳେ ସମ୍ବାଦ ସମ୍ବାଦପତ୍ରର ପ୍ରତିଷ୍ଠାତା ସମ୍ପାଦକ ସୌମ୍ୟରଞ୍ଜନ ପଟ୍ଟନାୟକ ସାହିତ୍ୟକୋଷଟିଏ ସଂକଳନ କରିବାର ଯୋଜନା କଲେ ସେତେବେଳେ ମୁଁ ତାଙ୍କର ଅପରିଚିତ ଥିଲେ ସୁଦ୍ଧା ମୋତେ ସମ୍ପାଦନାମଣ୍ଡଳୀରେ ରହିବା ପାଇଁ ଅନୁରୋଧ କରିଥିଲେ । ଏଥିରେ ଦେବେନ୍ଦ୍ରବାବୁଙ୍କ ଭୂମିକା ଥିବା ପରେ ଜାଣିବାକୁ ପାଇଲି । ଆମେ ପୁଣି ଏକତ୍ର ହେଲୁ । ଦିନ ଦିନ ଘଣ୍ଟା ଘଣ୍ଟା ଧରି ଆଲୋଚନା କରିବାର ସୁଯୋଗ ମିଳିଲା। ଏପର୍ଯ୍ୟନ୍ତ ତାହା ଥିଲା ଅବ୍ୟାହତ । ଦେବେନ୍ଦ୍ର ମୋ ଠାରୁ ପ୍ରାୟ ୧୪-୧୫ବର୍ଷ ସାନ । ତଥାପି ତାଙ୍କ ସଂସ୍ପର୍ଶରେ ଆସି ମୁଁ ବହୁ କଥା ଜାଣିବାକୁ ପାଇଛି । କହି ରଖେ ଦେବେନ୍ଦ୍ର ଥିଲେ ଜଣେ ଯାହାକୁ କୁହନ୍ତି ପରଫେକ୍ସନିଷ୍ଟ । ଯେଉଁ କାର୍ଯ୍ୟ ହାତକୁ ନିଅନ୍ତି ସାହିତ୍ୟ, ସାମାଜିକ, ସାଂଗଠନିକ ତାକୁ ନିଖୁଣ ଭାବରେ କରିଥାନ୍ତି । ସେଥିପାଇଁ ତାଙ୍କୁ ଆଗାମୀ ଓଡିଆ ଅଧ୍ୟାପକ ସମ୍ମିଳନୀର ସାଂଗଠନିକ ଦାୟିତ୍ୱ ଦିଆଯାଇଥିଲା । ସେ ଆଉ କାହାନ୍ତି । ଏ ନିକଟ ଅତୀତରେ ଏବଂ ସାଂପ୍ରତିକ ସମୟରେ ସମାଲୋଚକ ଓ ଗବେଷକ ସଂଖ୍ୟା ସ୍ୱଳ୍ପ ନୁହେଁ, କିନ୍ତୁ ଦେବେନ୍ଦ୍ରଙ୍କ କାର୍ଯ୍ୟପ୍ରଣାଳୀ ସଂପୂର୍ଣ୍ଣ ନିଆରା । ସେ ପ୍ରଧାନତଃ ଫକୀରମୋହନ, ମଧୁସୂଦନ, ରାଧାନାଥ, ଗୋପବନ୍ଧୁ ପ୍ରଭୃତି ଗ୍ରନ୍ଥାବଳୀ ସଂପାଦନା କରିଥିଲେ । ତାହା ପୂର୍ବରୁ ସଂପାଦିତ ଗ୍ରନ୍ଥାବଳୀଗୁଡିକଠାରୁ ସ୍ୱତନ୍ତ୍ର । ତାଙ୍କ ସମ୍ପାଦନାଶୈଳୀକୁ ପରବର୍ତ୍ତୀ ସମୟରେ କେବଳ ମୁଁ ନୁହେଁ, ଆମ ସମୟର ଅନ୍ୟ ସଂକଳକମାନେ ମଧ୍ୟ ଅନୁସରଣ କରିଛନ୍ତି । ଅବଶ୍ୟ ଏହା ପରିଶ୍ରମ ସାପେକ୍ଷ । ତେଣୁ କରି ତାହାଙ୍କର ପ୍ରତ୍ୟେକଟି ପ୍ରବନ୍ଧ ଏତେ ତଥ୍ୟଭିତ୍ତିକ ପ୍ରାଞ୍ଜଳ ଯେ ତାହା ପାଠକ ଓ ସମାଲୋଚକ ପାଇଁ ଗୋଟିଏ ଗୋଟିଏ ଦିଗ୍‌ଦର୍ଶକ ଉଦାହରଣ ।

ଅବସର ଗ୍ରହଣ ପରେ ମୁଁ ସ୍ୱାସ୍ଥ୍ୟଗତ କାରଣରୁ ସାହିତ୍ୟ ଜଗତରୁ ବିଦାୟ ନେବାକୁ ବସିଛି । ଏତିକିବେଳେ ଦେବେନ୍ଦ୍ରଙ୍କ ସହିତ ସମ୍ପର୍କ ମୋତେ ପୁଣି ଉନ୍ମାଦିତ କରିଥିଲା । ସମ୍ବାଦ ସାହିତ୍ୟକୋଷ ପାଇଁ ଏତେ ଲେଖା ଯେ ଲେଖିପାରିଥିଲି ଆଜି ଭାବିଲେ ବିଶ୍ୱାସ କରିହେଉନାହିଁ । ସେ ଅବଶ୍ୟ ଏଥିପାଇଁ ବିଶେଷ ସମୟ ଦେଇପାରିନାହାନ୍ତି । କିନ୍ତୁ ଗ୍ରନ୍ଥଟିକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ଶେଷ ପର୍ଯ୍ୟନ୍ତ ଆମ ସହିତ ଅଛନ୍ତି । ଏହାର ଦ୍ୱିତୀୟ ସଂସ୍କରଣ କରାଯିବା ପାଇଁ ଚିନ୍ତା କରାଯାଉଛି । କିନ୍ତୁ ଏଥିପାଇଁ ଦେବେନ୍ଦ୍ରଙ୍କ ଆବଶ୍ୟକତା ଯଥେଷ୍ଟ ଥିଲା । ସେ ତ ଆଉ ନାହାନ୍ତି ।

ଦେବେନ୍ଦ୍ରଙ୍କ ପରି ଜଣେ ବହୁପାଠୀ ଅଧ୍ୟାପକ ଓଡିଆ ବିଦ୍ୟାଳୟରେ ପ୍ରାୟ ବିରଳ । କେବଳ ଓଡିଆ ସାହିତ୍ୟ ନୁହେଁ, ଜ୍ଞାନରାଜ୍ୟର ବିଭିନ୍ନ ବିଭାଗରେ ସେ ଥିଲେ ସୁବ୍ୟୁତ୍‌ପନ । ପାଶ୍ଚାତ୍ୟ ଜଗତରେ ସଦ୍ୟ ପ୍ରକାଶ ପାଇଥିବା ବହିଗୁଡିକୁ ସଂଗ୍ରହ କରିବା, ପଢିବା ଏବଂ ଭାରତୀୟ କିମ୍ବା ଓଡିଶାର ପୃଷ୍ଠଭୂମିରେ ତାର ଉପାଦେୟତା ସମ୍ପର୍କରେ ସେ ସର୍ବଦା ଯତ୍ନଶୀଳ

ଥିଲେ। ଓଡିଆ ଭାଷାରେ ପ୍ରକାଶ ପାଉଥିବା ପ୍ରାୟ ସମସ୍ତ ନୂଆ ନୂଆ ବହି ସମ୍ପର୍କରେ ତାଙ୍କର ସ୍ଥୁଳ ଧାରଣା ଥିଲା । ବିଶେଷକରି ଜୀବନୀ, ଆତ୍ମଜୀବନୀ ପଢିବାରେ ତାଙ୍କର ଥିଲା ଅଧିକ ଆଗ୍ରହ । ବିଭିନ୍ନ ସୂତ୍ରରୁ ସଂଗ୍ରହ କରି ସେ ନିଜ ଘରେ ଏକ ଦୁର୍ଲଭ ଗ୍ରନ୍ଥ ସମ୍ବଳିତ ପାଠାଗାର ନିର୍ମାଣ କରିଥିଲେ । ଜିଜ୍ଞାସା ଥିଲା ତାଙ୍କର ଅତୃପ୍ତ । କିନ୍ତୁ ଏବେ ଏହି ପାଠାଗାରକୁ କିଏ ବ୍ୟବହାର କରିବ ? ପୁସ୍ତକଗୁଡିକର ଭାଗ୍ୟ କଣ ହେବ ? ଜଣେ ନିଷ୍ଠାପର, ପ୍ରଜ୍ଞାବାନ, ବହୁପାଠୀ, ଜିଜ୍ଞାସୁ, ନିରଳସ ଗବେଷକ ଦେବେନ୍ଦ୍ରଙ୍କର ସୁନାମ ଥିଲା । ସବୁଠାରୁ ବଡ କଥା ହେଲା ସେ ବୁଝିଥିଲେ ଯେ କୌଣସି ଗବେଷଣା ସମ୍ପୂର୍ଣ୍ଣ ନୁହେଁ, ସେଥିପାଇଁ ଜଣେ ଗବେଷକ ଅନ୍ୟମାନଙ୍କୁ ଅକୁଣ୍ଠ ଭାବରେ ସାହାଯ୍ୟ କରିବା ଦରକାର । ଅନ୍ୟମାନଙ୍କ ପରି ସେ ଜାଣିଥିବା କିମ୍ବା ସଂଗ୍ରହ କରିଥିବା ତଥ୍ୟକୁ ଲୁକ୍କାୟିତ ଭାବେ ରଖିବାକୁ ଚାହୁଁ ନଥିଲେ । କାରଣ ତଥ୍ୟ କେଉଁଠାରୁ ନା କେଉଁଠାରୁ ସଂଗ୍ରହ କରିହେବ । କିନ୍ତୁ ତାଙ୍କ ଭଳି ସିଦ୍ଧାନ୍ତ ଗ୍ରହଣ କରିବା କିମ୍ବା କିଛି ନୂତନ ଆବିଷ୍କାର କରିବା ଗବେଷକର ଦୁଇଟି ଆଖି ଉପରେ ନିର୍ଭର କରେ । ଏଥିପାଇଁ ସମସାମୟିକ ଗବେଷକ, ଛାତ୍ର ଓ ସମାଲୋଚକ ତାଙ୍କର ଗ୍ରନ୍ଥାଗାର ପାଇଁ ବକ୍ତବ୍ୟ ସଦା ଉନ୍ମୁକ୍ତ ଥିଲା । ତାଙ୍କ ରଚନାବଳୀର ସହାୟକ ଗ୍ରନ୍ଥସୂଚୀ ଅନ୍ୟ ଗବେଷକମାନଙ୍କ ପାଇଁ ମଧ୍ୟ ସହାୟକ ।

କେବଳ ଭଲ ଗବେଷକ କି ଭଲ ଅଧ୍ୟାପକ କି ଭଲ ସଂଗଠକ ନୁହେଁ, ଦେବେନ୍ଦ୍ର ଥିଲେ ଜଣେ ଭଲ ମଣିଷ । ଜଣେ ଭଲ ମଣିଷ ଜଣେ ଭଲ ଗବେଷକ ହେବା ପାଇଁ ଆବଶ୍ୟକତା ନାହିଁ । କିନ୍ତୁ ଜଣେ ଭଲ ଗବେଷକ ଜଣେ ଭଲ ମଣିଷ ହେବା ପାଇଁ ବାଧ୍ୟ । ସେହିପରି ଦେବେନ୍ଦ୍ରଙ୍କ ସଂସ୍ପର୍ଶରେ ଯେଉଁମାନେ ଆସିଛନ୍ତି ସେମାନେ ତାଙ୍କର ଏହି ଭଲଗୁଣକୁ ନିଶ୍ଚିତ ଭାବରେ ଚିହ୍ନିଥିବେ ।

ଶେଷରେ ଦେବେନ୍ଦ୍ରଙ୍କ ଅକାଳ ବିୟୋଗ ଓଡିଆ ସାହିତ୍ୟର ଅପୂରଣୀୟ କ୍ଷତି କରିଛି। ମୋର ମଧ୍ୟ କମ୍ କ୍ଷତି ହୋଇନାହିଁ। ହଠାତ କୌଣସି ସନ୍ଦେହ ହେଲେ କିମ୍ବା ମୋର ଆବଶ୍ୟକ ପଡିଲେ ଦେବେନ୍ଦ୍ର ଥିଲେ ମୋର ସହାୟ । ଡକ୍ଟର ନଟବର ସାମନ୍ତରାୟ କିମ୍ବା ଅଧ୍ୟାପକ ଚିନ୍ତାମଣି ବେହେରାଙ୍କ ପରି ଗବେଷକମାନଙ୍କ ପଚାଶ ବର୍ଷ ପରେ ସେମାନଙ୍କ କୃତିତ୍ୱକୁ ପୁର୍ନବିଚାର କରିବା ପାଇଁ ଆସିଥିଲେ ଦେବେନ୍ଦ୍ର କୁମାର ଦାଶ । ବୋଧହୁଏ ତାଙ୍କ ପରି ଆଉ ଜଣେ ଶୁଦ୍ଧ ଓ ଉଦାର ଗବେଷକଙ୍କୁ ପାଇବା ପାଇଁ ଓଡିଆ ସାହିତ୍ୟକୁ ଆଉ ପଚାଶ ବର୍ଷ ଅପେକ୍ଷା କରିବାକୁ ପଡିବ ।

ସେ ଯେଉଁଠି ଅଛନ୍ତି ଭଲରେ ରହନ୍ତୁ । ଯେଉଁଠି ଜନ୍ମ ନେବେ ଏ ଜନ୍ମର ଅଧ୍ୟୟନ ତାଙ୍କର ସହାୟକ ହେଉ । ବନ୍ଧୁ ପରିବାର ତାଙ୍କ ଆର୍ଶୀବାଦରୁ ଭଲରେ ରୁହନ୍ତୁ ।

*ବ୍ରହ୍ମପୁର*

ନଟବର ଶତପଥୀ

# ସ୍ମୃତି କହିବି ନା ଶ୍ରୁତି କହିବି

ଦେବେନ୍ଦ୍ର ମୋ ପାଇଁ ସ୍ମୃତି ଓ ଶ୍ରୁତି-ଉଭୟ । ତାଙ୍କ ସହ ବ୍ୟକ୍ତିଗତ ପରିଚୟ ହୁଏ ୧୯୯୮ରେ । ସେ କେଉଁ କାରଣରୁ ମୋ ପ୍ରତି ଶ୍ରଦ୍ଧାଶୀଳ ହୋଇଛନ୍ତି, ଜାଣେ ନାହିଁ । ଉପହାର ଦେଇଛନ୍ତି ତାଙ୍କ ରଚିତ ବହି । ଗଙ୍ଗାଧର: କବିତା ଓ କବି ଆତ୍ମା ବହୁ ଆଗରୁ ତାଙ୍କ ଲେଖା ପ୍ରତି ଥିଲା ଅସମ୍ଭବ ମୋହ ଓ ସମ୍ମାନ । ଝଙ୍କାରରେ ଲେଖିଥିଲେ, 'ପ୍ରେତ ଓ ପାର୍ବତୀ' 'ଆଗାମେନନ ଓ ପାର୍ବତୀ ।' ତାଙ୍କ ସହ ପରିଚୟ ମନୋନ୍ତରରେ ଦେଇଥିଲୁ । ଇଂରେଜୀ ସାହିତ୍ୟର କେତେକେତେ କଥା ମତେ ଅଜଣା ହେତୁ, ମଝିରେ ମଝିରେ ଅଟକି ଯିବାକୁ ହୁଏ । ସେହି ଲେଖା ବିଷୟରେ, ତାଙ୍କ ସହ ବ୍ୟକ୍ତିଗତ ପରିଚୟ ହେବା ପରେ ପଚାରିଛି । 'ନିଜ ଲେଖା ସଂକଳନ କରୁନାହିଁ କାହିଁକି ?' ସେ ହସି ଦେଇଛନ୍ତି । ମନେ ହେଇଛି- ତାଙ୍କ ଦୃଷ୍ଟିରେ ସେ କାଳର ଲେଖାର ଅସାର (?) । ସେ ଅଗ୍ରଗାମୀ, ଆଗକୁ ଅନେକ କାମ- ପଛ ଲେଖାକୁ ମନେପକାଇ ତାକୁ ସ୍ଥାୟୀ ରୂପ ଦେବାକୁ ବୋଧହୁଏ ଅନିଚ୍ଛୁକ । ୧୯୯୦ରେ ଗବେଷଣା ପରିଷଦଦ୍ୱାରା ସେ ସମ୍ମାନିତ ହେଲେ ନନ୍ଦକିଶୋର ବଳଙ୍କ ସମ୍ପର୍କିତ ମନୋଗ୍ରାଫ ରଚନା ପାଇଁ । ଏ ସମ୍ବାଦଟି ଥିଲା ବ୍ୟକ୍ତିଗତ ଭାବେ ମୋ ପାଇଁ ଖୁସିର କଥା, ଯଦିଚ ତାଙ୍କ ସହ ସେ ଯାଏ ବ୍ୟକ୍ତିଗତ ପରିଚୟ ହୋଇ ନଥିଲା । ପୁଣି କହି ରଖେ । ପ୍ରେତ, ପାର୍ବତୀ, ଆରାମେନନମାନେ ମତେ ଆଚ୍ଛନ୍ନ କରିଥିଲେ ଓ କରିରଖିଛନ୍ତି ।

ସେ ଯେତିକି ତଥ୍ୟ ନିଷ୍ଠୁର, ସେତିକି ଗମ୍ଭୀର ନିର୍ଦ୍ଦୟ ବିଚାରକ । ତଥ୍ୟର ପ୍ରମାଣ ନାହିଁ ତ ଲେଖା ଶ୍ରୀ ନାହିଁ । ଯୁକ୍ତିର ଶୋଭା ନାହିଁ । ତେଣୁ ଅଗମ୍ୟ, ଅଲେଖ୍ୟ । ସେ ଲେଖିଛନ୍ତି, ଉତ୍କଳ ସମ୍ମିଳନୀ ୧୯୦୩-୧୯୩୬, ସମ୍ପାଦନା କରିଛନ୍ତି ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ଓଡିଆ ରଚନା ବଳି, ଉତ୍କଳମଣି ଗୋପବନ୍ଧୁ ଗ୍ରନ୍ଥାବଳି । ତାଲିକା ଲମ୍ବ ହେବ ଗୋଟିଏ ଗୋଟିଏ ଯୋଡ଼ିଲେ ।

ଓଡିଆ ସାହିତ୍ୟକୁ ଦେଲେ କଣ ? କାହିଁକି ସେ ରହିବେ ସ୍ମରଣୀୟ ? ସଂକଳନ ଓ ସଂପାଦନାରେ ଆବେଗ, ବ୍ୟକ୍ତିଗତ ରୁଚି, ଶ୍ରଦ୍ଧା, ମକ୍ଷିକା ନ୍ୟାୟବଶତରୁ ମୁକ୍ତ ତଥ୍ୟ ଅଛି ଓ ବିଶ୍ଳେଷଣଗମ୍ୟ । 'ରାଧାନାଥ ଗ୍ରନ୍ଥାବଳୀ', 'ଫକୀରମୋହନ ଗ୍ରନ୍ଥାବଳୀ' ବା 'ଗୋପବନ୍ଧୁ ଗ୍ରନ୍ଥାବଳୀ' ଏଇଥିପାଇଁ ନିର୍ଭରଯୋଗ୍ୟ ପାଠ । ଏଇଟି ବିଚିତ୍ର କଥା ଯେ, ଓଡିଶା ପ୍ରଦେଶ ଗଠନରେ ଉତ୍କଳ ସମ୍ମିଳନୀର ନେତୃତ୍ୱ ଇତିହାସର କେନ୍ଦ୍ରବିନ୍ଦୁ । କିନ୍ତୁ ଆଲୋଚନା ବେଳେ ତଥ୍ୟ ସମୂହ ଧାରାବାହିକ ବର୍ଗୀକୃତ ନ ହେବା କାରଣରୁ ଇତିହାସବୋଧଟି ଛେଉଣ୍ଡ ହୋଇଯାଏ । ସାହିତ୍ୟର ପାଦପୀଠରେ ଯେଉଁଠି ଇତିହାସ ମୃତ, ସେଇଠି ଆମର ଅର୍ଘ୍ୟ ହୁଏ ପାଣି ପରି ତ୍ୟଜ୍ୟ । ଦେବେନ୍ଦ୍ର ଓଡିଆ ଅନୁମାନିକତାକୁ ଅଶ୍ରଦ୍ଧା କରିଛନ୍ତି । ପ୍ରାମାଣିକ ସଂକଳନ ସହଯୋଗ ବିଚାର ଦେଇଛନ୍ତି । ଉତ୍କଳ ସମ୍ମିଳନୀ ବୃତ୍ତାନ୍ତ ହେଉ ଅବା ଅନ୍ୟ କିଛି । ମୁଖବନ୍ଧ ଲେଖି ନିଜ ଦାୟିତ୍ୱ ସେ ପାଳନ କରିଛନ୍ତି । ଦୀର୍ଘ ମୁଖବନ୍ଧ, ଅପଯଶଶୂନ୍ୟ ଗମ୍ଭୀର ଭାବ, ପ୍ରତ୍ୟୟନିଷ୍ଠ ବିଚାର ଫଳରେ ସଂପାଦନା-କଳାର ମର୍ଯ୍ୟାଦା ବୃଦ୍ଧି ପାଇଛି । ଓଡ଼ିଶାରେ ଓ ବିଶେଷକରି ଓଡ଼ିଆ ଭାଷାର ଉନ୍ମୋଚକ କୃତିର ବିକଳ ଏକତ୍ରୀକରଣକୁ ସଂପାଦନା ନାମ ଦିଆଯାଏ । ଏହି ଶତାୟୁ କୌଶଳ (ପାଣ୍ଡିତ୍ୟ ପ୍ରକାଶନ)ର ପୂର୍ଣ୍ଣଛେଦ ପକାଇଛନ୍ତି ଦେବେନ୍ଦ୍ର । ଇଂରାଜୀରେ ମଧୁସୂଦନ ଦାସ, ଗାନ୍ଧି ଓ ମଧୁସୂଦନ, ଓଡିଶାରେ ଉପନିବେଶ ଶାସନ ଓ ମିଶନାରି, ଓଡିଆ ଅସ୍ମିତା, ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ' ବିଷୟ ଆଦିର ଇଂରାଜୀ ଆଲୋଚନା ହେଉଛି ଓଡିଶାର ଦର୍ପଣ । ହାତଗଣତି ଓଡିଆ ବୁଦ୍ଧିଜୀବୀ ଓଡିଆର ପରିଚୟ ବାହାର ଜଗତରେ ରୋପଣ କରିଛନ୍ତି । ସେ ମଧ୍ୟରେ ଦେବେନ୍ଦ୍ରଙ୍କ ସ୍ଥାନ ଉଜ୍ଜ୍ୱଳ, ଜଳ ଜଳ । ଆତ୍ମା ଅମୃତରେ ଲୀନ ହୁଏ । ଏହା ହିଁ ତାଙ୍କ ପାଇଁ ସତ୍ୟ ।

*କଟକ*

**ସଂଘମିତ୍ରା ମିଶ୍ର**

# ଦୁଇଟୋପା ଲୁହ

ଆପଣ ମୋ'ଠାରୁ ବୟସରେ ସାନ, କିନ୍ତୁ ଜ୍ଞାନରେ ବରିଷ୍ଠ। ତେଣୁ ମନରେ ସ୍ୱତଃ ସମୀହ ଆସେ। ଏତେଶୀଘ୍ର ବାହୁଡ଼ିଯିବା କ'ଣ ନିହାତି ଦରକାର ଥିଲା ? ମୁଁ ତ ଭାବିପାରୁନି ? ମନେପଡୁଛି ଫକୀରମୋହନ ବିଶ୍ୱବିଦ୍ୟାଳୟରେ ଉଜ୍ଜୀବନ ପାଠ୍ୟକ୍ରମ ଚାଲିଥାଏ। ମୁଁ ଗଲି କ୍ଲାସ୍ ନେବାକୁ। ଆପଣ ବସିଥିଲେ ସାମ୍ନା ସିଟ୍‌ରେ। ମୋ ପାଟିରୁ ବାହାରିପଡ଼ିଲା "ଆପଣ କ'ଣ ଏଠି ?" ଆପଣଙ୍କର ସେ କୋର୍ସଟି କରିବା ଦରକାର ଥିଲା। ମୁଁ କହିଲି "ଆପଣ ପଦାକୁ ନ ଗଲେ ମୁଁ ପଢ଼ାଇପାରିବିନି।"ଏ କଥାଟି ଆପଣଙ୍କୁ ଭାରି ଭଲ ଲାଗିଥିଲା ବୋଲି ଆପଣ କହନ୍ତି। କେତେ ଗ୍ରନ୍ଥାବଳୀ ସମ୍ପାଦନା କଲେ କେତେ ଅହଲ୍ୟାଙ୍କୁ ପାଷାଣରୁ ମୁକ୍ତି ଦେଲେ। କେତେ ପ୍ରତିଭାଙ୍କୁ ଲୋକଲୋଚନକୁ ଆଣିଲେ। ଏତେ କାମ କଲେ କ'ଣ ତରବରରେ ଫେରିଯିବାର ଥିଲା ବୋଲି? ଜାଣିଛି ଆପଣ 'ସମ୍ବାଦ ସାହିତ୍ୟକୋଷ'ର ଅନ୍ୟତମ ସମ୍ପାଦକ। ଇଂରାଜୀରେ ଆପଣଙ୍କର ଗଭୀର ଜ୍ଞାନ ଥିଲା। ରାଉରକେଲାରେ ଆପଣ ଏକ ସହଯୋଗୀ ପରିସର ପାଇଥିଲେ ଓ ଉତ୍କଳ ସମ୍ମିଳନୀ ଭଳି ପୁସ୍ତକ ରଚନା କରିଥିଲେ। କେବଳ ମନଦେଇ ଲେଖା ପଢ଼ା କରିବେ ବୋଲି ପରା ସ୍ୱେଚ୍ଛାରେ ଅବସର ନେଲେ ? ମନେଅଛି, ଶ୍ରୀଚରଣଙ୍କ ସହିତ ଆପଣ ଆମ ଘରକୁ ଆସି ପୁଅ ବାହାଘରପାଇଁ ନିମନ୍ତ୍ରଣ ଦେଇଯାଇଥିଲେ। ଆମେସବୁ ଯାଇ ଭୋଜି ଖାଇଥିଲୁ। ଆପଣ ଜଣଜଣ କରି ସମସ୍ତଙ୍କ ଖବର ବୁଝୁଥିଲେ। 'ଗବେଷକ' କହିଲେ ଯାହା ବୁଝାଯାଏ, ତାହା ଆପଣଙ୍କ ବ୍ୟକ୍ତିତ୍ୱକୁ ଦେଖି ହିଁ ଜାଣିହେଉଥିଲା। ହେ ମହାନ୍ ସାଧକ, ଆଜି ଆପଣ ପରପାରିରେ। ଓଡ଼ିଆ ଅଧ୍ୟାପକ ସମ୍ମିଳନୀର ଆପଣ ଥିଲେ ସୁଯୋଗ୍ୟ କାଣ୍ଡାରୀ। ଆପଣଙ୍କ ପାଇଁ ଦୁଇଟୋପା ଲୁହ ବ୍ୟତୀତ ଆଉ କିଛି ଦେବାର ନାହିଁ। ଈଶ୍ୱର ଏ ଦାରୁଣ ଧକ୍କାରୁ ଆପଣଙ୍କ ପରିବାରକୁ ଶକ୍ତି ଦିଅନ୍ତୁ।

*ଭୁବନେଶ୍ୱର*

## ଦାଶ ବେନହୁର

# ଅନନ୍ୟ ଓ ଅନୁପମ ଦେବେନ୍ଦ୍ର

ମୃତ୍ୟୁ ସବୁବେଳେ ସବୁଠାରେ  ନିର୍ମମ।

ଦେବେନ୍ଦ୍ରବାବୁ ବୟସରେ ମୋଠାରୁ ବର୍ଷେ ସାନ ଓ ପାଠ ପଢ଼ିଲାବେଳେ ବି ବର୍ଷେ ତଳେ ଥିଲେ। ହେଲେ ବିଦ୍ୟାରେ, ଅଧ୍ୟୟନରେ, ଗବେଷଣାରେ ତଥା ନିଷ୍ଠାପରତାରେ ଥିଲେ ମୋ'ଠାରୁ ଅନେକ ଉପରେ। ଆମ ଭିତରେ ଥିଲା ଏକ ନିଃସର୍ତ୍ତ ପୁଣି ଅକୃତ୍ରିମ ବନ୍ଧୁତା। ଦେଖାହେଲେ ସୌହାର୍ଦ୍ଦ୍ୟ ବଢ଼ିଯାଏ ଓ ଫୋନ୍‌ରେ କାଥାବାର୍ତ୍ତା ହେଲେ ଲାଗେ ସେ ପାଖରେ ବସିଛନ୍ତି।

ବେଳେବେଳେ ବିଭିନ୍ନ ବିଷୟ, ବିଶେଷକରି ସାହିତ୍ୟ ସମ୍ପର୍କିତ କଥାରେ ସନ୍ଦେହ ଉପୁଜେ। ସେ ସବୁ ବହିରେ ନଥାଏ କି ଗୁଗ୍‌ଲ୍ ସର୍ଚ୍ଚରେ ନଥାଏ। ଆଉ କୌଣସି ଜଣାଶୁଣା ଓଡ଼ିଆଙ୍କ ପାଖରେ ବି ନଥାଏ। ଥାଏ ଦେବେନ୍ଦ୍ରବାବୁଙ୍କ ପାଖରେ। ସେ ଥିଲେ ଅନେକ ନିଚୋଳ ତଥ୍ୟର ସୁସଂରକ୍ଷିତ ଗନ୍ତାଘର। ମୋପାଇଁ ତଥ୍ୟ-ଅଭିଧାନ।

ଗାନ୍ଧୀଜୀଙ୍କ ଜୀବନଠାରୁ ଆରମ୍ଭ କରି ମଧୁସୂଦନ ଦାସ, ରାଧାନାଥ ରାୟ, ଫକୀରମୋହନ ସେନାପତି ଆଦିଙ୍କ କୃତି ଓ କର୍ମ ବିଷୟରେ ସେ ଯେତେ ତଥ୍ୟଭିଜ୍ଞ ଥିଲେ, ତାହା ଭାବିଲେ  ଆଶ୍ଚର୍ଯ୍ୟ ହେବାକୁ ପଡ଼େ। ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ପାଠପଢ଼ା, ସୁଦୂର ରାଉରକେଲାରେ ଅଧ୍ୟାପନା। ତେଣୁ ଅନେକ ପରେ ଅଧ୍ୟାପକ ଅଭିରାମ ବିଶ୍ୱାଳଙ୍କ ମାଧ୍ୟମରେ ତାଙ୍କ ସହ ପରିଚୟ। ଖାଲି ପରିଚୟ ନୁହେଁ, ଆଲୋକିତ ପରିଚୟ। ଦେବେନ୍ଦ୍ରବାବୁଙ୍କ ଭିତରେ ଗୋଟାଏ ନିଜଗଢ଼ା ଆଲୋକ ଥିଲା, ଯହିଁରେ ଦୀପ୍ତି ଥିଲା, ଉତ୍ତାପ ବି। ପ୍ରଗତି ଉତ୍କଳ ସଂଘ, ରାଉରକେଲା ମାଧ୍ୟମରେ ସେ ଯେଉଁ ତିନିଗୋଟି ଗବେଷଣାତ୍ମକ ପୁସ୍ତକ ପ୍ରକାଶ କରିଛନ୍ତି ସେ ସବୁ ଅନନ୍ୟ ଓ ଅନୁପମ। ଉତ୍କଳ ଗୌରବ ମଧୁସୂଦନଙ୍କ ସମ୍ପର୍କରେ ସେ ଲେଖିଥିବା ଓ ସଂକଳିତ କରିଥିବା ସମସ୍ତ ପୁସ୍ତକ ପ୍ରାମାଣିକ।

ଉତ୍କଳ ସମ୍ମିଳନୀର ବିଭିନ୍ନ ଅଧିବେଶନର ବିବରଣୀ– ପ୍ରଥମ ଖଣ୍ଡ ପ୍ରକାଶ କରି ସେ ଓଡ଼ିଶାର ଏହି ନୂଆ ମାଦଳାପାଞ୍ଜିକୁ ପ୍ରମାଣସିଦ୍ଧ କରି ଦେଇଛନ୍ତି। କିନ୍ତୁ ପ୍ରାୟ ଦ୍ୱିତୀୟ ଖଣ୍ଡଟି ପ୍ରସ୍ତୁତ ହୋଇ ରହିଥିଲେ ମଧ୍ୟ ଏ ଯାଏ ପ୍ରକାଶିତ ହୋଇପାରିଲା ନାହିଁ।

ମନ ଥିଲା ଷ୍ଟିଲ୍ ପରି, ବିବେକ ଥିଲା କ୍ଷୁରଧାର ଭଳି, ମାତ୍ର ଦେହ ସବୁବେଳେ ଠକି ଚାଲିଥିଲା ତାଙ୍କୁ। ସେଇ କାଳ ହେଲା।

ଯିବାର ମାତ୍ର ଚାରିଦିନ ପୂର୍ବରୁ ଏନ୍.ବି.ଟି, ଓଡ଼ିଆ ସମ୍ପାଦକ ଶ୍ରଦ୍ଧେୟ ପ୍ରମୋଦ ସର ଜଣାଇଲେ ଯେ, ଦେବେନ୍ଦ୍ରବାବୁଙ୍କ ସମ୍ପାଦିତ 'ଫକୀରମୋହନ ଗଳ୍ପ ସଂକଳନ' ପ୍ରକାଶପାଇଲା। ସଙ୍ଗେସଙ୍ଗେ ଦେବେନ୍ଦ୍ରବାବୁଙ୍କୁ ଫୋନ୍ କଲି। ଦଶ ବର୍ଷ ପରେ ବହିଟି ବାହାରୁଛି ବୋଲି ଅଭିନନ୍ଦନ ଜଣାଇଲି। ପ୍ରତିଶ୍ରୁତି ମିଳିଲା, ପ୍ରଥମ କପିଟି ମୋ ପାଖକୁ ଆସିବ।

କଥା କଥାରେ ରହିଗଲା। ସେ ଚାଲିଗଲେ ଅକସ୍ମାତ୍। ଚାଲିଗଲେ ବୋଲି ଶୁଣିଲାମାତ୍ରେ ଯେମିତି ଗୋଟେ ଅବସାଦ ଘାରିଗଲା ମତେ। ଶୂନ୍ୟକୁ ଚାହିଁ ନମସ୍କାର କରିବା ଛଡ଼ା ଆଉ ଉପାୟ ବା କ'ଣ ଥିଲା ? ଦେବେନ୍ଦ୍ରବାବୁ! ଆପଣଙ୍କ ଅବର୍ତ୍ତମାନରେ ମୋର ପ୍ରଣାମ ସ୍ୱୀକାର କରନ୍ତୁ। ବୟସରେ ସାନ ମାତ୍ର ଆପଣ ମୋଠାରୁ ବଡ଼।

*ଭୁବନେଶ୍ୱର*

## ଗୌରହରି ଦାସ

# ଶ୍ରାବଣର ଶୂନ୍ୟତା

ଅଗଷ୍ଟ ଏଗାର ରାତିରେ ଭୁବନେଶ୍ୱର ପ୍ଲାଟ୍‌ଫର୍ମରୁ ବିଦାୟ ଦେବାବେଳେ କଦାପି କଳ୍ପନା କରିପାରିନଥିଲି ଯେ ତାହାହିଁ ଦେବେନ୍ଦ୍ରବାବୁଙ୍କ ସହ ମୋର ଶେଷ ସାକ୍ଷାତ ହେବ। ମାତ୍ର ପନ୍ଦରଟା ଦିନ ପରେ ଦେବେନ୍ଦ୍ର ବାବୁ ସ୍ମୃତି ପାଲଟିଯିବେ- ଏହି ବାସ୍ତବତାକୁ ଏବେ ବି ମନ ଗ୍ରହଣ କରିପାରୁନାହିଁ। ଜୀବନ କେତେ ନିର୍ମମ ଭାବରେ ଅନିଶ୍ଚିତ !

ଦିହେଁ ସମ୍ବଲପୁର ଯାଇଥିଲୁ। ସମ୍ବଲପୁର ବିଶ୍ୱବିଦ୍ୟାଳୟ ଗଙ୍ଗାଧର ମେହେର ଜୟନ୍ତୀ ଏବଂ ଭାରତ ଚନ୍ଦ୍ର ନାୟକ ସମ୍ବର୍ଦ୍ଧନା ସମାରୋହ ଆୟୋଜନ କରିଥିଲା। ଦେବେନ୍ଦ୍ରବାବୁ ଥିଲେ ମୁଖ୍ୟବକ୍ତା, ମୁଁ ଅନ୍ୟତମ ସମ୍ବର୍ଦ୍ଧନା-ପ୍ରାପକ। ଯିବାବେଳକୁ ଅଲଗା ଅଲଗା ଟ୍ରେନ୍‌ରେ ଯାଇଥିଲୁ, ମାତ୍ର ଫେରିବା ବେଳକୁ ସାଙ୍ଗହୋଇ ଫେରିଥିଲୁ ବଲାଙ୍ଗୀର-ଭୁବନେଶ୍ୱର ଏକ୍ସପ୍ରେସ୍‌ରେ। ଆସିବାବେଳେ ଅନେକ ବିଷୟରେ କଥାବାର୍ତ୍ତା ହୋଇଥିଲା। ବାହାରେ ବର୍ଷା, ଭିତରେ ଗପସପ। ଦେବେନ୍ଦ୍ରବାବୁଙ୍କ ସିଟ୍ ଟିକିଏ ଆଗରେ ଥିବାରୁ ସେ ମଝିରେ ମଝିରେ ଉଠି ଆସୁଥିଲେ - କହୁଥିଲେ ଏତେ ସମୟ ଗୋଟାଏ ଜାଗାରେ ବସିବସି ବିରକ୍ତ ଲାଗୁଛି। ସେଦିନ ସେ କଂପାର୍ଟମେଣ୍ଟରେ ସମ୍ଭବତଃ ସିଏ ହିଁ ଜଣେ ଯାତ୍ରୀ ଥିଲେ ଯିଏ ଆରମ୍ଭରୁ ଶେଷ ଯାଏଁ ମାସ୍କ ପିନ୍ଧିଥିଲେ। ନିଜର ଅସୁସ୍ଥତାଯୋଗୁଁ ସେ ବେଶ୍ ସ୍ୱାସ୍ଥ୍ୟ ସଚେତନ ଥିବା ମୁଁ ଲକ୍ଷ୍ୟ କରିଥିଲି।

ଏଗାର ତାରିଖ ସକାଳେ ସମ୍ବଲପୁର ବିଶ୍ୱବିଦ୍ୟାଳୟର କୁଳସଚିବ ଶ୍ରୀ ନୃପରାଜ ସାହୁ ତାଙ୍କ ବାସଭବନରେ ଆମମାନଙ୍କପାଇଁ ସକାଳ ଭୋଜନର ବ୍ୟବସ୍ଥା କରିଥିଲେ। ଅତିଥିଙ୍କ ମଧ୍ୟରେ କଳାହାଣ୍ଡି ବିଶ୍ୱବିଦ୍ୟାଳୟର କୁଳପତି ସଂଜୟ କୁମାର ଶତପଥୀ, ଦେବେନ୍ଦ୍ର କୁମାର ଦାଶ, କବି ଶତ୍ରୁଘ୍ନ ପାଣ୍ଡବ ଏବଂ ମୁଁ। ଦେବେନ୍ଦ୍ରବାବୁ କହିଲେ, ସେ ସକାଳେ

ବେଶି ଖାଆନ୍ତିନାହିଁ। ମୁଁ ତାଙ୍କର ବିପରୀତ ଥିଲି। ଜଳଖିଆ ଖାଇବା ପରେ ଫଟୋଉଠା ହେଲା। ଦେବେନ୍ଦ୍ରବାବୁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ସହ ଅନ୍ତରଙ୍ଗ ଭାବେ ପରିଚିତ ଥିଲେ। ମଝିରେ ମଝିରେ ସେ ତାଙ୍କ ସ୍ମୃତିରୁ ପଦେପଦେ କହୁଥାଆନ୍ତି।

ଏହାପରେ ସଭା। ଦେବେନ୍ଦ୍ରବାବୁ ସବୁବେଳେ ଭଲ କହନ୍ତି। ଦୃଷ୍ଟିକୋଣର ମୌଳିକତା ସ୍ୱତନ୍ତ୍ର। ସେଦିନ ମଧ୍ୟ ଖୁବ୍ ଭଲ କହିଲେ। ତାଙ୍କର ବକ୍ତବ୍ୟ ଥିଲା– ଗଙ୍ଗାଧର ମେହେର ପ୍ରାଚୀନପନ୍ଥୀ ନ ଥିଲେ, ସେ ଥିଲେ ଆଧୁନିକ ଦୃଷ୍ଟିଭଙ୍ଗୀର କବି। ପ୍ରସଙ୍ଗକ୍ରମେ, ଗଙ୍ଗାଧର ମେହେର ସେହି ସମୟରେ ସୁଦ୍ଧା ତାଙ୍କର ବସ୍ତ୍ରାଳୟର ବିଜ୍ଞାପନ ସମ୍ବାଦପତ୍ରରେ ଛପେଇଥିବା କଥା ସେ ଉଲ୍ଲେଖ କରି ଏହା ଆଧୁନିକ ଦୃଷ୍ଟିଭଙ୍ଗୀର ଏକ ପରିଚୟ ବୋଲି ଦର୍ଶାଇଥିଲେ। ପ୍ରାୟ ପଇଁଚାଳିଶ ମିନିଟ୍‌ର ଦୀର୍ଘ ଭାଷଣ ସଭିଙ୍କୁ ଅଭିଭୂତ କରିଥିଲା।

ଆମେମାନେ ଗୋଟିଏ ଟ୍ରେନ୍‌ରେ ଫେରିଥିଲେ ମଧ୍ୟ ମୁଁ ହୀରାକୁଦ ଷ୍ଟେସନ୍‌ରୁ ଚଢ଼ିଥିଲି, ସେ ସମ୍ବଲପୁରରୁ। ମୋର ଯାହା ମନେପଡ଼ୁଛି, ତାଙ୍କୁ କୁଳପତିଙ୍କ କାର୍ ସମ୍ବଲପୁର ଷ୍ଟେସନ୍‌ରେ ଛାଡ଼ିଦେବା ଲାଗି ଯାଇଥିଲା। ଟ୍ରେନ୍ ସମ୍ବଲପୁର ଛାଡ଼ିବା ପରେ ସେ ମୋ ପାଖକୁ ଆସିଥିଲେ ଏବଂ ତାପରେ ଆମର ଗପସପ ।

ଦେବେନ୍ଦ୍ରବାବୁଙ୍କ ସହ ପ୍ରଥମେ କେବେ ଦେଖା ହୋଇଥିଲା ମନେନାହିଁ, ମାତ୍ର ସେ ରାଉରକେଲାରେ ଅଧ୍ୟାପନା କରୁଥିବାବେଳେ ଥରେ ମୋତେ ଅତିଥି ଭାବେ ଆମନ୍ତ୍ରଣ କରିଥିଲେ। ତାହା କୋଡ଼ିଏ ବର୍ଷ ତଳର କଥା ହେବ କି କଣ ! ସେହିଦିନୁ ସଂପର୍କ ଦୃଢ଼ ହୋଇଥିଲା। ଏହାପରେ 'ସମ୍ବାଦ ସାହିତ୍ୟକୋଷ' କାର୍ଯ୍ୟକ୍ରମ ଆରମ୍ଭ ହେଲା। ପ୍ରଥମେ ପ୍ରସ୍ତାବ ଥିଲା ୧୯୮୪ରେ ପ୍ରକାଶନ ଆରମ୍ଭ ହୋଇଥିବା 'ସମ୍ବାଦ'ର ରଜତ ଜୟନ୍ତୀ ବର୍ଷ (୨୦୦୯)ରେ ଏହି 'ସାହିତ୍ୟକୋଷ' ପ୍ରକାଶିତ ହେବ। ସଂପାଦନା ମଣ୍ଡଳୀରେ ଥିଲେ ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟ, ପ୍ରଫେସର ଦାଶରଥି ଦାସ, ଦେବେନ୍ଦ୍ର କୁମାର ଦାଶ ଏବଂ ଗୌରାଙ୍ଗ ଚରଣ ଦାଶ। ଏହା ଏକ ବିରାଟ କାର୍ଯ୍ୟ। ତେଣୁ ୨୦୦୯ରେ ତାହା ସଂପୂର୍ଣ୍ଣ ହୋଇପାରିଲା ନାହିଁ। ତାହା ପ୍ରକାଶ ପାଇଲା ୨୦୧୮ରେ। ସେହି ସମୟରେ ସଂପର୍କ ଅଧିକ ଦୃଢ଼ ହେଲା। ମଝିରେ ସେ ଭୁବନେଶ୍ୱରର କମଳା ନେହରୁ ମହାବିଦ୍ୟାଳୟରେ ବରିଷ୍ଠ ଅଧ୍ୟାପକ ଭାବେ ଆସି ଯୋଗ ଦେଇଥିଲେ। ସେଇଠିକୁ ମଧ୍ୟ ସେ ମୋତେ ଥରେ ଅତିଥି ଭାବେ ଆମନ୍ତ୍ରଣ କରି ନେଇଥିଲେ। ଏସବୁ ଉଲ୍ଲେଖ କରିବାର କାରଣ, କାହିଁକି କେଜାଣି ସେ ମୋତେ ଖୁବ୍ ଶ୍ରଦ୍ଧା କରୁଥିଲେ। ଅନ୍ୟପକ୍ଷରେ, ତାଙ୍କର ମୌଳିକ ଦୃଷ୍ଟିଭଙ୍ଗୀ ପାଇଁ ସେ ମୋ ଭଳି ଅଧିକାଂଶ ସାହିତ୍ୟ ଅନୁରାଗୀଙ୍କର ଖୁବ୍ ପ୍ରିୟ ଥିଲେ। ଆଧୁନିକ, ବୈଜ୍ଞାନିକ ଓ ମୌଳିକ ଦୃଷ୍ଟିକୋଣ ତାଙ୍କୁ ଗବେଷକମାନଙ୍କ ଭିତରେ ଆଗଧାଡ଼ିରେ ରଖୁଥିଲା।

ମୋର ମନେପଡୁଛି, ତାଙ୍କରି ଉତ୍ସାହଯୋଗୁଁ  କେନ୍ଦ୍ର ସାହିତ୍ୟ ଏକାଡେମୀରେ ମୁଁ ଆବାହକ ଥିଲାବେଳେ ରାଉରକେଲାର ପ୍ରଗତି ପାଠାଗାର ମିଳିତ ସହଯୋଗରେ 'ସାହିତ୍ୟ ଓ ବିସ୍ଥାପନ' ପ୍ରସଙ୍ଗରେ ଏକ ସେମିନାର୍ ହୋଇଥିଲା । ସେ ଏ କାର୍ଯ୍ୟରେ ସଂପୂର୍ଣ୍ଣ ସହଯୋଗ କରିଥିଲେ । ତାଙ୍କର ଆଗ୍ରହ ଥିଲା, ପ୍ରଗତି ପାଠାଗାର କେନ୍ଦ୍ର ସାହିତ୍ୟ ଏକାଡେମୀର ଏକ ସହବନ୍ଧିତ ଅନୁଷ୍ଠାନର ସ୍ୱୀକୃତି ଲାଭକରୁ । ସେଥିପାଇଁ ସେ କିଛି ପ୍ରାରମ୍ଭିକ ପଦକ୍ଷେପ ମଧ୍ୟ ନେଇଥିଲେ ।

ଦେବେନ୍ଦ୍ରବାବୁ ଜଣେ ସ୍ପଷ୍ଟବାଦୀ ବୁଦ୍ଧିଜୀବୀ । ସେ ମନରଖା କଥା କହି ଜାଣି ନ ଥିଲେ, ଅଥଚ କାହାରିକୁ ଅସମ୍ମାନ କରିବା ତାଙ୍କର ସ୍ୱଭାବବିରୁଦ୍ଧ ଥିଲା । ଅଗଷ୍ଟ ଏଗାର ଟ୍ରେନ୍ ଯାତ୍ରା ସମୟରେ ସେ ବିଭିନ୍ନ ବ୍ୟକ୍ତି ଓ ଅନୁଷ୍ଠାନ ସମ୍ବନ୍ଧରେ ତାଙ୍କର ମନକଥା କହିଥିଲେ । ତାଙ୍କ ନିଜ ପରିବାର, ପିଲାମାନଙ୍କ ନିଯୁକ୍ତି ଓ କାହିଁକି ସେ ସମୟ ପୂର୍ବରୁ ଅବସର ନେଇଗଲେ, ସେ ସମ୍ବନ୍ଧରେ ମଧ୍ୟ କିଛି କହିଥିଲେ । କଥା ସରି ନ ଥିଲା, ଭୁବନେଶ୍ୱର ଆସିଗଲା । ଟ୍ରେନ୍‌ଟି ସେଦିନ ଛଅ ନମ୍ବର ପ୍ଲାଟ୍‌ଫର୍ମରେ ଆସି ରହିଥିଲା । ମୋ ହାତରେ ଓଜନିଆ ବ୍ୟାଗ୍‌ଟେ ଥିବାରୁ ମୁଁ ଟିକିଏ ପଛରେ ରହିଯାଇଥିଲି । ଏକ ନମ୍ବର ପ୍ଲାଟ୍‌ଫର୍ମରେ ପହଞ୍ଚି ମୁଁ ଦେବେନ୍ଦ୍ରବାବୁଙ୍କୁ ଖୋଜିଥିଲି । ସେତେବେଳକୁ ରାତି ସାଢ଼େଦଶ ପାଖାପାଖି । ଘଣ୍ଟାଏ ପାଖାପାଖି ବିଳମ୍ବ ଥିଲା ସେଦିନର ଟ୍ରେନ୍ । ମୋର ଅଭିପ୍ରାୟ ଥିଲା, ଦେବେନ୍ଦ୍ରବାବୁଙ୍କୁ ତାଙ୍କ ଆପାର୍ଟମେଣ୍ଟ ପାଖରେ ଛାଡ଼ିଦେଇ ମୁଁ ବରମୁଣ୍ଡା ଆସିବି । ମାତ୍ର ସେତେବେଳକୁ ସେ ଷ୍ଟେସନ୍‌ରୁ ଚାଲିଯାଇଥିଲେ । ତାଙ୍କ ସହ ଦେଖା ହେଲାନାହିଁ ।

ବର୍ଷାଯୋଗୁଁ ଶ୍ରାବଣ ପୂର୍ଣ୍ଣିମା ଆକାଶରେ ସେଦିନ ଚନ୍ଦ୍ର ଦିଶୁ ନ ଥିଲେ, ଷ୍ଟେସନ୍‌ର ଭିଡ଼ ଓ କୋଳାହଳ ଭିତରେ ଦେବେନ୍ଦ୍ର ମଧ୍ୟ ଅଦୃଶ୍ୟ ହୋଇଯାଇଥିଲେ । ଚନ୍ଦ୍ର ପୁଣି ଆସିବ, ପୂର୍ଣ୍ଣିମା ବି ଆସିବ, ମାତ୍ର ଦେବେନ୍ଦ୍ର ଆଉ ଆସିବେ ନାହିଁ ।

୨୦୨୨ ଶ୍ରାବଣର ଏଇ ଶୂନ୍ୟତା ଜୀବନର ଅବଶିଷ୍ଟ କାଳ ସାଥୀରେ ରହିଥିବ ।

*'ସମ୍ବାଦ', ଭୁବନେଶ୍ୱର*

ହୃଷୀକେଶ ମଲ୍ଲିକ

# ସାରସ୍ୱତ ବନ୍ଧୁ ଦେବେନ୍ଦ୍ର ଦାଶ

ଗତ ଅଗଷ୍ଟ ମାସ ୨୫ ତାରିଖ ଗୁରୁବାର ମଧ୍ୟାହ୍ନରେ ଜାଣିଲି, ଅଗ୍ରଜ ସାରସ୍ୱତ ବନ୍ଧୁ ଦେବେନ୍ଦ୍ର ଦାଶ ଚାଲିଗଲେ। ଏ ଖବରଟି ଶୁଣି ଆକାଶରୁ ଖସିପଡ଼ିଲା ପରି ଲାଗିଲା। ନା, ଏହା ବିଶ୍ୱାସଯୋଗ୍ୟ ନୁହେଁ। କିନ୍ତୁ ସତ୍ୟ ସବୁବେଳେ ସତ୍ୟ। ପରେ ନିଃସନ୍ଦେହ ହେଲି ଯେ ସତରେ ଦେବେନ୍ଦ୍ରବାବୁ ଚାଲିଗଲେ। ସଙ୍ଗେସଙ୍ଗେ 'ଓଡ଼ିଶା ସାହିତ୍ୟ ଏକାଡେମୀ'ରେ ଏକ ଶୋକସଭାର ଆୟୋଜନ ହେଲା ଓ ଆମେ ଏକାଡେମୀ ପରିବାରର ଲୋକେ ସ୍ୱର୍ଗତ ଆତ୍ମା ପ୍ରତି ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଜଣାଇଲୁ। ତା'ପରେ ମନଭିତରେ ଦେବେନ୍ଦ୍ରବାବୁ ନାନା ଭାବେ ସାକାର ହୋଇଉଠିଲେ। ସଂପୂର୍ଣ୍ଣ ସୁସ୍ଥ ଥାଇ (ଆପାତଃ ଦୃଷ୍ଟିରୁ) ହଠାତ୍ କ'ଣ ଟିକିଏ ହୋଇଯିବାରୁ ଡାକ୍ତରଖାନା ଯାଇ ସେ ହୃଦ୍‌ଘାତର ଶିକାର ହେଲେ ଓ ଅକୁହାବୋଲା ଆମ ଗହଣରୁ ବିଦାୟ ନେଇଗଲେ।

ମୋ' ମତରେ ଆମ ସମକାଳର ସାହିତ୍ୟ-ସମାଲୋଚକଙ୍କ ମଧ୍ୟରେ ଦେବେନ୍ଦ୍ରବାବୁ ଥିଲେ ଗୋଟେ ଅସଲି ସୁନା। ଯେଉଁ ବିଷୟରେ ଲେଖୁଥିଲେ, ଛେନାରୁ ଚୋପା ଛଡ଼େଇ ଲେଖୁଥିଲେ। ନାନା ପାଠାଗାର, ଅଭିଲେଖାଗାର, ବ୍ୟକ୍ତି-ବଳୟ-ଖୋଜାଖୋଜି କରି ସେ ତାଙ୍କ ଗବେଷଣାକୁ ଉପଯୁକ୍ତ ତଥ୍ୟଦ୍ୱାରା ପୁଷ୍ଟ କରୁଥିଲେ। ତାଙ୍କର କୌଣସି ଲେଖାରେ ସେ ଉପରଠାଉରିଆ କେବେ ବି ନଥିଲେ। ରାଧାନାଥ ରାୟ ଓ ନଗେନ୍ଦ୍ରବାଳାଙ୍କ ସଂପର୍କରେ ଯେଉଁ ତଥ୍ୟରାଜିର ସେ ଉଦ୍‌ଘାଟନ କରିଯାଇଛନ୍ତି, କବି ବ୍ରଜନାଥ ରଥଙ୍କ ଛଡ଼ା ଅନ୍ୟ କାହାରି ଲେଖାରେ ସେ ପ୍ରକାର ମୌଳିକତା ମୁଁ ଲକ୍ଷ୍ୟ କରି ନାହିଁ। ଓଡ଼ିଆ ସାହିତ୍ୟର ପୁନଃ ଅଧ୍ୟୟନ କରି ଅଧ୍ୟୟନ କାଳରେ ସେ ଲକ୍ଷ୍ୟ କରିଥିବା କେତେକ ତ୍ରୁଟିର ଯେଉଁ ସଂଶୋଧନ କରିଛନ୍ତି, ତାହା ଓଡ଼ିଆ ସାହିତ୍ୟ ଇତିହାସର ନବନିର୍ମାଣରେ ମୂଲ୍ୟବାନ ଆଧାର ହୋଇଉଠିଛି। ତାଙ୍କର ପ୍ରଧାନ ଗ୍ରନ୍ଥଗୁଡ଼ିକ ମଧ୍ୟରେ 'ଉତ୍କଳ ସମ୍ମିଳନୀ: ୧୮୦୩-୧୯୩୬', 'ଫକୀରମୋହନ ସେନାପତିଙ୍କ ଗଳ୍ପ ସମଗ୍ର' ରାଧାନାଥ, ଫକୀରମୋହନ, ଗୋପବନ୍ଧୁ ଓ

ମଧୁସୂଦନ ଗ୍ରନ୍ଥାବଳୀର ସଂପାଦନା ବିଶେଷ ତାତ୍ପର୍ଯ୍ୟ ବହନ କରେ। 'ରାମକୃଷ୍ଣ କାବ୍ୟ ସଂଗ୍ରହ'ର ମଧ୍ୟ ସେ ସଂପାଦନା କରିଛନ୍ତି। ନନ୍ଦକିଶୋର ଓ ଗଙ୍ଗାଧରଙ୍କ କବିତ୍ୱର ଯେଉଁ ବିରଳ ଚର୍ଚ୍ଚା ସେ କରିଯାଇଛନ୍ତି, 'ଫୁଲ ଫୁଟିବାର କାହାଣୀ' ଓ 'ଗଙ୍ଗାଧର: କବିତା ଓ କବିଆତ୍ମା' ଗ୍ରନ୍ଥଦ୍ୱୟ ତା'ର ପ୍ରମାଣ। ଓଡ଼ିଆ ସାହିତ୍ୟର ସଂଶୟମୁକ୍ତ କାଳ ନିର୍ଣ୍ଣୟ, ନବ ବ୍ୟାଖ୍ୟା ଓ ସାରସ୍ୱତ ସ୍ରଷ୍ଟାମାନଙ୍କର 'ଜୀବନ ଚରିତ' ପ୍ରଣୟନରେ ତାଙ୍କ ସରି ହେବାଭଳି ସମାଲୋଚକ ଓଡ଼ିଆ ସାହିତ୍ୟରେ କ୍ୱଚିତ୍ ପରିଦୃଷ୍ଟ ହୁଅନ୍ତି।

ବିଶିଷ୍ଟ ଲେଖକ ଓ ସାହିତ୍ୟ ସମାଲୋଚକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କର ଚଳିତବର୍ଷ ମେ' ମାସ ୨୯ ତାରିଖରେ ଯେଉଁ ଜନ୍ମ ଶତବାର୍ଷିକୀ ସମାରୋହ ସମ୍ବଲପୁରଠାରେ ଅନୁଷ୍ଠିତ ହୋଇଥିଲା (ଯାହାର ଆୟୋଜକ ଥିଲେ ଓଡ଼ିଶା ସାହିତ୍ୟ ଏକାଡେମୀ) ତା'ର ବହୁ ଶ୍ରେୟ ଦେବେନ୍ଦ୍ରବାବୁଙ୍କର ହିଁ ପ୍ରାପ୍ୟ ଥିଲା। ସେ ଓ ମୁଁ ଏକାଡେମୀରେ ବସି ସମୁଦାୟ ସଂପାନର ଖସଡ଼ା ପ୍ରସ୍ତୁତ କରିଥିଲୁ। କାହାକାହାକୁ ପ୍ରବନ୍ଧପାଠପାଇଁ ଡକାଯିବ- ତାହାର ତାଲିକା କରିଥିଲୁ। ଆରମ୍ଭରୁ ଗୋବିନ୍ଦଚନ୍ଦ୍ରଙ୍କ କନ୍ୟା ଓ ଜାମାତାଙ୍କୁ ନେଇ ଦେବେନ୍ଦ୍ରବାବୁ କିପରି ଏହି ସମାରୋହ ଉନ୍ନତମାନର ହୋଇପାରିବ, ମୋ ସହ ତାଳମେଳ ରଖି, କାନ୍ଧକୁ କାନ୍ଧ ମିଳାଇ କାର୍ଯ୍ୟ କରିଥିଲେ। ମେ ୨୮ ତାରିଖରେ ଆମେ ସାଙ୍ଗ ହୋଇ ସମ୍ବଲପୁର ଯାଇଥିଲୁ। ବାଟସାରା ସେ ତାଙ୍କ ଜୀବନର କେତେ ଯେ ଅସରା ଗପ ଗପିଥିଲେ, ତା'ର ହିସାବ ନାହିଁ। ଅଧ୍ୟାପନାପାଇଁ ଚୟନବୋର୍ଡରେ ନିଜର ଶିକ୍ଷକ ସର୍ବନିୟନ୍ତା ଥାଇ ତାଙ୍କୁ କିପରି ଶିଶୁପାଳ ହେବାକୁ ପଡ଼ିଥିଲା ଓ ଏହା ସତ୍ତ୍ୱେ କିପରି ତାଙ୍କର କିଛି କ୍ଷୋଭ ନଥିଲା- ତାହା ସେ ମୋତେ ଗୋଟିଗୋଟି କରି କହିଥିଲେ।

କଥା ପ୍ରସଙ୍ଗରେ ବି କହିଥିଲେ ନିଜ ଜନ୍ମିତ ଗାଁ (ଜଗତସିଂହପୁର ଜିଲ୍ଲାର ମାଛଗାଁ ପାଖ ବୀରନରସିଂହପୁର ଶାସନ)ର କେତେ କାହାଣୀ। କିପରି ସେ ସେଠାରେ ପାଠାଗାର ଓ ଦେବାଳୟମାନ ସ୍ଥାପନ କରି ନିତ୍ୟ ପୁରାଣପାଠର ବ୍ୟବସ୍ଥା ନିଜ ବ୍ୟୟରେ କରିଛନ୍ତି ଓ ମଝିରେ ମଝିରେ ଗାଁକୁ ଯାଇ ଗାଁ ଲୋକଙ୍କ ସହ ସଂପର୍କ ରଖିଛନ୍ତି, ତାହା ବଖାଣି ଥିଲେ। ସେ ରହୁଥିବା ଫ୍ଲାଟ୍ ଉପର ମହଲାରେ ତାଙ୍କ ପଢ଼ାଘର। ସେଠି ସେ ପଢ଼ାପଢ଼ି ଓ ଲେଖାଲେଖି କରନ୍ତି। ମଧ୍ୟାହ୍ନ ଭୋଜନ ପରେ ପତ୍ନୀଙ୍କ ସହ ସୁଖଦୁଃଖ ହେବାରେ ତାଙ୍କ ସମୟ କଟେ। ତାଙ୍କ ଘର ଓ ଗାଡ଼ି କିଣାର କାହାଣୀ ମଧ୍ୟ ସମ୍ବଲପୁର ଯାତ୍ରା କାଳର ଗପସପରୁ ସେଦିନ ବାଦ ପଡ଼ିନଥିଲା। ଏତେ ନିଷ୍କପଟ, ଖୋଲା ହୃଦୟର ଲୋକ ଖୁବ୍ କମ୍ ଅଛନ୍ତି ଆଜିର ଯୁଗରେ।

୬୮ ବର୍ଷର ଏକ ଚଳମାନ ଜ୍ଞାନ-ତପସ୍ୱୀଙ୍କର ଏ ଅକାଳଅସ୍ତ ବରଦାସ୍ତ କରିବାର ନୁହେଁ। ତାଙ୍କ ଶୂନ୍ୟସ୍ଥାନ ନିକଟ ଭବିଷ୍ୟତରେ ପୂରଣ ହେବ- ଏ ଆଶା ଦିଶୁନାହିଁ। ତାଙ୍କୁ ମୋର ଓ ମୋ' ଭାଷା-ସାହିତ୍ୟର ଶତଶତ ପ୍ରଣାମ !

*ଭୁବନେଶ୍ୱର*

ବସନ୍ତ ତ୍ରିପାଠୀ

# ୟା' ପରେ କ'ଣ ?

ଟଙ୍କା ପଇସାର ଋଣ ଟଙ୍କାପଇସାରେ ଶୁଝା ଯାଇପାରେ, କିନ୍ତୁ ଉପକାର ଋଣ ଶୁଝିବାକୁ ଅନେକ ଜନ୍ମର ତପସ୍ୟା ଲୋଡ଼ା ହୁଏ । ଏଇ କଥାଟା ମୋ' ମନକୁ ବାରମ୍ବାର ଆନ୍ଦୋଳିତ କଲା ଯେତେବେଳେ ଶୁଣିଲି ଓଡ଼ିଆ ସମାଲୋଚନାର ମହାଦ୍ରୁମ, ସଂକଳକ ଓ ଗବେଷକ ଦେବେନ୍ଦ୍ର କୁମାର ଦାଶ ଆଉ ନାହାନ୍ତି । ଦଶ/ବାରବର୍ଷ ତଳେ, ତାଙ୍କ ଦ୍ୱାରା ସଂପାଦିତ ଫକୀରମୋହନ ସେନାପତିଙ୍କ 'ଆତ୍ମଚରିତ' ଅନୁବାଦ କାଳରେ ତାଙ୍କ ସହ ମୋର ପ୍ରଥମ ପରିଚୟ । ମୋର ଦୁଇଟି ଅନୁବାଦ ପୁସ୍ତକ 'ଟୀକା ଗୋବିନ୍ଦଚନ୍ଦ୍ର' ଓ 'ମଥୁରାମଙ୍ଗଳ' ତାଙ୍କ ଉଦ୍ୟମରେ ପ୍ରଗତି ଉତ୍କଳ ସଂଘ ଦ୍ୱାରା ପ୍ରକାଶିତ ହୋଇଥିଲା । କହିରଖେ, ମୋ'ଦ୍ୱାରା ଅନୂଦିତ ସମସ୍ତ ବହି ମୁଁ ତାଙ୍କଠାରୁ ହିଁ ଧାର ସୂତ୍ରରେ ନେଇଥାଏ । 'ଲଛମା' ଓ 'ପ୍ରାୟଶ୍ଚିତ'ର ଅନୁବାଦ ପଲ ସେଣ୍ଟ ପିଅରଙ୍କ ସହଯୋଗରେ ଶେଷ କଲାପରେ ଆଉ କ'ଣ କରିପାରେ ବୋଲି ତାଙ୍କୁ ପ୍ରଶ୍ନ କଲି ଓ ପ୍ରାଚୀନ ସାହିତ୍ୟ ପ୍ରତି ମୋର ଆଗ୍ରହ ବ୍ୟକ୍ତ କଲି । ସେ ମୋତେ 'ବିଚିତ୍ର ରାମାୟଣ'ର ଉପାଦେୟତା ସମ୍ବନ୍ଧରେ ଏକ ଦୀର୍ଘ ଭାଷଣ ଶୁଣାଇଲେ । ସଚ୍ଚିଦାନନ୍ଦ ମିଶ୍ରଙ୍କ ଦ୍ୱାରା ସଂପାଦିତ ଓ ସିଦ୍ଧେଶ୍ୱର ଦାସ (ଶାରଳା ଦାସ)ଙ୍କ ଦ୍ୱାରା ରଚିତ ବହିଟି ମିଳୁ ନଥିବାରୁ ସେ ମୋତେ 'ଶାରଳା ରଚନା ସଂଗ୍ରହ' (ଯତୀନ୍ଦ୍ର ମହାନ୍ତି ସଂପାଦିତ) ବହିଟି ଦେଲେ ଯେଉଁଥିରେ 'ବିଚିତ୍ର ରାମାୟଣ' ସନ୍ନିବେଶିତ ଥିଲା ।

ଏ ବହିଟିର ସଂଶୋଧନ ଓ ପୁନର୍ମୁଦ୍ରଣପାଇଁ ସେ ଦୁଇବର୍ଷ କାଳ ଅକ୍ଳାନ୍ତ ପରିଶ୍ରମ କରିଥିଲେ ଯଦିଓ କୌଣସିଠାରେ ନିଜର ନାମ ଉଲ୍ଲେଖ କରିନଥିଲେ । ଅପୂର୍ବ ସଂଯୋଗର କଥା, ଯେଉଁଦିନ ଉକ୍ତ ବହିର ଇଂରାଜୀ ଅନୁବାଦ ଜବାହରଲାଲ ନେହେରୁ ବିଶ୍ୱବିଦ୍ୟାଳୟ

ଦ୍ୱାରା ୨୦୨୦ରେ ପ୍ରକାଶ ପାଇଲା, ଠିକ୍ ସେହିଦିନ ତା'ର ଦ୍ୱିତୀୟ ଓଡ଼ିଆ ସଂସ୍କରଣ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହେଲା। ଦୁଇଟିଯାକ ବହି ପାଖକୁ ପାଖ ରଖି ସେ ଆନନ୍ଦରେ ଉଚ୍ଛୁଳି ପଡ଼ିଲେ ଓ ଏହାକୁ ଓଡ଼ିଆ ସାହିତ୍ୟର ବିଜୟ ଦିବସ ବୋଲି କହିଲେ। ସବୁ ଅନୁଭବକୁ ସୀମା ଭିତରେ ରଖୁଥିବା ଲୋକଟି ଏତେ ଖୁସି ହୋଇପାରେ, ତାହା ମୁଁ ପ୍ରଥମ କରି ଦେଖିଲି। ତାଙ୍କର ପ୍ରଶଂସାର ଖଣ୍ଡା ମୋ' ବେକରେ ପଡ଼ିବା ଆଗରୁ ମୁଁ ବାଧାଦେଇ କହିଲି, "ଛାଡ଼ନ୍ତୁ ସେସବୁ। ଏବେ କୁହନ୍ତୁ ୟା'ପରେ କ'ଣ ?" ସେ ବହି ଥାକରୁ ବହିଟିଏ କାଢ଼ି ମୋ' ହାତକୁ ବଢ଼ାଇ ଦେଲେ। ତାହା ଥିଲା, କୃଷ୍ଣଚରଣ ସାହୁ ସଂପାଦିତ ଓ ଶାରଳା ଦାସଙ୍କ ଦ୍ୱାରା ରଚିତ 'ଚଣ୍ଡୀ ପୁରାଣ'। ସୁଖର କଥା, ଦୁଇମାସ ତଳେ ତା'ର ଇଂରାଜୀ ଅନୁବାଦ ଜବାହରଲାଲ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରକାଶ ପାଇଲା। ଜୁଲାଇ ୩୦ରେ ସେ ଫୋନ୍ କଲେ ଓ ମୋର ପ୍ରକାଶକଙ୍କ ଠିକଣା ମାଗିଲେ। ମୁଁ 'ଚଣ୍ଡୀ ପୁରାଣ' କଥା କହିବାରୁ ସେ କହିଲେ, "ମୁଁ ଏବେ ଅନ୍ୟାନ୍ୟ କାର୍ଯ୍ୟକ୍ରମରେ ବ୍ୟସ୍ତ ଅଛି। ମୁଁ ଖବର ଦେଲେ ପଠାଇବେ।" ବାସ୍, ଖବର ଖବରରେ ରହିଗଲା। ବହିଟି ଦେଖିବାକୁ ସେ ଆଉ ରହିଲେ ନାହିଁ।

କହିବା ବାହୁଲ୍ୟ ଯେ ମୋର ସମଗ୍ର ଅନୁବାଦ କର୍ମର ସେ ପଥପ୍ରଦର୍ଶକ ଥିଲେ ଓ ତାଙ୍କର ପରାମର୍ଶରେ ହିଁ ମୁଁ ମୋର ଯୋଜନା ସ୍ଥିର କରୁଥିଲି। ଅର୍ଥର ଦାରିଦ୍ର୍ୟ ନୁହେଁ, ପ୍ରତିଭାର ଦାରିଦ୍ର୍ୟ ଗୋଟିଏ ରାଜ୍ୟର, ଦେଶର ଅଧିକ କ୍ଷତି କରିଥାଏ। କଠୋର ପରିଶ୍ରମ, ସାହିତ୍ୟନିଷ୍ଠା ଓ ଯଶ ପ୍ରତି ଅନାସକ୍ତ ଭାବ ହିଁ ଥିଲା ତାଙ୍କ ସାଧନା ତଥା ଜୀବନର ମୂଳମନ୍ତ୍ର। ବହିର ବଗିଚାରେ ସେ ଥିଲେ ରସପିପାସୁ ଚିତ୍ରିତ ପ୍ରଜାପତି। ଛାତ୍ରଛାତ୍ରୀ ଓ ଗବେଷକମାନଙ୍କର ପ୍ରେରଣାର ଉତ୍ସ।

ଆଜି ତାଙ୍କର ବିୟୋଗରେ ମୁଁ ମର୍ମାହତ। ଯେଉଁ ଆଲୁଅ ଟିକକ ମୋତେ ଅନ୍ଧାରରେ ବାଟ ଦେଖାଉଥିଲା, ସେ ଆଜି ନିର୍ବାପିତ। ମୋ'ଠାରୁ ଅନେକ ସାନ ସେ। ସେ ଆଗ ଚାଲିଗଲା। ଭାଇନାକୁ ଋଣୀ କରିଗଲା। କାହାକୁ ପଚାରିବି, "ହଇଓ ଦେବେନ୍ଦ୍ରବାବୁ! ଏବେ କୁହ ୟା'ପରେ କ'ଣ ?"

*ଭୁବନେଶ୍ୱର*

## ପ୍ରୀତୀଶ ଆଚାର୍ଯ୍ୟ

# ମନେପଡ଼େ

ଦେବେନ୍ଦ୍ର କୁମାର ଦାଶଙ୍କ ସାଙ୍ଗରେ ମୋର ପରିଚୟ ୨୦୦୬ ମସିହାରେ । ଘଈଞ୍ଚ, ନୂଆଦିଲ୍ଲୀ ପାଇଁ ମତେ ଗୋପବନ୍ଧୁ ଦାସଙ୍କ ଲେଖା ସମୂହର ଏକ ସୀମିତ ସଂକଳନ ପ୍ରସ୍ତୁତ କରିବାର ଥାଏ । ସେହି ପ୍ରକ୍ରିୟାରେ ଜଣେ ବନ୍ଧୁ ମୋତେ ତାଙ୍କ ଫୋନ ନମ୍ବର ଯୋଗାଇଦେଲେ । ତା ପରଠାରୁ ଅନେକ ଥର ତାଙ୍କ ସହିତ ଫୋନରେ କଥା ହୋଇଛି, ଭୁବନେଶ୍ୱରସ୍ଥିତ ତାଙ୍କ ଘରକୁ ଯାଇଛି, ଏକାଧିକ ସଭାସମିତିରେ ଭେଟହୋଇଛି, କେବେ ତାଙ୍କୁ ବକ୍ତା ଭାବରେ ଶୁଣିଛି ତ, ଆଉ କେବେ ମତେ ସେ ବକ୍ତା ଭାବରେ ଶୁଣିଛନ୍ତି । ମନ କହିଛି, ଆହୁରି କିଛି ବେଳ ଆଲୋଚନା କରିଥାନ୍ତି କି ? ଅନେକ ସମୟରେ ସେ ବକ୍ତା ଭାବରେ ମତେ ଯେତେ ଆକୃଷ୍ଟ କରିଛନ୍ତି, ତା ଠାରୁ ଢେର ଅଧିକ ମାତ୍ରାରେ ଆବିଷ୍ଟ କରିଛନ୍ତି ବ୍ୟକ୍ତିଗତ ଆଳାପରେ । ସାଧାରଣତଃ, ଶ୍ରୋତା ଭାବରେ ଶୁଣିଲେ ସଭାରେ ଅନେକ ପ୍ରଶ୍ନର ଉତ୍ତର ମିଳିପାରେନା । ବ୍ୟକ୍ତିଗତ ଆଲୋଚନା ବେଳେ ଯଦି ଅପର ବ୍ୟକ୍ତି ଖୁବ ଅଧିକ ଜାଣିଥିବାର ଗର୍ବ ପୋଷଣ ନ କରନ୍ତି, ନିଜର ହୋଇ ଅନେକ ପ୍ରଶ୍ନ ପଚାରି ହୁଏ । ସେଥିପାଇଁ ଉଭୟ ବ୍ୟକ୍ତିଙ୍କ ସମସ୍ତରରେ ରହିବା ଜରୁରୀ ହୋଇପଡେ । ଦୁହିଁଙ୍କ ମଧ୍ୟରୁ ଯଦି ଜଣେ କେହି କୁଣ୍ଠାଗ୍ରସ୍ତ ହୁଅନ୍ତି, କିମ୍ୱା ଖୁବ ଅଧିକ ଜାଣିଥିବାର ଗର୍ବପୋଷଣ କରନ୍ତି । ଆଲୋଚନା ଆନନ୍ଦଦାୟୀ ହୋଇପାରେନା ପରସ୍ପରପାଇଁ । ଦେବେନ୍ଦ୍ରବାବୁ ଅନେକ କଥା ଜାଣିଥିଲେ, କିନ୍ତୁ କେବେ ବି ସମ୍ମୁଖରେ ବସିଥିବା ଏବଂ ଆଗ୍ରହରେ ଶୁଣୁଥିବା ବ୍ୟକ୍ତିକୁ 'ତୁମେ ଜାଣିନାହଁ' ସ୍ତରୀୟ ବୋଲି ମନେ କରୁ ନଥିଲେ । ତାଙ୍କ ସହିତ ଥରେ ଭେଟ ହେଲେ, ଅନେକ ବହି ପଢିଯିବାର ଆତ୍ମସନ୍ତୋଷ ମିଳୁଥିଲା।

ଦେବେନ୍ଦ୍ରବାବୁଙ୍କ ପାଠପଢା ସମ୍ବଲପୁରରେ, ବିଶ୍ୱଭାରତୀରେ ଉଚ୍ଚତର ଗବେଷଣା, ରାଉରକେଲାରେ ଅଧ୍ୟାପନା ।  ଘର ପୂର୍ବ ଓଡିଶାରେ । ସମ୍ଭବତଃ ଏହି କାରଣରୁ କେବଳ

କଥାରେ ନୁହେଁ, ଆଚରଣରେ ମଧ୍ୟ ଏକ ସମାନ୍ୱେଷୀ ଭାବ ରଖୁଥିଲେ। ଏକଥା ଖୁବ ଭଲ ଭାବରେ ପ୍ରତିଥର କଥାବାର୍ତ୍ତା ବେଳେ ଅନୁଭବ କରିହେଉଥିଲା । ଓଡ଼ିଶା ଭାଷା ଓ ସଂସ୍କୃତିକୁ ନେଇ ମନରେ ଗର୍ବ ଥିଲା । କିନ୍ତୁ କେବେ ବି ତାହା ବୃଥା ଆସ୍ଫାଳନସ୍ତରୀୟ ନ ଥିଲା । ଜଣେ ଗବେଷକପାଇଁ ଆବଶ୍ୟକ ନିର୍ମୋହି ଭାବ ଏବଂ ବସ୍ତୁନିଷ୍ଠତା ତାଙ୍କଠାରେ ଦେଖି ହେଉଥିଲା । କୌଣସି ବିଷୟ କିମ୍ବା ବ୍ୟକ୍ତିଙ୍କୁ ନେଇ ବିଚାର ପ୍ରକଟ କଲାବେଳେ ସେ ଏକପାଖିଆ ହୋଇ ତର୍କ କରୁ ନଥିଲେ । ଏହି ଯୁକ୍ତିନିଷ୍ଠତା ଥିଲା ତାଙ୍କର ଏକ ଅସାଧାରଣ ଗୁଣ । ସେ ଲେଖିକ ଥିଲେ, ଉଚ୍ଚତର ଗବେଷଣାରେ ସର୍ବଦା ଶ୍ରଦ୍ଧା ରଖୁଥିଲେ । ହେତୁବାଦୀ ବିଚାରକ ଥିଲେ ଏବଂ ଅଧ୍ୟୟନ କରୁଥିଲେ । ତଥ୍ୟ ଓ ତତ୍ତ୍ୱ ଅନ୍ୱେଷଣରେ ସେ ବ୍ୟକ୍ତିଗତ ଭାବେ କେତେ ଯେ କଷ୍ଟ ସ୍ୱୀକାର କରିଥିଲେ, ତାହା ତାଙ୍କ କଥାବାର୍ତ୍ତା ଏବଂ ଗବେଷଣା ସାମଗ୍ରୀ ନ ଦେଖିଲେ ବିଶ୍ୱାସ କରିହୁଏନା ।

ଦେବେନ୍ଦ୍ରବାବୁଙ୍କର ଏକ ବିରଳ ଗୁଣ ଥିଲା, ରୋକଠୋକ କହିବା । ମୁଁ ଏକାଧିକ ଥର ଅନୁଭବ କରୁଛି, ଦେଖା ହେଲା ମାତ୍ରକେ ମୋର କୌଣସି ପ୍ରକାଶିତ ଲେଖାର ତ୍ରୁଟି ସବୁ କହିବେ, ପ୍ରଶଂସା କରିବେ ନାହିଁ । ତାଙ୍କ କହିବାର ଢଙ୍ଗରେ ଏତେ ଆତ୍ମୀୟତା ଥାଏ ଯେ, ନିଜ ଭୁଲକୁ ଜାଣିବାକୁ ଅବସର ଦେଇଥିବାରୁ ନିଜକୁ କୃତଜ୍ଞ ଲାଗେ, କେବେ ମନକଷ୍ଟ ହୁଏନା । ମନେହୁଏ, ସେ ନିଜର ବନ୍ଧୁମାନଙ୍କୁ ବୌଦ୍ଧିକ ଦୃଷ୍ଟିରୁ ଶାଣିତ କରିବା ଲାଗି ଯେମିତି ପଣ କରିଥିଲେ । ସେଥିପାଇଁ ଅପ୍ରିୟ ହେବାର ଡର ନଥିଲା ତାଙ୍କ ମନରେ । ମୋର ସ୍ଥୂଳ ବିଚାରରେ ସତ୍ୟ ନାରାୟଣ ରାୟଗୁରୁ, ପରମାନନ୍ଦ ଆଚାର୍ଯ୍ୟ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ତଥା ନୀଳକଣ୍ଠ ଦାସ ଆଦି ଉଚ୍ଚ ଗବେଷକସ୍ତରୀୟ ତର୍କନିଷ୍ଠ ଏବଂ ଯୁକ୍ତନିଷ୍ଠ ବୌଦ୍ଧିକ ବ୍ୟକ୍ତି ଥିଲେ ସେ । ରୋକଠୋକ କହିବା ଅଭ୍ୟାସ ଯୋଗୁଁ, ସେ ପିଏଚ ଡି ଡିଗ୍ରୀ କିମ୍ବା କୌଣସି ପଦପଦବୀ ହାସଲ କରିପାରି ନ ଥିଲେ । ସାଧାରଣ ଅଧ୍ୟାପକ ଭାବରେ ରାଉରକେଲାଠାରେ ଚାକିରି ଆରମ୍ଭ କରି ସେହି ପଦବୀରେ ଭୁବନେଶ୍ୱର କମଳା ନେହେରୁ ମହାବିଦ୍ୟାଳୟରୁ ସେବା ନିବୃତ୍ତ ହୋଇଥିଲେ । କିନ୍ତୁ କଥାବାର୍ତ୍ତା ବେଳେ ଆଦୌ ଲାଗୁ ନଥିଲା ଯେ, ସେ କିଛି ପାଇ ନଥିବାର ଅବସୋସ ମନରେ ପାଳିଛନ୍ତି । ବରଂ ଭୟ ନିବୃତ୍ତ ହୋଇ ଯେତେବେଳେ ଯାହା କହିବାକୁ ଚାହିଛନ୍ତି, ତାହା କହିପାରିଛନ୍ତି । ପରିଣତିକୁ ଭ୍ରୂକ୍ଷେପ ନକରି ମନରେ ଆତ୍ମସନ୍ତୋଷ ରଖିଛନ୍ତି । ଏହି ଆତ୍ମସନ୍ତୋଷ ଥିଲା ସମ୍ଭବତଃ ତାଙ୍କ ବୌଦ୍ଧିକ ଏବଂ ବ୍ୟକ୍ତିକ ଜୀବନର ସବୁଠାରୁ ବଡ ଉପଲବ୍ଧି ।

*ଆଜମୀର, ରାଜସ୍ଥାନ*

ଶୈଳଜ ରବି

# ଆମ ସାହିତ୍ୟ ଚର୍ଚ୍ଚାର ଅନ୍ୟତମ କଲମ୍ବସ୍

ଅବଶ୍ୟ ଏହି କିଛିବର୍ଷ ହେବ ତଳବରଡା ଥାଉ ଥାଉ ଉପର ବରଡାମାନେ ଖସିପଡିବା ଦ୍ରୁତତର ହୋଇଯାଇଛି । ତଥାପି ଅନୁଜ ପ୍ରତିମ ଦେବେନ୍ଦ୍ରବାବୁଙ୍କର ବିନା ନୋଟିସରେ ଏପରି ଅତର୍କିତ ପ୍ରସ୍ଥାନ (ତାହା ପୁଣି ଯେତେବେଳେ ଆହୁରି ଅନେକ କିଛି ଆଶା କରୁଥିଲି, ସେତିକିବେଳେ) ବଡ ବାଧୁଛି ।

ଭାଷା-ସାହିତ୍ୟ-ଗବେଷଣାକ୍ଷେତ୍ରରେ ଦେବେନ୍ଦ୍ରବାବୁଙ୍କ କୋଟୀର ବିଦ୍ୱାନ ହୁଏତ ସାରା ଭାରତରେ ବିରଳ । ଗ୍ରନ୍ଥ ସମ୍ପାଦନା ଅଥବା ସାହିତ୍ୟସମୀକ୍ଷାପାଇଁ ଆବଶ୍ୟକ ବିଭିନ୍ନ ବିଦ୍ୟାଶୃଙ୍ଖଳାରେ ଅଧିଗମ୍ୟତା, ବିରଳ ତଥ୍ୟ ସଂଗ୍ରହ ପାଇଁ ଆବଶ୍ୟକ ପଡୁଥିବା ପ୍ରତ୍ନତତ୍ତ୍ୱବିତ୍ ସୁଲଭ ଶ୍ୱେନଦୃଷ୍ଟି, ଉପଲବ୍ଧ ତଥ୍ୟର ନିର୍ମୋହ ବିଶ୍ଳେଷଣ ପାଇଁ ଆବଶ୍ୟକ ପଡୁଥିବା ଅନ୍ତର୍ଦୃଷ୍ଟି ଏବଂ ସର୍ବୋପରି ସେସବୁର ତର୍କସମ୍ମତ ପଦ୍ଧତିରେ ଉପସ୍ଥାପନପାଇଁ ଆବଶ୍ୟକ ପଡୁଥିବା ପ୍ରକାଶକ୍ଷମତା ଭରପୂର ଭରି ରହିଥିଲା ଦେବେନ୍ଦ୍ରବାବୁଙ୍କ ପାଖରେ ।

ଦୀନକୃଷ୍ଣଙ୍କ ଭାଷାରେ ସମୀକ୍ଷକ ସାହିତ୍ୟର 'ଉପମାତା' । ଓଡିଶାର ଏହି ଉପମାତାମାନଙ୍କ ମଧ୍ୟରେ ମାତୃସୁଲଭ ଶ୍ରଦ୍ଧା, ନିଷ୍ଠା ଏବଂ ଅଙ୍ଗୀକାରପାଇଁ ବାରି ହୋଇପଡୁଥିଲେ ଦେବେନ୍ଦ୍ର । ତାଙ୍କର ଦୁଇ ପ୍ରିୟ ଆଦର୍ଶ ଉତ୍କଳମଣି ଗୋପବନ୍ଧୁ ଏବଂ ଚିତ୍ତଭାଇ (ଚିତ୍ତରଞ୍ଜନ ଦାସ)ଙ୍କ ପରି ସେ ମଧ୍ୟ ଥିଲେ ସମାଜବାଦୀ ମାନବବାଦୀ । ନିଜ ଓଡିଆତ୍ୱପାଇଁ ସେ ଗର୍ବିତ ଥିଲେ । ମାତ୍ର ଓଡିଆମି ଢମମାନଙ୍କଠାରୁ ସେ ଥିଲେ ବହୁ ଦୂରରେ ।

ବିଂଶ ଶତାବ୍ଦୀର ପ୍ରଥମ ପାଦରେ ଗୋପୀନାଥ ନନ୍ଦଶର୍ମା ବସ୍ତୁତଃ ମୂଳଦୁଆ ପକାଇଥିଲେ ଗ୍ରନ୍ଥ ସଂପାଦନା ଓ ପଦ୍ଧତିନିଷ୍ଠ ସାହିତ୍ୟ ସମୀକ୍ଷାର । ଠିକ୍ ୧୦୦ ବର୍ଷ ପରେ ଏକବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଦେବେନ୍ଦ୍ରଙ୍କବାବୁଙ୍କର ଏକ ଗୋଷ୍ଠୀ ଆମ ପ୍ରାଚୀନ ସାହିତ୍ୟର, ବିଶେଷକରି, ଊନବିଂଶ ଶତାବ୍ଦୀର ସାହିତ୍ୟର ପୁନଃମୂଲ୍ୟାୟନର ଏକ ହର୍ମ୍ମ୍ୟ

ତୋଳିଲେ । ସୁଦର୍ଶନ ଆଚାର୍ଯ୍ୟ, ଦେବେନ୍ଦ୍ର କୁମାର ଦାଶ, ଗୌରାଙ୍ଗ ଚରଣ ଦାଶ ଏବଂ ପରବର୍ତ୍ତୀ ସମୟରେ ଫଣୀନ୍ଦ୍ର ଭୂଷଣ ନନ୍ଦଙ୍କର ଏହି ଟିମ୍ ଆମ ସାହିତ୍ୟର ଇତିହାସ ସମ୍ପର୍କରେ ଏବଂ କିଛି ସାହିତ୍ୟିକ ବ୍ୟକ୍ତିତ୍ୱଙ୍କ ସମ୍ପର୍କରେ ଥିବା ଅନେକ ମିଥ୍ ଓ ଅନେକ ଭ୍ରମକୁ ପଦାରେ ପକାଇଛନ୍ତି । ଅନେକ ଐତିହାସିକ ଭ୍ରମକୁ ସୁଧାରିଛନ୍ତି । ଦେବେନ୍ଦ୍ରବାବୁଙ୍କ ଜଣେ ସହଯୋଗୀ ରୂପେ ଯୋଗ ଦେଇଛନ୍ତି ବନାରସ ବିଶ୍ୱବିଦ୍ୟାଳୟର ଇଂରାଜୀ ଅଧ୍ୟାପକ ଦୀପ୍ତିରଞ୍ଜନ ପଟ୍ଟନାୟକ । ବହୁତ କିଛି ଆଶାରଖିଛି ରାଜ୍ୟ ଏମାନଙ୍କଠାରୁ ।

'ଓଡ଼ିଆ ସାହିତ୍ୟ ରୂପକ ଅଜ୍ଞାତ, ଅବଜ୍ଞାତ ରାଜ୍ୟ'ରେ ଲୁଚି ରହିଥିବା ରତ୍ନଭଣ୍ଡାର ଆବିଷ୍କାର ଏବଂ ସେସବୁକୁ ବିଶ୍ୱ ସମ୍ମୁଖରେ ଯଥାଯଥ ଭାବେ ଉପସ୍ଥାପିତ କରିବାନିମିତ୍ତ ହୁଏତ, 'ଦିନେ ହେଲେ ଆସିବ ଗୋଟିଏ ଶୁଭ ମୁହୂର୍ତ୍ତ, ଯେତେବେଳେ ବିଶ୍ୱ ସାହିତ୍ୟର କୌଣସି କଲମ୍ବସ ଆବିର୍ଭାବ ହେବେ...'– ଭକ୍ତିକବି ମଧୁସୂଦନଙ୍କ 'ବସନ୍ତଗାଥା'ର ସମୀକ୍ଷା କରିବାକୁ ଯାଇ ଉପସଂହାରରେ ଏହିଭଳି ଆଶା ପ୍ରକାଶ କରିଥିଲେ ସବୁଜ କବି ଅନ୍ନଦାଶଙ୍କର । ଓଡ଼ିଆ ସାହିତ୍ୟର ସେହି ଅଜ୍ଞାତ, ଅବଜ୍ଞାତ ରାଜ୍ୟ ଅନ୍ୱେଷଣରେ ବାହାରିଥିବା ଉପରୋକ୍ତ ଗୋଷ୍ଠୀର ପୋତଟି ଆଜି ଦିଗହରା ।

ଆଚାର୍ଯ୍ୟ ସୁଦର୍ଶନ ଶଯ୍ୟାଶାୟୀ ଅନ୍ୟତମ କାଣ୍ଡାରୀ ଦେବେନ୍ଦ୍ର ଦିବଂଗତ ।

*ଖାନନଗର, କଟକ*

**ବାବାଜୀ ଚରଣ ପଟ୍ଟନାୟକ**

# ସ୍ମୃତି ଅନୁଭୂତିରେ ଦେବେନ୍ଦ୍ର କୁମାର ଦାଶ

ଓଡିଆ ଭାଷା ସାହିତ୍ୟ ସମାଲୋଚନା ଓ ଗବେଷଣାରେ ନିଦା କାମପାଇଁ ଯେଉଁ କେତେଜଣ ହାତଗଣତି ଲୋକଙ୍କ ନାମ ସ୍ମରଣକୁ ଆସେ, ସେମାନଙ୍କ ମଧ୍ୟରେ ଦେବେନ୍ଦ୍ର କୁମାର ଦାଶ ଜଣେ । ତାଙ୍କ ନାଁ ପଛରେ କିନ୍ତୁ ଡିଗ୍ରୀର ତଥାକଥିତ ଡକ୍ଟରେଟ ଉପାଧି ନଥିଲା । ତାଙ୍କ ସହିତ ମୋର ସମ୍ପର୍କ ଗତ ୪୦ବର୍ଷ । ତେଣୁ ସ୍ମୃତି ଓ ଅନୁଭୂତିରେ ତାଙ୍କ ସମ୍ପର୍କିତ ଅନେକ କଥା । ସବୁ କିନ୍ତୁ ଲେଖାଲେଖି ଓ ପଢାପଢି ସମ୍ପର୍କିତ । ସେ ଥିଲେ ବହୁପାଠୀ ଓ ସାରାତ୍‌ସାର । ପର୍ଯ୍ୟବେକ୍ଷଣ ନିପୁଣ ତଥା ଯୁକ୍ତିପରକ ଅଭିବ୍ୟକ୍ତିରେ ପାରଙ୍ଗମ । ବହୁ ସମୟ, ଶ୍ରମ ଓ ନିଜର ଧିଶକ୍ତି ଖଟାଇ ସେ ଅନେକ ମୂଲ୍ୟବାନ କୃତିର ସମ୍ପାଦନା କରିଛନ୍ତି । ତହିଁର ଅପୂର୍ବ ମୁଖବନ୍ଧ ପଢି ଯେ କେହି ତାଙ୍କ ବିଦ୍‌ବତ୍ତାରେ ବିମୁଗ୍ଧ ହୁଅନ୍ତି ।

ସଭାସମିତିକୁ ବକ୍ତା ହୋଇ ରାଉରକେଲା ଗଲେ ତାଙ୍କ ସହ ସାକ୍ଷାତ ନିଶ୍ଚିତ ଥିଲା ମୋର । ଏକଦା ପ୍ରଗତି ଉତ୍କଳ ସଂଘର ଗୋଟିଏ ସଭାରେ ମଧୁସୂଦନ ଦାସଙ୍କ ସମ୍ବନ୍ଧୀୟ ଆଲୋଚନାରେ ମୁଁ ବକ୍ତା ଭାବରେ ଯୋଗ ଦେଇଥିଲି । ତା ପରଦିନ ସେ ତାଙ୍କ ବସାଘରେ ଅତିଥିମାନଙ୍କ ପାଇଁ ମଧ୍ୟାହ୍ନଭୋଜନର ଆୟୋଜନ କରାଇଥିଲେ । କଥା ଓ କାର୍ଯ୍ୟର ସେ ଯେପରି ରୋକଠୋକ, ବନ୍ଧୁ ବେଉସିବାରେ ସେହିପରି ସ୍ପଷ୍ଟବାଗ । ଯେକୌଣସି ସଂସ୍ଥାର ମୁଖ୍ୟ ହୋଇ ଗୁରୁଭାର ସମ୍ଭାଳିବାରେ ଦକ୍ଷ । ପ୍ରଗତି ଉତ୍କଳ ସଂଘ ହେଉ, ଅଥବା ହେଉ ଲେକଭ୍ୟୁର ଆବାସିକ ସଂଘ କିମ୍ବା ନିଖିଳ ଭାରତ ଓଡିଆ ଅଧ୍ୟାପକ ସମ୍ମେଳନର ସଭାପତି ଦାୟିତ୍ୱ । ପଢାପଢି ଓ ବହିକିଣା ଯେପରି ଥିଲା ତାଙ୍କ ଜୀବନ । ତାଙ୍କ ବ୍ୟକ୍ତିଗତ ପାଠାଗାର ଏହା ସାକ୍ଷ୍ୟ ଦିଏ । ମୁଁ ଦୁଇ ତିନିଥର ଯାଇ ତାଙ୍କ ଘରେ ଖାଇଛି, ଆବଶ୍ୟକମତେ ତାଙ୍କ ପାଠାଗାରରୁ ବହି ଆଣିଛି, ଉପକୃତ ହୋଇଛି ଓ ଫେରାଇଛି । ଓଡିଆ ଭାଷା ସାହିତ୍ୟ ସମ୍ପର୍କରେ କିଛି ସମସ୍ୟା ଆସିଲେ ଆଳାପରୁ ତହିଁର ସମାଧାନର ସୂତ୍ର ପାଇଛି ।

'ସମ୍ବାଦ ଆମ ଓଡିଶା' ତରଫରୁ ପ୍ରକାଶିତ 'ସାହିତ୍ୟକୋଷ' ସମ୍ପାଦନା ସହ ସେ ସଂପୃକ୍ତ ଥିଲେ । ତହିଁରେ ମୁଁ ତାଙ୍କର ପରିଚୟ ଲେଖିଥିଲି । ଲେଖାଲେଖିରେ ସେ ଟିକେ ଖିଆଲି ଥିଲେ । ଆମ ଓଡିଶା ତରଫରୁ ପ୍ରକାଶ ପାଇବାକୁ ଥିବା 'ଆମ ଗଙ୍ଗାଧର' ପୁସ୍ତକ ପାଇଁ ସେ କବିଙ୍କ ଲେଖା ନିର୍ବାଚନ କରିଥିଲେ । କିନ୍ତୁ ଲେଖିପାରିଲେ ନାହିଁ । ଯଦିଓ ତାଙ୍କର ଗଙ୍ଗାଧର: କବିତା ଓ କବି ଆତ୍ମା ପୁସ୍ତକ ଏକ ଅପୂର୍ବ କୃତି । ବୋଧହୁଏ ତାଙ୍କର ପରାମର୍ଶକ୍ରମେ ଆମ ଗଙ୍ଗାଧର ବହିର ମୁଖବନ୍ଧ ଲେଖା ଦାୟିତ୍ୱ ମୋ ଉପରେ ପଡିଥିଲା ।

ରେଭେନ୍ସା ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ଓଡିଆ ବିଭାଗରେ ଉଭୟ ପରିଦର୍ଶୀ ଅଧ୍ୟାପକ ଥିଲୁ । ସେ ଜଣେ ଉଚ୍ଚମାନର ଅଧ୍ୟାପକ ଏହା ଜଣାପଡୁଥିଲା, କୌଣସି କାରଣରୁ ତାଙ୍କର ଅନୁପସ୍ଥିତି ଘେନି ଛାତ୍ରୀଛାତ୍ରମାନଙ୍କ ବିବ୍ରତତାରୁ । ଏହି ସମୟରେ ମୁଁ ତାଙ୍କଠାରୁ Textual Criticism ଓ ସମ୍ପାଦନା ପଦ୍ଧତି ସମ୍ବନ୍ଧରେ ଅନେକ କଥା ଜାଣି ଉପକୃତ ହୋଇଛି । ଅଧିକ ପଠାପଢି ପାଇଁ ସେ ମୋତେ କେତେଗୁଡିଏ ଇଂରାଜୀ ପୁସ୍ତକ ଯୋଗାଇ ଦେଇଛନ୍ତି । ଏମିତିରେ ତାଙ୍କ ସମ୍ପର୍କିତ ମୋର ବହୁ ଅନୁଭୂତି ପଠାପଢି ଓ ଲେଖାଲେଖି କେନ୍ଦ୍ରିକ ।

ତାଙ୍କର ପ୍ରତ୍ୟେକ ଆଲୋଚନା ତତ୍ତ୍ୱଗର୍ଭୀ ଓ ତଥ୍ୟନିଷ୍ଠ । ସେ ମୋଠାରୁ ବୟସରେ ସାନ, କିନ୍ତୁ ମୋ ଆଗରୁ ଚାଲିଗଲେ । ତାଙ୍କ ପାଇଁ ବ୍ୟଥାରେ ବିବ୍ରତ ହେବାକୁ ପଡୁଛି । କାଳର ଏ ବିଚିତ୍ର ଗତିପାଇଁ କବିଙ୍କ ଭାଷାରେ-ହଜିଲା ମଣିଷ ହାଏ ଛାଡିଯାଏ ଗୋଟି ଗୋଟି ସ୍ମୃତି /ଉଆଁସ ଅନ୍ଧାରେ ପୁଣି ମନେପଡେ ମିଠା ଜହ୍ନ ରାତି ।

*କଟକ*

ଫଣୀନ୍ଦ୍ରଭୂଷଣ ନନ୍ଦ

# ପହଞ୍ଚୁ ନଥିବା ନମସ୍କାର

ଭାଇନା,

ନମସ୍କାର । ଯେଉଁଠି ଥାନ୍ତୁ, ଗ୍ରହଣ କରିବେ । ମୁଁ ଜାଣେନା, ଆମ ଯୁଗ୍ମ ସମ୍ପାଦନାରେ ସଂକଳିତ ଓଡିଆ ଅଳଙ୍କାର ଶାସ୍ତ୍ର ସଂଗ୍ରହ ସଂକଳନ ୧ମ ଭାଗ ଓ ୨ୟ ଭାଗର ମୁଖବନ୍ଧ ମୁଁ ଆପଣଙ୍କ ମନୋପସନ୍ଦ ଓ ଶୈଳୀରେ ଲେଖିପାରିବି କି ନା । ଆପଣଙ୍କ ଅବର୍ତ୍ତମାନରେ ମୁଁ କଳାହୀନ ।

୨୨ ଅଗଷ୍ଟ ସନ୍ଧ୍ୟାରେ ଆପଣଙ୍କ ଘରକୁ ଯାଇଥିଲି । କଷ୍ଟ ପାଉଥିଲେ । ଘର ଭିତରକୁ ଡାକିନେଇ କହିଲେ, ମୁଁ ଖଟରେ ଗଡୁଛି । ଶୋଇଛି, ମୋ ପାଖରେ ବସନ୍ତୁ, କଥାହେବା । ଆପଣଙ୍କ ସମ୍ପାଦିତ 'ଫକୀରମୋହନ ସେନାପତିଙ୍କ ଗଳ୍ପ ସମଗ୍ର' କପି ଦେଇଥିଲେ, ଆଗ୍ରହରେ । କହିଲି ଆପଣ ବିଶ୍ରାମ ନିଅନ୍ତୁ । ଆପଣ କହିଲେ, ମୁଁ ଶୋଇଛି, ବସନ୍ତୁ । କଥା ହେଲେ ଭଲ ଲାଗିବ । କିନ୍ତୁ ଆପଣଙ୍କ କଥା ମୁଁ ନ ଶୁଣି କହିଲି-ବିଶ୍ରାମ ନିଅନ୍ତୁ ।

୨୩ ଅଗଷ୍ଟ ସକାଳେ ଆପଣ ଏପୋଲୋ ଡାକ୍ତରଖାନାରେ ଭର୍ତ୍ତି ହେଲେ । ବାରମ୍ବାର ଆପଣଙ୍କ ନମ୍ବରକୁ ଫୋନ କଲି । ରାତି ୮ଟା ୫୩ ମିନିଟରେ ଆପଣଙ୍କ ଫୋନ । ମୋ ସହିତ ୮ମିନିଟ ୨୩ ସେକେଣ୍ଡ କଥା ହେଲେ । ମୁଁ ଆପଣଙ୍କୁ କଷ୍ଟ ହେଉଥିବ କହି ବେଶି କଥା ହେବାକୁ ଚାହିଁଲିନାହିଁ । କହିଲେ, ଭଲ ଲାଗୁଛି । ମୁଁ ୨/୩ ଦିନ ଭିତରେ ଏଠୁ ଗଲା ପରେ ଅଳଙ୍କାରଶାସ୍ତ୍ର କାମ ପ୍ରଥମେ ସାରିବା । ସେଇ ଆପଣଙ୍କ ସହିତ ମୋର ଶେଷକଥା । ୨୫ ଅଗଷ୍ଟରେ ମୁଁ ଭାଷା ପ୍ରତିଷ୍ଠାନର ସଂପାଦନା, ବନାନ ଶୁଦ୍ଧି ଓ ପ୍ରୁଫ ସଂଶୋଧନ ତାଲିମ ଶିବିର ସଂଯୋଜନା କରୁଥିଲି । ୧୨ଟାବେଳେ ଆପଣଙ୍କ ଅବର୍ତ୍ତମାନର ସମ୍ବାଦ । ମୋ ଦେହରୁ ଝାଳ ବାହାରିଗଲା । ମୁଁ ସ୍ତମ୍ଭୀଭୂତ ହୋଇଗଲି ।

୨୬ ଅଗଷ୍ଟରେ ଆପଣଙ୍କ ସ୍ମୃତିଚାରଣ କରି ଭାଷା ପ୍ରତିଷ୍ଠାନର ତଲିମ ଶିବିରରେ ଏକ ମିନିଟ ନିରବ ପ୍ରାର୍ଥନା କରାଗଲା। ୨୫ତାରିଖରେ ମରଦେହର ଦାହ ସଂସ୍କାର ହୋଇ ନଥିବାରୁ ଆମେ ୨୬ତାରିଖ ହିଁ ନିରବ ପ୍ରାର୍ଥନା କଲୁ । ସେଠି ଉପସ୍ଥିତ ପ୍ରଫେସର ଯତୀନ ନାୟକ ଆପଣଙ୍କ ସମ୍ପାଦନା ଦକ୍ଷତାର ଭୂୟସି ପ୍ରଶଂସା କରିଥିଲେ । ଓଡ଼ିଆ ସାହିତ୍ୟରେ ସମ୍ପାଦନା କଥା ଉଠିଲେ ଆପଣ ଆଗ ମନେପଡନ୍ତି ।

୧୯୯୦, ମୁଁ ରାଜ୍ୟ ଅଭିଲେଖାଗାରରେ ସମ୍ବଲପୁର ହିତୈଷିଣୀ ପଢୁଥାଏ । ଅତି ଯତ୍ନରେ ତାର ପତ୍ରଗୁଡ଼ିକ ମୁଁ ଓଲଟାଉଥାଏ । ଯାହା ଦରକାର ଟିପୁଥାଏ । ଅଭିଲେଖାଗାରରୁ ବାହାରିବା ସମୟରେ ଆପଣ ମୋ ପରିଚୟ ପଚାରିଥିଲେ ଏବଂ 'ସମ୍ବଲପୁର ହିତୈଷିଣୀ' ସମ୍ପର୍କରେ ମଧ୍ୟ । ମୁଁ ଦେବଗଡରୁ ଆସିଛି ଜାଣି ଆପଣ ଖୁସି ହେଲେ । ଦାମୋଦର ମିଶ୍ରଙ୍କ ସମ୍ପର୍କରେ ମୋତେ ପଚାରିଲେ, ମୁଁ କହିଲି, ସେ ନୀଳମଣି ବିଦ୍ୟାରତ୍ନଙ୍କ ଭାଇ, ବାମଣ୍ଡାରେ ଶିକ୍ଷକତା କରୁଥିଲେ । ଆପଣ ବାମଣ୍ଡା ସମ୍ପର୍କରେ କିଛି ପଚାରିଲେ ଏବଂ ମୋ ଉତ୍ତରରେ ଖୁସି ହେଲେ । ମୁଁ ଆପଣଙ୍କୁ 'ଦୋଷଦର୍ଶନ' ପୁସ୍ତକ ପାଇଛନ୍ତି କି ପଚାରିଲି । ଆପଣ ତାର ମଲାଟ ନଥିବା ଜେରକ୍ସ କପିଟିଏ ପଠାଇଲେ । ମୁଁ ପରେ ପୂର୍ଣ୍ଣାଙ୍ଗ ବହିଟି ଦେବଗଡରୁ ସଂଗ୍ରହ କଲି । ଏମିତି ସମ୍ପର୍କ ବଢିଲା । ଆପଣଙ୍କ ସହିତ ପରିଚୟ ପରେ ମୋର ଆଲୋଚନାଗୁଡ଼ିକ ନୂଆ ଦିଶା ଓ ଗଭୀରତାଲାଭ କଲେ । ମୋର ଅନେକ ଆଲୋଚନାକୁ ଆପଣ ସଂଶୋଧନ କରିଛନ୍ତି ।

୨୦୦୨ ମୁଁ ସାର୍ ବାସୁଦେବ ସୁଢଳଦେବଙ୍କ ପୂର୍ଣ୍ଣାଙ୍ଗ ଗ୍ରନ୍ଥାବଳୀ ପ୍ରକାଶନ ପାଇଁ ଅନେକଙ୍କ ଦ୍ୱାରସ୍ଥ ହୋଇ ପ୍ରକାଶ କରିପାରି ନଥିଲି । ଏପରିକି ଓଡ଼ିଶା ସାହିତ୍ୟ ଏକାଡେମୀ ମଧ୍ୟ ପ୍ରକାଶପାଇଁ ମନା କରିଥିଲା । ଆପଣଙ୍କ ସହିତ ଆଲୋଚନା ପରେ ପ୍ରଗତି ଉତ୍କଳ ସଂଘ ବାସୁଦେବ ଗ୍ରନ୍ଥାବଳୀ, ୨୦୦୩ରେ ଏବଂ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ଗ୍ରନ୍ଥାବଳୀ ୨୦୦୫ରେ ପ୍ରକାଶ କରିଥିଲା । ପ୍ରଗତି ଉତ୍କଳ ସଂଘ, ରାଉରକେଲାର ଆପଣଙ୍କ ବ୍ୟତୀତ ଅନ୍ୟ କୌଣସି ସଭ୍ୟଙ୍କୁ ମୁଁ ଜାଣେନା । ସେହି ସଂଘ ଆପଣଙ୍କ ଉଦ୍ୟମରେ ୨୮।୪।୨୦୦୫ ଦିନ ମୋତେ ପ୍ରାବନ୍ଧିକ ଭାବରେ ସମ୍ବର୍ଦ୍ଧିତ କରିଥିଲା । ମୁଁ ବୋଧହୁଏ ସବୁଠୁ ବେଶି ଆପଣଙ୍କୁ ଫୋନ କରେ । ଆପଣଙ୍କ ବ୍ୟକ୍ତିଗତ ସମସ୍ୟା ମୋ ଆଗରେ ନିଶଂକୋଚ ପ୍ରକାଶ କରନ୍ତି । ମୋ ପରି ଓଡ଼ିଆ ସାହିତ୍ୟ ଅନଭିଜ୍ଞ ଲୋକକୁ ଆପଣ ସମ୍ପାଦନାର ସତ୍ୟନିଷ୍ଠ ଧାରାର ସୈନିକ କରି ଠିଆ କରିଛନ୍ତି । ମୋର ଯେଉଁଠି କିଛି ସାରସ୍ୱତ ସମସ୍ୟା ଉପୁଜିଛି, ଆପଣଙ୍କ ସହିତ ଫୋନରେ କଥା ହୋଇ ସମାଧାନ ପାଇଛି । କୌଣସି ଓଡ଼ିଆ ଅଧ୍ୟାପକ ଆପଣଙ୍କ ପରି ବିଭିନ୍ନ ଭାଷାର ଏତେ ପ୍ରଚୁର ବହି ପଢିଥିବା ମୋ ଆଖିରେ ପଡିନାହିଁ । ଆପଣଙ୍କ ବଡଗୁଣ, ଅନ୍ୟକୁ ସାହାଯ୍ୟ କରିବା, ଅକାତରେ ବହି ଦେବା । ଆପଣଙ୍କ ପରି

ପ୍ରଖର ସ୍ମରଣ ଶକ୍ତି ଥିବା ଲୋକ ବିଶେଷ ବିରଳ । କେବଳ ସାହିତ୍ୟ କ୍ଷେତ୍ରରେ ନୁହେଁ, ବରଂ ସାମାଜିକ କ୍ଷେତ୍ରରେ ଆପଣଙ୍କ ଅନେକ ବନ୍ଧୁ ଲକ୍ଷ ଲକ୍ଷ ଟଙ୍କା ଅସୁବିଧା ସମୟରେ ନେଇ ପରିଶୋଧ କରିନାହାନ୍ତି । ଜଣେ ଅଧ୍ୟାପକ ବନ୍ଧୁ ପାଞ୍ଚଲକ୍ଷ ନେଇ ଏଯାବତ୍ ନ ଫେରାଇଥିବାର ମୁଁ ଜାଣେ ।

ଆପଣ ଜଣେ ଉଦାରବାଦୀ, ସ୍ୱାଭିମାନୀ ସାରସ୍ୱତ ପୁରୁଷ । ଆପଣ ନିରବ ନିରନ୍ତର । କାହାର ଦୟାର ଅପେକ୍ଷା କରନ୍ତି ନାହିଁ । କାହାର ଅଯଥା ପ୍ରଶଂସା କରି ଲାଭ ଉଠାଇବା ଆପଣଙ୍କ ଜାତକରେ ନାହିଁ । ପୁରସ୍କାର ଲାଭ ନିର୍ଲିପ୍ତ । ମୁଁ ଚାହିଁଥିଲି, ଆପଣଙ୍କ କିଛି ପ୍ରବନ୍ଧର ଏକ ସଂକଳନ କରିବା ପାଇଁ । ଆପଣ ପ୍ରଥମେ ମନାକଲେ । ତା ପରେ କହିଲେ, ପ୍ରବନ୍ଧଗୁଡିକ ସଂଶୋଧନ କରି ଆଉ ଥରେ ଲେଖିବେ । କିନ୍ତୁ ତାହା ଆଉ ସମ୍ଭବ ହେଲା ନାହିଁ । ଓଡିଶା ସାହିତ୍ୟ ଏକାଡେମୀର ବର୍ଷିୟାନ ସାରସ୍ୱତ ସାଧକ ସମ୍ବର୍ଦ୍ଧନାପାଇଁ ମୁଁ ଆପଣଙ୍କ ନାମ ପ୍ରସ୍ତାବ କଲି । ଏହା ଆପଣ ଚାହିଁ ନଥିଲେ । ମୁଁ ପ୍ରସ୍ତାବ ଦେବା ପୂର୍ବରୁ ଆପଣଙ୍କଠାରୁ ସମ୍ମତି ନେଲି ଯେ, ମୁଁ ଏକ ପ୍ରସ୍ତାବ ଦେଉଛି, ଯଦି ସଫଳ ହୁଏ, ଆପଣ ତାକୁ ପ୍ରତ୍ୟାଖ୍ୟାନ କରିବେ ନାହିଁ । ଅନିଚ୍ଛା ସତ୍ତ୍ୱେ ଆପଣ ତାକୁ ଗ୍ରହଣ କରିଥିଲେ ।

ଆପଣଙ୍କ ଦିଗ୍‌ଦର୍ଶନରେ ମୁଁ ଅନେକ ଗ୍ରନ୍ଥାବଳୀ ସଂପାଦନା କରିଛି । କିନ୍ତୁ ଆମ ଦୁଇଜଣଙ୍କ ସମ୍ପାଦନାରେ 'ଓଡିଆ ଅଳଙ୍କାର ଶାସ୍ତ୍ର ସଂକଳନ' ଦୁଇଟି ଭାଗରେ ଓଡିଶା ସାହିତ୍ୟ ଏକାଡେମୀଦ୍ୱାରା ପ୍ରକାଶ ପାଇବାର ପ୍ରସ୍ତାବ ହେଲା । ପ୍ରଥମ ଭାଗରେ ଗୀତାଭିଧାନଠାରୁ ଅଖିଳରସ ଚିନ୍ତାମଣି ଏବଂ ଦ୍ୱିତୀୟ ଭାଗରେ ଅଳଙ୍କାର ବୋଧଦୟଠାରୁ ଯତିପାତ ଯାଏ ସଂକଳିତ ହେବାର ସ୍ଥିରହେଲା । ମୁଁ କହିଲି, ସଂଗ୍ରହ ଓ ସଂକଳନ ଭାର ମୋର, ମୁଖବନ୍ଧ ଲେଖିବେ ଆପଣ । ଆପଣ ରାଜି ହେଲେ । ମୋ ପାଖରେ ଦ୍ୱିତୀୟ ଭାଗର ସମସ୍ତ ବହିଥିବାରୁ ପ୍ରଥମେ ତାହା ସଂକଳିତ ହେଲା । ଆପଣ ବିଭିନ୍ନ ପାରିବାରିକ କାର୍ଯ୍ୟରେ ବ୍ୟସ୍ତ ରହିଥିବାରୁ ତାର କାମଚଳା ମୁଖବନ୍ଧଟିଏ ମୁଁ ଲେଖିଲି । ଆପଣ ତାକୁ ସଂଶୋଧନ କଲେ । ପ୍ରଥମ ଭାଗ ପରେ  ସଂକଳିତ ହେଲା । ପାଣ୍ଡୁଲିପି ପ୍ରସ୍ତୁତ ହେଲା, ମାତ୍ର ତା ମୁଖବନ୍ଧ ଲେଖିବ କିଏ ? ମୋର ଅସଂଲଗ୍ନ ବାକ୍ୟକୁ ସଜାଡିବ କିଏ ? ଅଳଙ୍କାର ଓ ଛନ୍ଦର ଧାରାବାହିକ ଇତିହାସ ସହିତ ଓଡିଆ ସାହିତ୍ୟରେ ତାର ବିବର୍ତ୍ତନର ଧାରାକୁ ଲିପିବଦ୍ଧ କରିବ କିଏ ? ଏ ଗୁରୁଭାର ମୋ ଉପରେ ଲଦି ଦେଇ ଆପଣ ନିଶ୍ଚିନ୍ତ ହେଲେ । ଆପଣଙ୍କ ସହିତ ନା ଆଲୋଚନା କରିହେବ, ନା ଫୋନ କଲେ ଉତ୍ତର ମିଳିବ ।

ଭାଇନା ! ଅନେକ କାର୍ଯ୍ୟ ଅଧା ଛାଡିଯିବାରେ କି ଯଶ ? ଆପଣଙ୍କ ପ୍ରବନ୍ଧର ସଂକଳନଟିଏ ପ୍ରସ୍ତୁତ ହୋଇନାହିଁ । ମୁଖବନ୍ଧ ଲେଖା ହୋଇନାହିଁ ଅଳଙ୍କାର ଶାସ୍ତ୍ର ସଂକଳନର । ଦୀପ୍ତିବାବୁଙ୍କ ସହିତ ଇଂରାଜୀରେ ଫକୀର ମୋହନ କାର୍ଯ୍ୟ ଅଧା ରହିଛି । ଆମଦ୍ୱାରା ସଂପାଦିତ

କର୍ଣ୍ଣାଦିଦଶପର୍ବ ମହାଭାରତ ଉପରେ ଆପଣଙ୍କ ମନ୍ତବ୍ୟ ଲେଖା ହୋଇନାହିଁ । ଏତେ କାର୍ଯ୍ୟ ଅସଂପୂର୍ଣ୍ଣ ଥାଇ ଆପଣ ନିଶ୍ଚିନ୍ତ ହୋଇଗଲେ କେମିତି ?

ହେ ନିଶ୍ଚିନ୍ତ ପୁରୁଷ ! ଆପଣଙ୍କୁ ମୋର ସାରସ୍ୱତ ଜୀବନର ଦିଗ୍‌ଦର୍ଶକ କହିଲେ ହସୁଥିଲେ । ଏବେ କ'ଣ ମୋତେ ଲୋକହସା କରିବାକୁ ଛାଡିଗଲେ । କେବଳ ସାହିତ୍ୟ ନୁହେଁ, ଜୀବନ ନୁହେଁ ତାଠୁ ଗଭୀର ଥିଲା ଆମର ସମ୍ପର୍କ । ସାହିତ୍ୟର ବିଭିନ୍ନ ଧାରା, ଲୋକ ଚରିତ୍ରର ଇତିହାସ ବିଶ୍ଳେଷଣରେ ଆପଣ ଥିଲେ ସମର୍ଥ । ଆପଣ ଓଡିଆର ଅଧ୍ୟାପକ କିନ୍ତୁ ଇତିହାସର ପ୍ରଖ୍ୟାପକ, ବିଜ୍ଞାନର ସମର୍ଥକ ଏବଂ ଦେଶବିଦେଶ ସାରସ୍ୱତ ଧାରାର ବିଶ୍ଳେଷକ ।

ଜଣେ ଏତେ ପଢେ କେମିତି, ସ୍ମରଣ ରଖେ କେମିତି- ତାର ଉତ୍ତର ପାଏନି । ଆପଣଙ୍କୁ ପହଞ୍ଚି ପାରୁ ନଥିବା ଏ ନମସ୍କାର, ଏ ଅଭିମାନ ଭରା ଶ୍ରଦ୍ଧାଞ୍ଜଳି ଗ୍ରହଣ କରନ୍ତୁ ।

*ଦେବଗଡ*



ବିଜୟାନନ୍ଦ ସିଂହ

# ଅଜାତଶତ୍ରୁ ଦେବେନ୍ଦ୍ର

ଜୀବନ ସତେ ବଡ଼ ବିଚିତ୍ର ! ଜୀବନକୁ ବୁଝିବା, ଜାଣିବା ବଡ଼ କଷ୍ଟକର ବ୍ୟାପାର । ଭାବୁଥିବା କଥା ଘଟେ ନାହିଁ; ଅଥଚ ଭାବୁନଥିବା ଘଟଣା ସବୁ ଅତର୍କିତ, ଅବିଶ୍ୱସନୀୟ ଭାବରେ ଆଖି ଆଗରେ ଘଟିଯାଏ । ଏହିସବୁ ଘଟଣା ମଣିଷକୁ ସ୍ତବ୍ଧ, ନିର୍ବାକ୍ କରିଦିଏ । ଏମିତି ଏକ ଘଟଣା ଘଟିଲା ଦେବେନ୍ଦ୍ର କୁମାର ଦାଶଙ୍କ କ୍ଷେତ୍ରରେ ।

ଦେବେନ୍ଦ୍ର କୁମାର ଦାଶଙ୍କର ପରିଚୟ କ'ଣ ? କ'ଣ ସେ ? ସେ କ'ଣ ପ୍ରବୀଣ ଆଦର୍ଶ ଅଧ୍ୟାପକ, ଅନନ୍ୟ ଗବେଷକ, ବିଶିଷ୍ଟ ପ୍ରାବନ୍ଧିକ, ସାହିତ୍ୟ ସମାଲୋଚକ, ଅଗ୍ରଣୀ ସଂଗଠକ, ସୁପ୍ରଶାସକ, ସମାଜସେବୀ, ବିଖ୍ୟାତ ସଂପାଦକ, ଉତ୍ତମ ବନ୍ଧୁ ଓ ପ୍ରେରଣାର ସ୍ରୋତ– କ'ଣ ସତରେ ତାଙ୍କ ପରିଚୟ ? ଆମ ବିଚାରରେ ଏସବୁର ମଧୁର ସମନ୍ୱୟ ଦେବେନ୍ଦ୍ର କୁମାର ଦାଶ । ସେ ସ୍ୱତନ୍ତ୍ର ସାରସ୍ୱତ ପ୍ରତିଭା । ତାଙ୍କ ବ୍ୟକ୍ତିତ୍ୱ ଓ ପ୍ରତିଭାର ପଟାନ୍ତର ନାହିଁ ।

୧୯୭୦ ମସିହାରୁ ଦେବେନ୍ଦ୍ର ଦାଶଙ୍କ ସାରସ୍ୱତ ଯାତ୍ରାର ଶୁଭାରମ୍ଭ । ମୌଳିକ ରଚନା ସହିତ, ସତ୍ୟନିଷ୍ଠ ତଥ୍ୟ ଓ ତତ୍ତ୍ୱକୁ ଭିନ୍ନ ପ୍ରକାରେ ଉପସ୍ଥାପିତ କରି ସେ ସ୍ମରଣୀୟ ହୋଇଛନ୍ତି । ଦେବେନ୍ଦ୍ରଙ୍କ ରଚନାରେ ଯେପରି, ସ୍ପଷ୍ଟ ଭାବ ଥାଏ ସେହିପରି ତାଙ୍କ ବକ୍ତବ୍ୟରେ ଥାଏ ନିର୍ଭୀକ ଚେତନାର ସ୍ୱର । ତାଙ୍କ ସଂପାଦିତ ପୁସ୍ତକଗୁଡ଼ିକରେ ଓଡ଼ିଆ ସାହିତ୍ୟର ଅଭିନବ ଦୀର୍ଘ ମୁଖବନ୍ଧ ସହିତ ବର୍ଣ୍ଣନା କୌଶଳର ଅପୂର୍ବ ପାରଦର୍ଶିତା ପରିଲକ୍ଷିତ ହୁଏ ।

୧୯୮୦ରୁ ଦେବେନ୍ଦ୍ର କୁମାର ଦାଶଙ୍କୁ ଜାଣିଥିଲେ ମଧ୍ୟ, ତାଙ୍କ ସହ ମୋର ଘନିଷ୍ଠ ସଂପର୍କ ସ୍ଥାପିତ ହୁଏ ୧୯୯୦ ବେଳକୁ । ଆଦିନାଟ୍ୟକାର ଜଗନ୍ମୋହନ ଲାଲ୍‌ଙ୍କ ସଂପର୍କରେ ତାଙ୍କର ଚମତ୍କାର ଗବେଷଣା, ଆମ୍ଭମାନଙ୍କୁ, ବିଶେଷକରି ମାହାଙ୍ଗାବାସୀଙ୍କୁ ଚମତ୍କୃତ କରିଥିଲା । ଆଦିନାଟ୍ୟକାରଙ୍କ ବହୁ ବିସ୍ମୃତ ଚିଠିକୁ ଆଧାର କରି ସେ ପ୍ରବନ୍ଧଟିଏ

ରଚନା କରିଥିଲେ ଏବଂ ତାହାକୁ 'ଏଷଣା'ରେ ପ୍ରକାଶ କରିଥିଲେ। ସେହି ଗବେଷଣା ଯେ କେତେ କଷ୍ଟସାଧ୍ୟ, ତାହା ମୁଁ ନିଜେ ଦେଖିଛି। ଗବେଷଣା ପାଇଁ ତାଙ୍କର ଯେଉଁଭଳି ନିଷ୍ଠା, ଓ ଅଧ୍ୟବସାୟ, ତାହା ଆଜି ସହଜଲକ୍ଷ୍ୟ ନୁହେଁ। 'ଉତ୍କଳ ସାହିତ୍ୟ ସମାଜ'ର ପାଠାଗାର, 'ଓଡ଼ିଶା ରାଜ୍ୟ ଅଭିଲେଖାଗାର', 'ରାଜ୍ୟ ସଂଗ୍ରହାଳୟ', 'ହରେକୃଷ୍ଣ ମହତାବ ପାଠାଗାର' ପ୍ରଭୃତିରେ ତାଙ୍କର ଅଧ୍ୟୟନ ଓ ଅନୁଶୀଳନ ଅନନ୍ୟ। ମୁଁ 'ଉତ୍କଳ ସାହିତ୍ୟ ସମାଜ'ର ସାଧାରଣସଂପାଦକ (୨୦୦୧-୨୦୦୪) ଥିଲାବେଳେ ଦେଖିଛି, ସାହିତ୍ୟ ସମାଜ ପାଠାଗାର ଖୋଲିବା ଆରମ୍ଭରୁ ରାତି ୯/୧୦ ପର୍ଯ୍ୟନ୍ତ ସେ ପଢୁଥିବେ ଓ ଲେଖୁଥିବେ। ବିଳମ୍ବିତ ରାତ୍ରିରେ ହୋଟେଲରୁ ରୁଟି ଖାଇ କାଠଗଡ଼ା ସାହି ଇନ୍ଦ୍ରଭବନ ଲଜ୍‌ରେ ଯାଇ ଶୁଅନ୍ତି। ସକାଳ ହେବା ମାତ୍ରେ ଯାଆନ୍ତି ଭୁବନେଶ୍ୱର ଅଧ୍ୟୟନ ଓ ଅନୁଶୀଳନ ପାଇଁ। ସେତେବେଳେ ସେ ଥାଆନ୍ତି ରାଉରକେଲା ମ୍ୟୁନିସ୍‌ପାଲ୍ କଲେଜରେ। ଛୁଟିଦିନ ବିଶେଷ କରି ଗ୍ରୀଷ୍ମ ଓ ପୂଜା ଅବକାଶରେ କିଏ ସିନା ଘରକୁ ଯାଆନ୍ତି- କିନ୍ତୁ ଦେବେନ୍ଦ୍ରବାବୁ ଆସନ୍ତି କଟକ-ଭୁବନେଶ୍ୱର।

ସେ ବହୁ ଅଧ୍ୟାପକ ଓ ଗବେଷକଙ୍କ ଗବେଷଣା ପାଇଁ ମାର୍ଗ ପ୍ରଦର୍ଶନ କରିଯାଇଛନ୍ତି। ସେ କିନ୍ତୁ ଥିଲେ ସେମାନଙ୍କର ଅଘୋଷିତ ମାର୍ଗଦର୍ଶକ। ସେ ମୋ ସମେତ ଅନେକ ଗବେଷକଙ୍କୁ ବିଭିନ୍ନ ସମୟରେ ତଥ୍ୟ ସଂଗ୍ରହରେ ଆଗ୍ରହପୂର୍ଣ୍ଣ ସହଯୋଗ କରିଛନ୍ତି। ସଦା ହସହସ ମୁହଁ, ସ୍ନେହ-ଶ୍ରଦ୍ଧା ଭରା କଥାବାର୍ତ୍ତା। କିନ୍ତୁ କୌଣସି ବିଶ୍ୱବିଦ୍ୟାଳୟରେ ପିଏଚ୍.ଡି. ବା ଡିଲିଟ୍ ପାଇଁ ସେ ସନ୍ଦର୍ଭ ଦାଖଲ କରିନାହାନ୍ତି; ଯଦିଓ ତାଙ୍କର ଅଧିକାଂଶ ରଚନା ଉନ୍ନତ ସନ୍ଦର୍ଭର ନାମାନ୍ତର ମାତ୍ର। ସବୁପିଢ଼ି ବିଶେଷକରି ତରୁଣ ପିଢ଼ିର ଲେଖକମାନଙ୍କ ସହ ତାଙ୍କର ଘନିଷ୍ଠ ସଂପର୍କ କଥା ଭାବିଲେ ବିସ୍ମିତ ହେବାକୁ ପଡ଼େ। ସବୁ ଟିକିନିଖି ଖବର ସେ ରଖିଥାନ୍ତି। ସେ କେବଳ ସାହିତ୍ୟରେ ଧୁରୀଣ ଥିଲେ, ତାହା ନୁହେଁ; ରାଜନୀତି ବିଜ୍ଞାନ, ଭୂଗୋଳ, ଇତିହାସ, ଏପରିକି ବିଜ୍ଞାନ ବିଷୟରେ ମଧ୍ୟ ତାଙ୍କର ଥିଲା ପାଣ୍ଡିତ୍ୟ ଓ ଜ୍ଞାନ। ପୁରସ୍କାର ବା ସମ୍ମାନଗ୍ରହଣଠାରୁ ସେ ଥିଲେ ବହୁ ଦୂରରେ। ଏପରିକି ବିଜ୍ଞପ୍ତି ଅନୁସାରେ ପୁରସ୍କାର ବା ସମ୍ମାନ ପାଇଁ ଦରଖାସ୍ତ କରିବାରେ ସେ ଥିଲେ ଘୋର ବିରୋଧୀ।

ଅଗଷ୍ଟ ୧୩, ୨୦୨୨ରେ କେନ୍ଦ୍ର ସାହିତ୍ୟ ଅକାଦେମି ଓ ଫକୀରମୋହନ ସାହିତ୍ୟ ପରିଷଦର ମିଳିତ ଆଲୋଚନାଚକ୍ର, ବାଲେଶ୍ୱରରେ ସକାଳ ୧୦ଟା ବେଳେ ଉଦ୍‌ଘାଟିତ ହୋଇଥିଲା। ଉଦ୍‌ଘାଟନ କରିଥିଲେ ଫକୀରମୋହନ ବିଶ୍ୱବିଦ୍ୟାଳୟର କୁଳପତି ପ୍ରଫେସର ସନ୍ତୋଷ କୁମାର ତ୍ରିପାଠୀ। କୁଳପତି ତାଙ୍କ ଭାଷଣରେ କହିଲେ, ଫକୀରମୋହନଙ୍କ ସଂପର୍କରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି। ଭାଷଣ ପ୍ରସଙ୍ଗରେ ମୁଁ ତାଙ୍କୁ କହିଥିଲି- ଫକୀରମୋହନ ସାହିତ୍ୟର ବିଶିଷ୍ଟ ଗବେଷକ ଦେବେନ୍ଦ୍ର କୁମାର ଦାଶଙ୍କୁ ଉପଯୋଗ କରନ୍ତୁ,

ଫକୀରମୋହନ ସାହିତ୍ୟର ଅନେକ ନୂତନ ଦିଗନ୍ତ ଉନ୍ମୋଚିତ ହେବ । କିନ୍ତୁ ବିଧିର ବିଧାନ ବଡ଼ ବିଚିତ୍ର । ସେ ବାଲେଶ୍ୱରରୁ ଫେରିଲା ପରେ ଅସୁସ୍ଥ ହୋଇପଡ଼ିଲେ । ବାଲେଶ୍ୱର ଗସ୍ତରେ ତାଙ୍କର ସହଯାତ୍ରୀ ଥିଲେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରଫେସର ଦୀପ୍ତିରଂଜନ ପଟ୍ଟନାୟକ । ମୁଁ କାର୍ଯ୍ୟବ୍ୟସ୍ତତା ହେତୁ ତାଙ୍କୁ ସାକ୍ଷାତ କରିପାରିଲି ନାହିଁ; ବନ୍ଧୁ ପ୍ରଦୀପ୍ତ କୁମାର ପଣ୍ଡାଙ୍କଠାରୁ ସବୁ ଖବର ପ୍ରତିଦିନ ରଖୁଥିଲି ।

୨୨ ଅଗଷ୍ଟ ୨୦୨୨ ଦିନ ୩ଟା ସମୟରେ, ଲେକ୍‌ଭିଉ, ଭୁବନେଶ୍ୱର ସ୍ଥିତ ଘରକୁ ଯାଇଥିଲି । ମାନନୀୟା ଭାଉଜ ଥାଆନ୍ତି ବାଙ୍ଗାଲୋରରେ । ସେ ବିଛଣାରେ ଶୋଇଥାନ୍ତି । ବେଲ୍ ମାରିବା ମାତ୍ରେ ଭିତରୁ ଶବ୍ଦ ଆସିଲା, "କବାଟ ଖୋଲା ଅଛି, ଭିତରକୁ ଆସ ।" ମୋତେ ଦେଖି ସେ ଖୁବ୍ ଖୁସି ହୋଇଗଲେ । ଖଟ ପାଖରେ ବସିବାକୁ କହିଲେ । ସାହିତ୍ୟ ସଂପର୍କିତ ନାନା ଆଲୋଚନା ହେଲା । ମୁଁ ମଝିରେ ମଝିରେ ପଚାରୁଥାଏ- ଦେହ କେମିତି ଅଛି ? ସେ କହୁଥାଆନ୍ତି, ଭଲ ଅଛି- ଗତଦିନମାନଙ୍କରେ ଯେପରି ଯନ୍ତ୍ରଣା ପାଉଥିଲି, ଏବେ ଟିକେ କମ୍ ଅଛି । ମୁଁ କହିଲି; ଡାକ୍ତରଙ୍କୁ କହିଲେଣି ? ସେ କହିଲେ- ଏବେ ଭଲ ଅବସ୍ଥାକୁ ଆସିଲାଣି । ମୁଁ କହିଲି- ମୋର ପରିଚିତ ଡାକ୍ତର ଭୁବନେଶ୍ୱରରେ ଅଛନ୍ତି । ତାଙ୍କୁ ଡାକିବା କି ? ସେ କହିଲେ- ନା ନା, ମୋ' ରୁମ୍‌ର ଆର କ୍ୱାର୍ଟରରେ ଭଲ ଡାକ୍ତର ରୁହନ୍ତି । ଅତି ଦରକାର ନପଡ଼ିଲେ ମୁଁ ତାଙ୍କୁ ଡାକେ ନାହିଁ । ମୁଁ କହିଲି, ଭାଉଜ, ପିଲାମାନେ ଆପଣଙ୍କ ଅସୁସ୍ଥତା କଥା ଜାଣିଲେଣି ? ସେ ହସିଲେ । କହିଲେ- ମୋର ଶଳା ସବୁଦିନେ ଆସୁଛନ୍ତି । ତାଙ୍କୁ ମଧ୍ୟ କହିଛି; ଅସୁସ୍ଥରୁ ସୁସ୍ଥ ଆଡ଼କୁ ଯାଉଛି । ଭାଉଜ ଓ ପିଲାମାନଙ୍କୁ ସବୁକଥା କହିଲେ, ସେମାନେ ବ୍ୟସ୍ତହେବେ । ସେମାନେ ମାନସିକ ଯନ୍ତ୍ରଣା ପାଇବେ । ମୋପାଇଁ କେହି କଷ୍ଟ ପାଆନ୍ତୁ, ମୁଁ ଚାହେଁ ନାହିଁ । ମୁଁ କହିଲି ମୁଁ ଆଉ ବନ୍ଧୁ ପ୍ରଦୀପ୍ତ କୁମାର ଆପଣଙ୍କ ପାଖରେ ରହିବୁ; ଆପଣଙ୍କୁ ଆବଶ୍ୟକ ସହଯୋଗ ଦେବୁ । ସେ କହିଲେ- ଆବଶ୍ୟକ ହେଲେ କହିବି । ମୁଁ ଖୁବ୍ ଶୀଘ୍ର ଭଲ ହୋଇଯିବି ।

ସେଦିନ ଆଲୋଚନା ଶେଷଭାଗରେ ତାଙ୍କୁ ଅଭିନନ୍ଦନ ଜଣାଇଥିଲି, ଏନ୍.ବି.ଟି. ଦ୍ୱାରା ସଦ୍ୟପ୍ରକାଶିତ ଫକୀରମୋହନ ସେନାପତିଙ୍କ ଗଳ୍ପ ସମଗ୍ର ପୁସ୍ତକ ପାଇଁ । ସେହି ବହିଟି ସଂପାଦନା କରିଛନ୍ତି ଦେବେନ୍ଦ୍ର କୁମାର ଦାଶ । ଏକ ବିସ୍ତୃତ ମୁଖବନ୍ଧ ସହ ବହୁ ତଥ୍ୟ ଓ ସଂଗ୍ରହଣୀୟ ଉପାଦାନରେ ପୁସ୍ତକଟି ସୁଶୋଭିତ । ଏହି ବହିଟି ପ୍ରାୟ ବହୁଦିନ ହେବ ଲୋକଲୋଚନକୁ ଆସିପାରି ନଥିଲା । ସେ କହିଲେ, ବହି ଆସିଯାଇଛି; ମୁଁ ତୁମକୁ ଖଣ୍ଡେ ବହି ଉପହାର ଦେବି । ବିଛଣାରୁ ଉଠୁଥିଲେ ବହିଟିକୁ ଆଣିବାପାଇଁ । ମୁଁ କହିଲି- ଆପଣ ଶୋଇଥାଆନ୍ତୁ, ବହି କେଉଁଠି ଅଛି କୁହନ୍ତୁ ମୁଁ ନେଇଆସିବି । ସେ କହିଲେ, ଆରପଟ ଘର ଟି'ପୟ ଉପରେ ଅଛି । ମୁଁ ବହି ନେଇ ଆସିଲି । ଫକୀରମୋହନ ସେନାପତିଙ୍କ ଗଳ୍ପ ସମଗ୍ରର

ପୁସ୍ତକର ପ୍ରଥମ ପୃଷ୍ଠାରେ ସେ ଲେଖିଲେ ଶ୍ରଦ୍ଧେୟ ବନ୍ଧୁ ଡକ୍ଟର ବିଜୟାନନ୍ଦ ସିଂହଙ୍କୁ। ବହିଟି ଗ୍ରହଣ କରି ତାଙ୍କୁ ନମସ୍କାର କରି ଆସିଲି। ସେହିଦିନ ଥିଲା ଦେବେନ୍ଦ୍ର ଭାଇନାଙ୍କ ସହିତ ମୋର ଶେଷ ସାକ୍ଷାତ୍ ଓ ଶେଷ କଥାବାର୍ତ୍ତା। ଧଳା ଲୁଗା ସହିତ ଧଳା ଗଂଜି ପରିହିତ ଦେବେନ୍ଦ୍ର ଭାଇନାଙ୍କ ଛୋଟ ଛୋଟ ଦାଢ଼ିପୂର୍ଣ୍ଣ ମୁହଁରେ ଥିଲା ସେହି ଚିରପରିଚିତ ହସ-ସ୍ନେହ, ଶ୍ରଦ୍ଧା, ଆତ୍ମୀୟତା ଓ ଗଭୀର ପ୍ରେମର ଦ୍ୟୋତନା। କାହାର ମନ କଷ୍ଟ ହେଲା ପରି କଥାବାର୍ତ୍ତା ସେ କରନ୍ତି ନାହିଁ।

କ'ଣ ହେଲା ? କର୍ମନିଷ୍ଠ ଦେବେନ୍ଦ୍ର କୁମାର ଦାଶ ସବୁଦିନ ପାଇଁ ଅତର୍କିତ ଭାବରେ ଚାଲିଗଲେ ଅଫେରା ରାଇଜକୁ। କ୍ଷତି– ବିପୁଳ କ୍ଷତି ଓଡ଼ିଆ ସାହିତ୍ୟର; ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟର।

ନୂତନ ଗବେଷଣାର ମାର୍ଗଦର୍ଶକ ଦେବେନ୍ଦ୍ର କୁମାର କୁମାର ଥିଲେ ଅଜାତଶତ୍ରୁ। ଓଡ଼ିଆ ଅଧ୍ୟାପକ ସମ୍ମେଳନକୁ ବିକଶିତ ତଥା ପ୍ରସାରିତ କରିବା ପାଇଁ ତାଙ୍କର ସବୁ ସ୍ୱପ୍ନ ଭାଙ୍ଗିଗଲା। ଦେବେନ୍ଦ୍ର ଭାଇନାଙ୍କ ଅବର୍ତ୍ତମାନରେ ଖାଲି ଦୁଃଖ, ଦୁଃଖ ଆଉ ଦୁଃଖ। ସେ ଥିଲେ ବାସ୍ତବରେ ଉତ୍ସାହର ଉତ୍ସ- ଅଜାତଶତ୍ରୁ।

*କଟକ*

## ଗୋବିନ୍ଦ ଚନ୍ଦ୍ର ଚାନ୍ଦ

# ପ୍ରଣମ୍ୟଙ୍କୁ ପ୍ରଣାମ

ଯେଉଁ କେତେଜଣ ସାରସ୍ୱତ ସାଧକ ସମକାଳୀନ ଓଡ଼ିଆ ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟକୁ ସମ୍ଭ୍ରାନ୍ତପଣ ପ୍ରଦାନ କରିବା ପାଇଁ ପ୍ରୟାସ କରି ସଫଳ ହୋଇଛନ୍ତି, ସେମାନଙ୍କ ମଧ୍ୟରେ ଦେବେନ୍ଦ୍ର କୁମାର ଦାଶଙ୍କ ନାମ ସ୍ମରଣୀୟ। ଏକ୍ଷେତ୍ରରେ ସେ ସ୍ୱତନ୍ତ୍ର ଆସନର ଅଧିକାରୀ। ବିଂଶ ଶତାବ୍ଦୀର ଉତ୍ତର ସତୁରି ଓଡ଼ିଆ ସାହିତ୍ୟ ଚର୍ଚ୍ଚାର ଚୌହଦୀକୁ ବିସ୍ତୃତ କରିବାରେ ତାଙ୍କର ଯୋଗଦାନ ଅନନ୍ୟ, ଅସାଧାରଣ। ଗବେଷଣାଧର୍ମୀ ଦୃଷ୍ଟିକୋଣରେ ତାଙ୍କ ସୃଷ୍ଟି ଓ ଅଭିବ୍ୟକ୍ତି କେବଳ ପ୍ରଭାବଶାଳୀ ନଥିଲା, ତଦନୁରୂପ ବିସ୍ମିତ କରୁଥିଲା।

ଦେବେନ୍ଦ୍ର ସାର୍‌ଙ୍କ ସହ ପରିଚୟ ପର୍ବ ଆରମ୍ଭ ହୋଇଥିଲା ଛାତ୍ର ଜୀବନରେ ରାଉରକେଲାରୁ। କିନ୍ତୁ ସଂପର୍କ ସେପରି ନିବିଡ଼ ନଥିଲା। ଡକ୍ଟର କୃଷ୍ଣଚରଣ ବେହେରାଙ୍କ ମାଧ୍ୟମରେ ଏହି ସଂପର୍କ ନିବିଡ଼ ହୋଇଥିଲା। ଓଡ଼ିଆ ଗବେଷଣା ପରିଷଦର ମୁଁ ସଦସ୍ୟ ନଥିଲି, ମାତ୍ର ଡକ୍ଟର ବେହେରା ମୋତେ ଭାରି ଶ୍ରଦ୍ଧା କରୁଥିଲେ। ସେତେବେଳେ ପ୍ରଜାତନ୍ତ୍ରରେ କାର୍ଯ୍ୟ କରୁଥାଏ। ଅନେକ ସଂଧ୍ୟାରେ ଡକ୍ଟର ବେହେରାଙ୍କ ବାସଭବନକୁ ଯିବାକୁ ପଡୁଥାଏ। ସେଠାରେ ମଝିରେ ମଝିରେ ଦେବେନ୍ଦ୍ର ସାର୍‌ଙ୍କ ସାକ୍ଷାତ୍। ଏହି ସାକ୍ଷାତ୍ ସଂପର୍କକୁ ଆଗକୁ ବଢ଼ାଇଥିଲା। 'ଓଡ଼ିଆ ସାହିତ୍ୟର ବିକାଶ ଓ ବିବର୍ତ୍ତନରେ ଝଙ୍କାର' ପୁସ୍ତକଟି ପ୍ରକାଶ ପାଇବା ପରେ, ତାଙ୍କ ସହ ସଂପର୍କ ଅଧିକ ନିବିଡ଼ ହୋଇଯାଇଥିଲା। ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ 'ଗୌରୀଶଙ୍କର ରାୟ'ଙ୍କ ଜୀବନୀ ପୁସ୍ତକ ପ୍ରକାଶ ପାଇବା ପରେ ସେ ହିଁ ସୂଚନା ଦେଇଥିଲେ ଯେ ଏହି ଜୀବନୀ ପୁସ୍ତକଟି ରଚନା କରିବାର ଦାୟିତ୍ୱ ସେ ନେଇଥିଲେ ଏବଂ ଏ କ୍ଷେତ୍ରରେ ଅଧିକ ଆଗେଇ ପାରିନଥିଲେ। ସେହି ପୁସ୍ତକରେ ଆଉ କ'ଣ ବିଷୟବସ୍ତୁ ସଂଯୋଜନା କରିବା ଦରକାର ସେ ପରାମର୍ଶ ତାଙ୍କଠାରୁ ମିଳିଥିଲା। ପରେ ଦ୍ୱିତୀୟ ସଂସ୍କରଣ ସମୟରେ ତାଙ୍କ ପରାମର୍ଶ ଅନୁଯାୟୀ କିଛି ନୂଆ ପାଠ ସଂଯୋଜନା କରିଥିଲି।

'ସାରସ୍ୱତ ଉପାସକ କ୍ଷେତ୍ରବାସୀ' ପ୍ରକାଶ ପାଇବା ପରେ ସେ ହିଁ ପ୍ରକାଶ କରିଥିଲେ, ଏ ଜୀବନୀ ପୁସ୍ତକ ଆମେ ଲେଖିବା କଥା, କିନ୍ତୁ ତାହା ଗୋବିନ୍ଦ ଲେଖିଲେ । ଅନେକ ସମୟରେ ଶ୍ରୀ ଦାଶଙ୍କ ଆନ୍ତରିକତାରେ ମନକୁ ଆର୍ଦ୍ର କରିଛି । ସେପରି ଆନ୍ତରିକତା ଖୁବ୍ କମ୍ ସାରସ୍ୱତ ସାଧକଙ୍କଠାରୁ ମିଳିଛି ।

ଉତ୍କଳ ସାହିତ୍ୟ ସମାଜର ପ୍ରତିଷ୍ଠା ଦିବସରେ ଏହି ମର୍ଯ୍ୟାଦାସଂପନ୍ନ ଅନୁଷ୍ଠାନର ପ୍ରତିଷ୍ଠା ସଂପର୍କରେ ସେ ଯେଉଁ ତଥ୍ୟଭିତ୍ତିକ ଯୁକ୍ତିନିଷ୍ଠ ବକ୍ତବ୍ୟ ଉପସ୍ଥାପନ କରିଥିଲେ, ତାହା ସବୁଦିନ ଅଭୁଲା ହୋଇରହିବ । ବକ୍ତବ୍ୟରେ ନୂଆ ଦୃଷ୍ଟିକୋଣ ଶ୍ରୋତାମାନଙ୍କୁ ସ୍ତବ୍ଧ କରିଦେଇଥିଲା । ଉତ୍କଳ ସାହିତ୍ୟ ସମାଜର ଇତିହାସ ପ୍ରଣୟନ ପାଇଁ ଶ୍ରୀ ଦେବେନ୍ଦ୍ର କୁମାର ଦାଶ ଓ ଡକ୍ଟର ଶ୍ରୀଚରଣ ମହାନ୍ତି ଉଦ୍ୟମ କରିଥିଲେ, ତାହା ମଧ୍ୟ ଅଧୁରା ରହିଗଲା । ଉତ୍କଳ ସାହିତ୍ୟ ସମାଜର ସଂକ୍ଷିପ୍ତ ଇତିହାସଟିଏ ତାଙ୍କୁ ଭେଟି ଦେବା ବେଳେ ସେହି ପୁସ୍ତକ ଖୁବ୍ ଶୀଘ୍ର ଶେଷ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ମାତ୍ର ଏହା ସମ୍ଭବ ହୋଇନଥିଲା । ଉତ୍କଳ ସାହିତ୍ୟ ସମାଜର ନିର୍ବାଚନ ପୂର୍ବରୁ ତାଙ୍କ ସହିତ କିଛି ସମୟ ଆଲୋଚନା କରିଥିଲି । "ଦେହ ଅସୁସ୍ଥ ଅଛି, ମାତ୍ର ନିର୍ବାଚନ ଦିନ ଯାଇ ପହଞ୍ଚିବି"ବୋଲି କହିଥିଲେ । "ଦେହ ଅସୁସ୍ଥ ଥିଲେ ଆସିବେ ନାହିଁ ବୋଲି ତାଙ୍କୁ କହିଥିଲି ।" ସେ ହସି ଦେଇଥିଲେ । ସେ ହସରେ ଥିଲା ଆତ୍ମୀୟତାର ନିବିଡ଼ ଆବେଗ ।

ଦେବେନ୍ଦ୍ର ସାର୍‌ଙ୍କ ଆତ୍ମୀୟତା ଭୁଲିବାର ନୁହେଁ । ତାଙ୍କ ଅବର୍ତ୍ତମାନରେ ତାଙ୍କୁ ପ୍ରଣାମ କରୁଛି ।

*କଟକ*

**ରମାକାନ୍ତ ସାମନ୍ତରାୟ**

# ଶେଷଦେଖା

ସେଦିନ ସନ୍ଧ୍ୟାରେ ପୁରୁଣାବସ୍‌ଷ୍ଟାଣ୍ଡ୍‌ରେ ପହଂଚିଲା ବେଳକୁ ଠିକ୍ ବଡିଖୁଣ୍ଟ ତଳକୁ ଦେବେନ୍ଦ୍ରଭାଇନା ମୁହଁରେମାସ୍କ ପିନ୍ଧି କେଦାରମିଶ୍ର ଓ ସନ୍ତୋଷ ତ୍ରିପାଠୀଙ୍କ ସହଗପୁଛନ୍ତି ।ମୁଁସେଇଠି ଠିଆ ହୋଇଗଲି । ଅନେକ ଦିନ ପରେ ତାଙ୍କ ସହ ଦେଖା ହୋଇଥିଲା । ଏମିତି ଠିଆଠିଆ ଆମେ ତିନିହେଁ ସେଦିନ ପ୍ରାୟ ପଇଁଚାଳିଶ ମିନିଟ୍ ଗପିଥିବୁ । କିଛିସମୟ ପରେ ଆମ ସହିତ ଯୋଗ ଦେଲେ ପବିତ୍ରମୋହନ କର ଓ ସୁମିତ୍ରା । ଆମ ଅଜାଣତରେ ସୁମିତ୍ରା ଫଟୋଟିଏ ଉଠେଇଥିଲା ଆମର । ଭାଇନାଙ୍କ ସହ ସେଇଟି ମୋର ପ୍ରଥମ ଓ ଶେଷ ଫଟୋ । ଆମେ ସେଦିନ ସାହିତ୍ୟ ବିଷୟରେ କମ୍ ଭାରତୀୟ ରାଜନୀତି ବିଷୟରେ ଅଧିକା ଗପିଥିଲୁ । ରାଜନୀତି କେମିତି ସାହିତ୍ୟକୁ ପ୍ରଭାବିତ କରେ ଓ କରୁଛି ସେବିଷୟରେ କଥା ହେଲୁ । କଥା ହେଲୁ ମାନେ ଆମେ ସାମନ୍ୟ ଉଖୁରେଇ ଦେଲେ ଭାଇନା ଗପୁଥିଲେ । ପୁଣିଥରେ ମୁଁ ସେଦିନ ଆଶ୍ଚର୍ଯ୍ୟ ହୋଇଥିଲି ତାଙ୍କର ସାମ୍ପ୍ରତିକ ରାଜନୈତିକ ଘଟଣାକ୍ରମକୁ ଅତୀତର ତଥ୍ୟ ସହ ଯୋଡି ଅନୁଶୀଳନ କରିବାର ପ୍ରକ୍ରିୟାକୁ ଦେଖି ।ଜଣେ ଶାଣିତ ସମାଲୋଚକର ପରିସର କେତେ ବ୍ୟାପକ ଓ କେତେ ଗଭୀରହେବା ଦରକାର ଭାଇନାଙ୍କ ସାଙ୍ଗରେ ନମିଶିଲେ ଜାଣିହେବନି । ଭାଇନା ସେଦିନ ଶ୍ରୀ ପତ୍ରିକାର ଗୋପବନ୍ଧୁ ବିଶେଷାଙ୍କ ଖୋଜିବାକୁ ଆସିଥିଲେ । ନହେଲେ ମୁଁ ତାଙ୍କୁ ଆମ ପୁରୁଣା ବସ୍‌ଷ୍ଟାଣ୍ଡ ଖଟିରେ କେବେବି ଦେଖେନି । ହାୟ ! ମୁଁ ଜାଣିନଥିଲି ସେଇଟା ଆମର ଶେଷ ଦେଖା ହେବ ବୋଲି ।

ଦେବେନ୍ଦ୍ରଭାଇନାଙ୍କ ସହିତ ସିଧାସଳଖ ଚିହ୍ନା ହୋଇଥିଲା ବଡ଼ଭାଇ ଗୌରାଙ୍ଗ ଦାଶଙ୍କ ମାଧ୍ୟମରେ । କେଇବର୍ଷତଳେ ଗୌରାଙ୍ଗଭାଇଙ୍କ ବିତର୍କ ଓ ବ୍ୟାଖାନ ବହି ମୁଁ ଛାପୁଥାଏ ।

ଭାଇ କହିଲେ, ଦେବେନ୍ଦ୍ରଭାଇନା ମୁଖବନ୍ଧ ଲେଖିବେ। ଭଲକଥା। ଧିରେସୁସ୍ଥେ ବହିକାମ ଆଗେଇ ଚାଲିଲା। ମୁଁ ବାରବାର ମୁଖବନ୍ଧ ଖୋଜୁଥାଏ। ଭାଇନାଙ୍କ ମୁଖବନ୍ଧ ଲେଖା ସରୁନଥାଏ। ପୁଣି କଥା ହେଲା ମୁଖବନ୍ଧ ଛାଡ଼। ସେ ପୃଷ୍ଟବନ୍ଧ ଲେଖିବେ। ଶେଷକୁ ପୃଷ୍ଠବନ୍ଧ ପାଇଁ ଗୋଟେ ଫର୍ମା ଛାଡି ବହି ଛପାକାମ ବି ଚାଲିଲା। ଉନ୍ମୋଚନ ବେଳକୁ ବିନା ପୃଷ୍ଠବନ୍ଧରେ ବହିମଞ୍ଚରେ ପହଞ୍ଚିଲା। ଭଲରେ ଲେଖାହେବ ବୋଲି ଶେଷ ଯାଏ ଲେଖା ସରିଲାନି। ତାପରେ ମୋ ଅଭିମାନକୁ ପ୍ରତିହତ କରିବାକୁ ଦେବେନ୍ଦ୍ରଭାଇନା ମୋ ହାତରେ ଗୋଟେ ପାଣ୍ଡୁଲିପି ଧରେଇଲେ। ରାଧାନାଥ ରାୟଙ୍କ ବଙ୍ଗଳା ରଚନାବଳୀ। ମୁଁ ଯଥାଶୀଘ୍ର ଡି.ଟି.ପି କରି ତାଙ୍କ ହାତରେ ଧରେଇଦେଲି। ସେ ପ୍ରୁଫ୍ ଦେଖି ମୁଖବନ୍ଧ ଭାବରେ ଏକ ଦୀର୍ଘ ପ୍ରବନ୍ଧ ଲେଖି ମୋତେ ଦେବା କଥା। ଯେବେ ଦେଖାହେଲେ କୁହନ୍ତି, ରମାକାନ୍ତ ଏଥର ସେଇ କାମଟା ସାରିଦେବା। କାମ ସରୁନଥିଲା, କାରଣ ଭାଇନା ଖୋଜୁଥିବା ତଥ୍ୟ ସବୁ ମିଳିନଥିଲା। ଅନ୍ୟାନ୍ୟ କାମ ଭିତରେ ସେଇଟା ବାକି ରହିଥିଲା। ଏବେ ଭାଇନା ଚାଲିଗଲେ। ସେ କାମ ଆଉ ବୋଧେ ସରିବନି। କିଏ କରିବ? ଯାଡୁସ୍ୟାଡୁ ଲେଖି ତରତରରେ କାମକରିବା ସେଜାଣି ନଥିଲେ। ଯାହାହେବ ନିଦାରେ ହେବ, ଭଲରେ ହେବ।

କରୋନା ସମୟରେ ଘରେ ଥିବାବେଳେ କଲିକତା କଳା ବିଦ୍ୟାଳୟରେ ପ୍ରଥମ ଓଡ଼ିଆ ଭାବରେ କଳାରେ ପାଠପଢ଼ିଥିବା ଆନନ୍ଦ ମିଶ୍ରଙ୍କ ବିଷୟରେ ଲେଖା ଗୋଟେ ଲେଖୁଥାଏ। ଫକୀରମୋହନ ସେନାପତିଙ୍କ ପରିଣତ ବୟସରେ ଆନନ୍ଦ ମିଶ୍ର ତାଙ୍କ ସମ୍ପର୍କରେ ଥିଲେ। ଫକୀରମୋହନଙ୍କ ବଗିଚାରେ ଥିବା ତାଙ୍କ ପ୍ରତିମୂର୍ତ୍ତିକୁ ଆନନ୍ଦ ମିଶ୍ର ଗଢିଥିଲେ। କିନ୍ତୁ ସେନାପତିଙ୍କ 'ଉତ୍କଳଭ୍ରମଣଂ'ରେ ଆନନ୍ଦ ମିଶ୍ର ନାମରେ ଗୋଟେ କବିତା ଛଡା ଆଉ କିଛି ମିଳୁନି। ଭାଇନାଙ୍କୁ ଫୋନ୍‌କଲି ସେ କହିଲେ ତାଙ୍କ ପାଖରେ କିଛି ତଥ୍ୟ ଅଛି। ସେ ବିଷୟରେ ଲେଖିବାର ଯୋଜନା ବି ଅଛି। ସେଦିନ ମୋତେ କିଛି ତଥ୍ୟ ବି ଯୋଗେଇ ଦେଇଥିଲେ।

କିଛି ଅଜଣା କଥା ଜାଣିବାର ଥିଲେ, କିଛି ଅଜଣା ତଥ୍ୟ ବିଷୟରେ ନିଶ୍ଚିତ ହେବାପାଇଁ ଅନେକେ ଭାଇନାଙ୍କୁ ଫୋନ କରନ୍ତି। ମୁଁ ବି କେତେଥର କରିଛି। ଦୁଃଖ ହେଲା ସେମିତିକା ଲୋକଙ୍କ ସଂଖ୍ୟା କମିକମି ଚାଲିଛି। ପର ପିଢ଼ିରେ ଏମିତିକା ଗବେଷକ ଆଉ ବାହାରିବା ପରି ବି ଦିଶୁନି।

*ଭୁବନେଶ୍ୱର*

କମଳାକାନ୍ତ ମହାପାତ୍ର

# ଦେବେନ୍ଦ୍ର କୁମାର ଦାଶ

ଦେବେନ୍ଦ୍ର କୁମାର ଦାଶ ସଙ୍ଗେ ମୋର ପାରିବାରିକ ସମ୍ପର୍କ ଥିଲା । ବୋଉ ପଟୁ ତା' ପିଉସୀ ଝିଅର ଜ୍ୱାଇଁ; ନନାଙ୍କ ପଟୁ କେମିତି କ'ଣ ଲେଖାଯୋଖା ପୁତୁରା; ଉଭୟ ସମ୍ପର୍କ ଏତେ ଦୂରବର୍ତ୍ତୀ ଓ ଏତେବର୍ଷ ଧରି ବିଲୁପ୍ତ ଯେ, ଆମେ ଉଭୟ ସେ ବିଷୟରେ ଅବଗତ ନ ଥିଲୁ; ଅକସ୍ମାତ ଅବଗତ ହେବା ବେଳକୁ ବନ୍ଧୁ ହୋଇସାରିଥିଲୁ । ତେଣୁ ଆମେ ଆପୋଷ ନିଷ୍ପତ୍ତି ନେଇଥିଲୁ ଯେ, କେବେଠୁ କଟିଯାଇଥିବା ପାରିବାରିକ ସମ୍ପର୍କ କଥା ଆଉ କେବେ ଉଠାଇବୁ ନାହିଁ ।

ଆମ ବନ୍ଧୁତା ଆରମ୍ଭ ପ୍ରାୟ ପଚିଶବର୍ଷ ତଳୁ, ଏକ ସାହିତ୍ୟ ଆଲୋଚନା ସଭା ଆସରରେ । ମୁଁ ତା'ର କେତୋଟି ପ୍ରବନ୍ଧ ପଢ଼ି 'ମୁଗ୍ଧ' ହୋଇଥିଲି; ସେ କହିଥିଲା ମୋର କେତୋଟି ଗପ ଓ ଅନୁବାଦ ପଢ଼ି 'ମୁଗ୍ଧ' ହୋଇଥିଲା । ସେଇଠୁ ଆମେ ପୁଣି ଆପୋଷ ନିଷ୍ପତ୍ତି ନେଲୁ ଯେ, ଏଣିକି ସହଜରେ ମୁଗ୍ଧ ହେବା ଛାଡ଼ି ସୁସ୍ଥ ନିରପେକ୍ଷ ସମୀକ୍ଷକୀୟ ଦୃଢ଼ତା ଓ ତୀବ୍ରତା ନେଇ ପରସ୍ପରର କାମର ଅନୁଧ୍ୟାନ କରିବୁ । ଶେଷ ପର୍ଯ୍ୟନ୍ତ ଏଇ ଆଦର୍ଶ ଆମ ଭିତରେ ବଳବତ୍ତର ଥିଲା ।

ବୟସରେ ଦେବେନ୍ଦ୍ର ମୋ ଠାରୁ ପ୍ରାୟ ତିନି ଚାରି ବର୍ଷ ସାନ ଥିଲା (ସେଇ ସୂତ୍ରରେ ମତେ ଭାଇନା ବୋଲି ଡାକୁଥିଲା), କିନ୍ତୁ ମୁଁ ସବୁବେଳେ ତା'ର ମନେପକାଇ ଦେଉଥିଲି ଯେ, ଅଧ୍ୟୟନ ପରିସର, ବିଜ୍ଞତା ଓ ଅନ୍ତର୍ଦୃଷ୍ଟି ପରିପ୍ରେକ୍ଷୀରେ ସେ ମୋ ଠାରୁ ଅନ୍ୟୁନ ତିରିଶ ବର୍ଷ ବଡ଼ । ଏକଥା ମୁଁ ବାହୁଲ୍ୟରେ ବା କପଟ ବିନମ୍ରତା ସହ କହୁନାହିଁ । ଦେବେନ୍ଦ୍ରର ଗବେଷଣାର ଗଭୀରତା ମତେ ପ୍ରକୃତରେ 'ମୁଗ୍ଧ' ଓ ଅନୁପ୍ରାଣିତ କରିଛି । ତା'ର ଅଧ୍ୟୟନରେ ଥିଲା ଭିନ୍ନ ଦୃଷ୍ଟିକୋଣ, ସନ୍ଧାନ ଓ ନୂତନ ବିଚାର- ବଳିଷ୍ଠ ସମାଲୋଚନା ସାହିତ୍ୟ ପାଇଁ ଏକାନ୍ତ ଆବଶ୍ୟକୀୟ ଉପାଦାନ । ସେଇଥିପାଇଁ ତା' ରଚନା ଲାଗୁଥିଲା ସତେଜ ଓ ସୁପାଠ୍ୟ

ଏବଂ ତଥ୍ୟସମ୍ବଳିତ। ଯେଉଁଥିପାଇଁ ତାକୁ ସମାଲୋଚନା ସାହିତ୍ୟର 'ସେନାପତି' ବୋଲି ଅନେକ ଗବେଷକ ଓ ପାଠକ ଅକୁଣ୍ଠ ଭାବରେ ସ୍ୱୀକାର କରିଛନ୍ତି।

୨୦୧୮ରେ ଆମେ (ମୋର ଦୁଇ ସହଯୋଗୀ ଲୀଳା ଓ ପଲ ସେଣ୍ଟ୍-ପିୟର) 'ଛମାଣ ଆଠଗୁଣ୍ଠ' ଉପନ୍ୟାସର ଗୋଟିଏ ନୂଆ ଇଂରାଜୀ ଅନୁବାଦପାଇଁ ଦେବେନ୍ଦ୍ର ସମ୍ପାଦିତ ନିର୍ଭୁଲ ପାଠ୍ୟ ଉପରେ ନିର୍ଭର କରିଥିଲୁ; ସେତିକି ନୁହେଁ, ଅନେକ ଶବ୍ଦ ଓ ବାକ୍ୟାଂଶର ଅର୍ଥ ଓ ତାତ୍ପର୍ଯ୍ୟ ନିର୍ଭୁଲ ଭାବେ ବୁଝିବାପାଇଁ ସାହାଯ୍ୟ ଲୋଡ଼ିଥିଲୁ। ୨୦୨୧ରେ ଅନୁବାଦଟି ପ୍ରକାଶିତ ହେବା ଅବସରରେ କୃତଜ୍ଞତାର ସହ ସେକଥା ସ୍ୱୀକାର କରିଥିଲୁ।

ସେଇ ଅବସରରେ ଏଇ କାଳଜୟୀ ଉପନ୍ୟାସର ଏକ ଟୀକା ଟିପ୍ପଣୀ ସମ୍ବଳିତ ସଂସ୍କରଣ ସମ୍ପାଦନା କରିବାକୁ ମୁଁ ବାରମ୍ବାର ତାକୁ ପରାମର୍ଶ ଦେଇଥିଲି। ସେ ନିଜେ କହିଥିଲା ଯେ, ଫକୀରମୋହନଙ୍କ ଏଇ ଉପନ୍ୟାସରେ ପାଞ୍ଚଶହରୁ ଊର୍ଦ୍ଧ୍ୱ ପାର୍ସୀ, ମୋଗଲ ଓ ମରାଠା ଶବ୍ଦର ବ୍ୟବହାର ରହିଛି। ଆଜିକାଲିକା ତରୁଣ ପାଠକଙ୍କ ଅବଗତି ପାଇଁ ଟିପ୍ପଣୀଯୁକ୍ତ (ଆନୋଟେଟେଡ଼) ସଂସ୍କରଣର ଆବଶ୍ୟକତା ଉପଲବ୍ଧି କରି କାମଟି କରିଦେବ ବୋଲି ସେ ପ୍ରତିଶ୍ରୁତି ଦେଇଥିଲା।

କିନ୍ତୁ ସେ କାମ ଏବେ ଅପୂର୍ଣ୍ଣ ରହିବ। ତା' ସହିତ ଅପୂର୍ଣ୍ଣ ରହିବ ଦେବେନ୍ଦ୍ରର ଆଉ ଅନେକ ବିଶିଷ୍ଟ କାମ। ସବୁ ଆତ୍ମସ୍ଥ, ଆତ୍ମସଚେତନ, ନିଷ୍ଠାବାନ୍ ଗବେଷକଙ୍କ ପରି ଦେବେନ୍ଦ୍ର କୌଣସି ଅଧ୍ୟୟନକୁ ଅଳ୍ପ ସମୟକାଳ ଭିତରେ ଉପରଠାଉରିଆ ଭାବେ ଶେଷ କରିଦେବାକୁ ଚାହୁଁ ନ ଥିଲା; ସବୁ କାମପାଇଁ ପ୍ରଚୁର ସମୟ ନେଉଥିଲା; ବୋଧହୁଏ ସେଇଥିପାଇଁ ଅଜସ୍ର ଅଧାରଖା କାମ ଛାଡ଼ିଦେଇ ଗଲା।

କୌଣସି ବିଷୟରେ ଆକର୍ଣ୍ଣ ପ୍ରବେଶ ନଥିଲେ ମତାମତ ବା ଭାଷଣ ଦେବାରୁ ନିୟମାଗତ ଭାବେ ସେ ନିବୃତ୍ତ ରହୁଥିଲା। (ଏହା ବି ଜଣେ ନିର୍ଭରଯୋଗ୍ୟ ଗବେଷକ ଓ ଚିନ୍ତକର ଲକ୍ଷଣ)। ଫଳରେ, ସେ ଯେତେବେଳେ ମତାମତ ପ୍ରକାଶ କରୁଥିଲା, ତା'ର ପ୍ରତି କଥାର ମୂଲ୍ୟ ଥିଲା, ଓଜନ ଥିଲା ତେଣୁ ତା ଭାଷଣ ଶୁଣିବାକୁ ଶ୍ରୋତା ରୁଣ୍ଡ ହେଉଥିଲେ।

ବହୁ ଲୋକ ଚାଲିଗଲା ପରେ 'ଅପୂରଣୀୟ କ୍ଷତି' ଘଟିଲା ବୋଲି ଶୋକବାର୍ତ୍ତା ଓ ଶୋକଲିପିରେ କୁହାଯାଏ। ଏହା ତୁଚ୍ଛା ଔପଚାରିକତା, ଲୌକିକତା। ଅତି ନଗଣ୍ୟ ସଂଖ୍ୟକ ବ୍ୟକ୍ତିବିଶେଷ କ୍ଷେତ୍ରରେ ଏହା ପ୍ରଯୁଜ୍ୟ। ଦେବେନ୍ଦ୍ର ଯେ ସେଇ ହାତଗଣତି ବ୍ୟକ୍ତିବିଶେଷଙ୍କ ଭିତରେ ଜଣେ, ସେକଥା ମୁଁ ସର୍ବାନ୍ତକରଣରେ ବିଶ୍ୱାସ କରେ।

*କଲିକତା*

ଯତୀନ୍ଦ୍ର କୁମାର ନାୟକ

# ଏକ ଅପୂରଣୀୟ କ୍ଷତି

ହଠାତ୍ ଗୋଟିଏ ହ୍ୱାଟ୍ସଆପ୍ ମେସେଜ୍ ପାଇଲି ଯେ ଦେବେନ୍ଦ୍ର ଦାଶ ନାହାନ୍ତି। ପ୍ରଥମେ ଏ ଗୋଟିଏ ମିଛ ଖବର ବୋଲି ଭାବିଲି। କିନ୍ତୁ ବନ୍ଧୁ ପ୍ରଫେସର ବସନ୍ତ ପଣ୍ଡାଙ୍କୁ ପଚାରିବାରୁ ସେ ବାଷ୍ପରୁଦ୍ଧ କଣ୍ଠରେ କହିଲେ ଏ ଦାରୁଣ ସମ୍ବାଦଟି ସତ। ଦୁଇ ତିନିମାସ ତଳେ ସେ, ମୁଁ ଓ ଗୌରାଙ୍ଗବାବୁ ଜଗତ୍‌ସିଂହପୁରର ଗୋଟିଏ ସଭାରେ ବକ୍ତୃତା ଦେବାପାଇଁ ଏକାଠି ଯାଇଥିଲୁ। ବାଟସାରା ଢେଙ୍କାନାଳରୁ ଡିଙ୍କିଶାଳ ପର୍ଯ୍ୟନ୍ତ ଗପସପ ଚାଲିଥିଲା। ଦେବେନ୍ଦ୍ରବାବୁ ପୂରା ସୁସ୍ଥ ଥିଲେ ଓ ନିଜର ମତକୁ ଯୁକ୍ତି ଏବଂ ତଥ୍ୟର ସାହାଯ୍ୟ ନେଇ ସାବ୍ୟସ୍ତ କରୁଥିଲେ। ତାଙ୍କ ସହ ଘଣ୍ଟାଏ କଥାବାର୍ତ୍ତାରୁ ମାସେ ଦୁଇମାସ ପଢ଼ାପଢ଼ି ବା ଗବେଷଣାରୁ ଲବ୍ଧ ଜ୍ଞାନ ମିଳୁଥିଲା। ଥରେ ଫୋନ୍ କଲେ ଘଣ୍ଟାଏରୁ କମ୍ କଥା ହୁଅନ୍ତିନାହିଁ। ଯାହା ସାହାଯ୍ୟ ମାଗିଲେ ଅକୁଣ୍ଠ ଭାବରେ ଦିଅନ୍ତି। ତାଙ୍କର ଜ୍ଞାନପିପାସା ଓ ସ୍ୱାଭିମାନ ଆଗରେ ସ୍ୱତଃ ମୁଣ୍ଡ ନଇଁଆସୁଥିଲା। କେବେ କାହାକୁ ଡରିବା, ତୋଷାମଦ କରିବା ବା ନିଜର ସ୍ୱାଧୀନ ମତ ପ୍ରକାଶପାଇଁ କୁଣ୍ଠିତ ହେବା ତାଙ୍କ ସ୍ୱଭାବବିରୁଦ୍ଧ ଥିଲା। ଜୀବନରେ ଏଥିପାଇଁ ସେ ଅନେକ ସଂଘର୍ଷର ସମ୍ମୁଖୀନ ହୋଇଛନ୍ତି, କିନ୍ତୁ ପଛକୁ ହଟିଯାଇନାହାନ୍ତି।

ଦେବେନ୍ଦ୍ରବାବୁ ମୋର ସମସାମୟିକ। ବର୍ଷେ ବଡ଼ ହୋଇପାରନ୍ତି ବୟସରେ। ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ସ୍ନାତକୋତ୍ତର ଶିକ୍ଷା ଲାଭକରି ଶାନ୍ତିନିକେତନ ଯିବା ପରେ ସେଠାରେ ମୁଁ ଅଧ୍ୟାପକ ଭାବରେ ଯୋଗ ଦେଇଥିଲି। ଓଡ଼ିଆ ଐତିହାସିକ ଉପନ୍ୟାସ ଉପରେ ମୁଁ ଇଂରାଜୀରେ ଲେଖିଥିବା ବହିରୁ 'ପଦ୍ମମାଳୀ' ଉପନ୍ୟାସ ଉପରେ ଲେଖିଥିବା ପରିଚ୍ଛେଦଟିର ଓଡ଼ିଆ ଅନୁବାଦ ସେ ରାଉରକେଲାରୁ ପ୍ରକାଶିତ ହେଉଥିବା ଗୋଟିଏ ସାହିତ୍ୟପତ୍ରିକାରେ ବାହାର କରିଥା'ନ୍ତି। ବିଭିନ୍ନ ପତ୍ରପତ୍ରିକାରେ ତାଙ୍କର ଜ୍ଞାନଦୀପ୍ତ ପ୍ରବନ୍ଧସବୁ ପଢ଼ି ମୁଁ ଅନେକ କଥା ଶିଖୁଥିଲି। କିନ୍ତୁ ବ୍ୟକ୍ତିଗତସ୍ତରରେ ସମ୍ପର୍କ ତିଆରି ହେଲା ଅନେକଦିନ ପରେ। ମୁଁ

ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗ ଦେଲାପରେ। ବିଭିନ୍ନ ସଭାସମିତିରେ ଦେଖାହୁଏ। ଶିକ୍ଷାସନ୍ଧାନ ଆସନ୍ତି ଓ ଆମେ ଘଣ୍ଟାଘଣ୍ଟା ଗପୁ। ଯାହା ବହି ଲେଖନ୍ତି, ଖଣ୍ଡିଏ ଖଣ୍ଡିଏ କପି ଦିଅନ୍ତି। ମୁଁ ଲେଖିଥିବା ପ୍ରବନ୍ଧ ବା ପ୍ରାକ୍‌ଭାଷ ସହ ଏକମତ ନହେଲେ ଖୋଲାଖୋଲି ଟିପ୍ପଣୀ ଦେଉଥିଲେ। ଏସବୁ ଦ୍ୱାରା ଆମର ବ୍ୟକ୍ତିଗତ ସମ୍ପର୍କ କେବେ କ୍ଷୁଣ୍ଣ ହେଉନଥିଲା।

ଦେବେନ୍ଦ୍ରବାବୁ ସବୁବେଳେ କହୁଥିଲେ ଯେ ଇଂରାଜୀ ଅଧ୍ୟାପକମାନେ ଓଡ଼ିଆ ସାହିତ୍ୟ ଉପରେ ସୁନ୍ଦର ସାବଲୀଳ ଇଂରାଜୀରେ ବହି ବା ପ୍ରବନ୍ଧ ଲେଖିଲେ ଓଡ଼ିଆ ସାହିତ୍ୟର ବହୁତ ଲାଭ ହେବ। ସେ ଗଙ୍ଗାଧର ମେହେରଙ୍କ ଉପରେ ଲେଖିଥିବା ଗୋଟିଏ ପ୍ରବନ୍ଧର ଇଂରାଜୀ ଅନୁବାଦ Critical Discourse in Odia ପୁସ୍ତକରେ ସ୍ଥାନିତ କରିଥିଲୁ। ସେଇଟି ପଢ଼ି ସେ ବହୁତ ଖୁସି ହୋଇଥିଲେ। ଏହି ପୁସ୍ତକର ଦୀର୍ଘ ଉପକ୍ରମଣିକାକୁ ପଢ଼ି ତା' ଉପରେ ମତାମତ ଦେବାକୁ ଅନୁରୋଧ କରିଥିଲି। ସେ ତାହା ପଢ଼ି ସନ୍ତୋଷ ପ୍ରକାଶ କରିବା ପରେ ତାଙ୍କୁ କହିଥିଲି ଯେ ତାଙ୍କଠାରୁ ସବୁଜ ସଙ୍କେତ ପାଇବା ପରେ ଆଉ କାହାର ସମାଲୋଚନାକୁ ଡରିବାର ନାହିଁ। କପିରାଇଟ୍ ଅନୁମତି ପାଇଁ ତାଙ୍କ ଘରକୁ ପାଣ୍ଡେମିକ୍ ସମୟରେ ଯାଇଥିଲି। କେତେ ଆତ୍ମୀୟତା ସହିତ ମୁଁ ଓ ମୋ ବନ୍ଧୁଙ୍କୁ ସେ ସ୍ୱାଗତ କରିଥିଲେ ମନେପଡୁଛି। ଜ୍ଞାନ ସର୍ଜନାରୁ ଯେତିକି ଆନନ୍ଦ ଦେବେନ୍ଦ୍ରବାବୁ ପାଉଥିଲେ, ଜ୍ଞାନ ବାଣ୍ଟିବାରୁ ସେତିକି ଆନନ୍ଦ ତାଙ୍କୁ ମିଳୁଥିଲା।

ଆମେ ଭାବୁଥିଲୁ ଦେବେନ୍ଦ୍ରବାବୁ ବର୍ଷବର୍ଷ ଧରି ଆମ ସହିତ ଥିବେ। କୌଣସି ବିଷୟରେ ସନ୍ଦେହ ହେଲେ ବା ସାହାଯ୍ୟ ଦରକାର ହେଲେ ଆମେ ଫୋନ୍ କରିବୁ ବା ଦେଖା କରିବୁ ଓ ବନ୍ଧୁବତ୍ସଳ ଦେବେନ୍ଦ୍ରବାବୁ ହସି ହସି ଆମ ସମସ୍ୟା ଦୂର କରିଦେବେ। କିନ୍ତୁ ଆମ ଜୀବନରେ ଏକ ଅପୂରଣୀୟ ଶୂନ୍ୟତା ଭରିଦେଇ ସେ ହଠାତ୍ ଚାଲିଗଲେ। ଭଗବାନ୍ ତାଙ୍କର ଆତ୍ମାକୁ ଶାନ୍ତି ଦିଅନ୍ତୁ ଓ ତାଙ୍କର ପରିବାରର ସଦସ୍ୟମାନଙ୍କୁ ଏ ଦୁଃଖ ସହିବାର ଶକ୍ତି ଦିଅନ୍ତୁ।

*ଭୁବନେଶ୍ୱର*

କୁମୁଦ ଚନ୍ଦ୍ର ଦାଶ

# ଦେବେନ୍ଦ୍ରବାବୁଙ୍କୁ ମୁଁ ଯେପରି ଜାଣେ

୨୫ ଅଗଷ୍ଟ ୨୦୨୨ । ପୂର୍ବାହ୍ଣରେ ତାଳଚେର ହିଙ୍ଗୁଳା ମହାବିଦ୍ୟାଳୟଠାରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ ଅନୁଗୁଳ ଜିଲ୍ଲା ସାହିତ୍ୟ ସଂସଦର ମିଳିତ ଆନୁକୂଲ୍ୟରେ ପାଳିତ ହେଉଥାଏ ରାଜ୍ୟସ୍ତରୀୟ ପଦ୍ମଶ୍ରୀ କବି ରାଧାମୋହନ ଗଡ଼ନାୟକଙ୍କ ୧୧୨ତମ ଜନ୍ମଜୟନ୍ତୀ । ମୁଁ ସଭାପତିତ୍ୱ କରୁଥାଏ । ହଠାତ୍ ଆସିଲା ବିଶିଷ୍ଟ ଗବେଷକ ଡକ୍ଟର ଗୌରାଙ୍ଗ ଚରଣ ଦାଶଙ୍କ ଫୋନ୍- 'ଦେବେନ୍ଦ୍ର ଭାଇନା ଚାଲିଗଲେ' । କି ଦାରୁଣ ଦୁଃସମ୍ବାଦ । ସଭାରେ ଦୁଇମିନିଟ୍ ନୀରବ ପ୍ରାର୍ଥନା କରାଗଲା । ମନେପଡ଼ିଗଲା ଗଡ଼ନାୟକଙ୍କ କବିତା 'ମୃତ୍ୟୁ ହେ ତୁମେ ସେତେବେଳେ କିଆଁ ଆସ ?' ତାଙ୍କ ବିୟୋଗରେ ଓଡ଼ିଆ ସାହିତ୍ୟରେ ସୃଷ୍ଟିହେଲା ଏକ ବିରାଟ ଶୂନ୍ୟସ୍ଥାନ । ସେ ଶୂନ୍ୟତା ପୂର୍ଣ୍ଣ ହେବା କାହିଁ ସମ୍ଭବ ବୋଲି ମନେ ହେଉନାହିଁ ।

ଗୀତାରେ କୁହାଯାଇଛି-

"ଦେହିନୋସ୍ମି ଯଥାଦେହେ କୌମାରଂ ଯୌବନଂଜରା

ତଥା ଦେହାନ୍ତର ପ୍ରାପ୍ତି ଧୀରସ୍ତତ୍ର ନ ମୁହ୍ୟତେ ।"

କୌମାର , ଯୌବନ ଓ ବାର୍ଦ୍ଧକ୍ୟ ପରେ ମୃତ୍ୟୁ ଏକ ସ୍ୱାଭାବିକ ପର୍ଯ୍ୟାୟ । ପଣ୍ଡିତମାନେ ସେଥିରେ ବିଚଳିତ ହୁଅନ୍ତି ନାହିଁ । ବିଚଳିତ ନ ହେବା ସ୍ୱାଭାବିକ କି ? ଏ ଉକ୍ତି ନିର୍ମମ । ଯୋଗୀ ଋଷି ଜିତେନ୍ଦ୍ରିୟଙ୍କ ବାଣୀ ଇଏ । ପାର୍ଥିବ ପୃଥିବୀର ମମତାସ୍ନାତ ଅନୁଭବ ନୁହେଁ । ଆମକୁ ପଛେ ଲୋକେ ପଣ୍ଡିତ କି ଯୋଗୀ ଋଷି ନ କୁହନ୍ତୁ, ଆମେ ପ୍ରିୟଜନର ବିୟୋଗରେ ବିଚଳିତ ହେବୁ ହିଁ ହେବୁ । ଆମେ ବୈରାଗୀ ନୋହୁଁ- ଜୀବନାନୁରାଗୀ । ବିଶ୍ୱକବି ରବୀନ୍ଦ୍ରଙ୍କ ଭାଷାରେ- ବୈରାଗ୍ୟ ସାଧନେ ମୁକ୍ତି ଯେ ଆମାର ନୟ । ମୃତ୍ୟୁ କାମ୍ୟ ନୁହେଁ । 'ମରିତେ ଚାଇନା ଆମି ସୁନ୍ଦର ଭୁବନେ / ମାନବେର ମାଝେ ଆମି ବାଞ୍ଚିବାର ଚାଇ । ସମସ୍ତେ ଶତାୟୁ ହୁଅନ୍ତୁ । ଏ ଆମର ଆକାଂକ୍ଷା । ବେଦ କହେ- ଜୀବେଣ ଶରଦଃ ଶତଂ । ୬୮ବର୍ଷରେ

ବିୟୋଗ ଅକାଳ ବିୟୋଗ। ଏହା ସମସ୍ତଙ୍କ ପାଇଁ ଯନ୍ତ୍ରଣାଦାୟକ। ଦେବେନ୍ଦ୍ରବାବୁଙ୍କ ବିୟୋଗରେ ମୁଁ ଯନ୍ତ୍ରଣାଗ୍ରସ୍ତ-ମର୍ମାହତ। ଉପାୟ ଆଉ କ'ଣ ?

ତାଙ୍କ ସହ ପ୍ରାୟ ପନ୍ଦର କୋଡ଼ିଏ ବର୍ଷର ସମ୍ପର୍କ। ସେ ରାଉରକେଲା କଲେଜରେ ଥିବାବେଳେ ବିଶ୍ୱବିଦ୍ୟାଳୟ ଆୟୋଗ ଆନୁକୂଲ୍ୟରେ 'ଓଡ଼ିଆ ସାହିତ୍ୟରେ ଶିଳ୍ପାୟନର ପ୍ରଭାବ' ଶୀର୍ଷକ ଜାତୀୟ ସମ୍ମାନକୁ ମୋତେ ନିମନ୍ତ୍ରଣ କରିଥିଲେ। ଡକ୍ଟର କୃଷ୍ଣଚରଣ ବେହେରା, ଡକ୍ଟର ଭାବଗ୍ରାହୀ ମିଶ୍ର, ଡକ୍ଟର ଦାଶରଥି ଦାସ ଏବଂ ଡକ୍ଟର ନିତ୍ୟାନନ୍ଦ ଶତପଥୀ ପ୍ରମୁଖ ବିଶିଷ୍ଟ ସାରସ୍ୱତ ପୁରୁଷଙ୍କ ସମାବେଶରେ ଅନୁଷ୍ଠିତ ଏ ସଭାରେ ମୁଁ ଆଧୁନିକ କବିତା ସମ୍ପର୍କରେ ଆଲୋଚନା କରିଥିଲି। ଦେବେନ୍ଦ୍ରବାବୁ ଖୁବ୍ ସନ୍ତୁଷ୍ଟ ହୋଇଥିଲେ ଏବଂ ପୁସ୍ତକରେ ତାକୁ ପ୍ରକାଶ କରିଥିଲେ। ସେହିପରି ରାଉରକେଲା ପ୍ରଗତି ସଂଘ ଆନୁକୂଲ୍ୟରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ତରଫରୁ ସାହିତ୍ୟରେ ସହରୀକରଣର ପ୍ରଭାବ ସମ୍ପର୍କିତ ଆଲୋଚନାଚକ୍ରକୁ ମୋତେ ନିମନ୍ତ୍ରଣ କରି ଅନୁଗୃହୀତ କରାଇଥିଲେ। ମୁଁ ଆଧୁନିକ କବିତା ସମ୍ପର୍କରେ ପ୍ରବନ୍ଧ ପାଠ କରିଥିଲି। ରାଉରକେଲା ନୀଳଶୈଳ ମହାବିଦ୍ୟାଳୟର ଜଗନ୍ନାଥ ସଂସ୍କୃତି ସମ୍ପର୍କିତ ଆଲୋଚନାଚକ୍ରରେ ତାଙ୍କ ସହ ସାକ୍ଷାତ ହୋଇଥିଲା। ମୁଁ ପ୍ରାଚୀନ ସାହିତ୍ୟ ସମ୍ପର୍କରେ ଆଲୋଚନା କରିବାରୁ ସେ କହିଲେ ଏକାଥରେ ସଞ୍ଚି ରାଉତରାୟ, ଗୁରୁପ୍ରସାଦ, ରମାକାନ୍ତ, ସୀତାକାନ୍ତରୁ ସାରଳା ବଳରାମ ଜଗନ୍ନାଥ। ଗୌରାଙ୍ଗବାବୁଙ୍କ କୁଟାରିମୁଣ୍ଡା ଆନନ୍ଦାଶ୍ରମରେ ଓଡ଼ିଶା ସାହିତ୍ୟ ଏକାଡ଼େମୀର କାର୍ଯ୍ୟକ୍ରମ, ଶ୍ରୀରାମଚନ୍ଦ୍ର ଭବନରେ ଓଡ଼ିଆ ଗବେଷଣା ପରିଷଦର ବାର୍ଷିକ ଅଧିବେଶନରେ ତାଙ୍କର ବିଜ୍ଞତାପୂର୍ଣ୍ଣ ଭାଷଣ ଶୁଣିଛି। ବସ୍ତୁତଃ ସେ ଥିଲେ ଜଣେ ପ୍ରାଜ୍ଞ, ଅନ୍ତର୍ଦୃଷ୍ଟିସମ୍ପନ୍ନ ଅନନ୍ୟ ଗବେଷକ।

ଦେବେନ୍ଦ୍ର ଦାଶ-ଗୌରାଙ୍ଗ ଦାଶ-ମୁଁ କୁମୁଦ ଦାଶ- ଏ ତିନିଜଣଙ୍କୁ ଲୋକେ ଶ୍ରଦ୍ଧାରେ 'ତିନି ଦାଶ' କହିବା ଶୁଣିଛି। ପ୍ରଥମ ଦାଶଦ୍ୱୟଙ୍କ ସହିତ ମୁଁ ଅବଶ୍ୟ ସ୍ଥାନ ପାଇବାକୁ ବିଶେଷ ଯୋଗ୍ୟ ବୋଲି ଭାବୁନାହିଁ।

ଦେବେନ୍ଦ୍ରବାବୁ ପ୍ରକୃତ ବୟସ ଦୃଷ୍ଟିରୁ ମୋଠାରୁ ପ୍ରାୟ ଏକବର୍ଷ ସାନ। କିନ୍ତୁ ଆନୁଷ୍ଠାନିକ ଶିକ୍ଷାଦୃଷ୍ଟିରୁ ସେ ପ୍ରାୟ ଦୁଇବର୍ଷ ସିନିୟର। ସେଇ ଭାବେ ଆମର ସମ୍ପର୍କ ଗଢ଼ିଉଠିଥିଲା। ଗୌରାଙ୍ଗବାବୁଙ୍କ ପୁତ୍ରମାନଙ୍କ ବ୍ରତ ବିବାହାଦିରେ ଆମେ ତାଙ୍କର କୁଟାରିମୁଣ୍ଡା ଆଶ୍ରମରେ ମିଳିତହୋଇ ପାରସ୍ପରିକ ଆଳାପ ଆଲୋଚନାରେ ସମୟ ବିତାଇଥିଲୁ। ଦେବେନ୍ଦ୍ରବାବୁ ଉଦାର ଉନ୍ନତ ସରଳ ଓ ସ୍ୱଚ୍ଛ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ।

ସମସାମୟିକ କାଳରେ ତାଙ୍କପରି ଶକ୍ତିଶାଳୀ ଗବେଷକ ଦୁର୍ଲଭ। ତାଙ୍କୁ କେହି କେହି 'ଦ୍ୱିତୀୟ ନଟବର ସାମନ୍ତରାୟ' କହନ୍ତି। ଗବେଷଣା କ୍ଷେତ୍ରରେ ସେ ଥିଲେ ଅତି ନିଷ୍ପାପର ଓ ଆପୋଷହୀନ ଭାବେ ସତ୍ୟସନ୍ଧାନୀ। ତାଙ୍କର ମାନସିକ ଦୃଢ଼ତା ଥିଲା ଅସାଧାରଣ।

ସେ ପାର୍ଥିବ ଜୀବନର ସ୍ୱାର୍ଥକୈନ୍ଦ୍ରିକ ସମୃଦ୍ଧି ଲିପ୍‌ସାଠାରୁ ଥିଲେ ବହୁଦୂରରେ । ପିଏଚ୍‌ଡ଼ି, ଡିଲିଟ୍ ଆଦି ଆନୁଷ୍ଠାନିକ ଗବେଷଣାରେ ସେ ବିଶ୍ୱାସୀ ନଥିଲେ । ପ୍ରଫେସର ବନିବାର ମୋହ ତାଙ୍କର ନଥିଲା । ସେ ଥିଲେ ନିରଳସ ଗବେଷକ । Textual Criticism କ୍ଷେତ୍ରରେ ସେ ଥିଲେ ଅଦ୍ୱିତୀୟ ସାଧକ । ସେ ହିଁ ଥିଲେ ତାଙ୍କର ବିକଳ୍ପ ।

ଦେବେନ୍ଦ୍ରବାବୁଙ୍କ ଦିବଂଗତ ଆତ୍ମାର ସଦ୍‌ଗତି ପାଇଁ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛି ।

*ଅନୁଗୋଳ*



କୃଷ୍ଣଚନ୍ଦ୍ର ପ୍ରଧାନ

# ଜଣେ ଥିଲେ ଦେବେନ୍ଦ୍ର

ବୋଧହୁଏ ୨୦୦୦ ମସିହା ଅଗଷ୍ଟ ମାସର କେଉଁ ଏକ ଦିନ। ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର ଅତିଥି ଭବନରେ ସେ ଥିଲେ। କିଛି ତଥ୍ୟ ସଂଗ୍ରହ କରିବା ଉଦ୍ଦେଶ୍ୟରେ ସେ ଆମ ପାଠାଗାରକୁ ଆସିଥିଲେ। ପ୍ରଫେସର ସୁଦର୍ଶନ ଆଚାର୍ଯ୍ୟଙ୍କ ସହିତ କୌଣସି ବିଷୟରେ ଆଲୋଚନା କରୁଥିଲେ। ତାଙ୍କ ସହିତ ମୋର ପୂର୍ବରୁ ସାମାନ୍ୟ ପରିଚୟ ଥିଲେ ହେଁ ଆମ ଅତିଥି ଭବନରେ ଅବସ୍ଥାନ ମତେ ତାଙ୍କ ନିକଟବର୍ତ୍ତୀ କରିଥିଲା। ସେହିଦିନଠାରୁ ସମ୍ପର୍କର ଡୋର ମଜଭୁତ ହୋଇ ଲମ୍ବିଯାଇଥିଲା ସେ ଶେଷନିଃଶ୍ୱାସ ତ୍ୟାଗ କରିବା ପର୍ଯ୍ୟନ୍ତ। ମୁଁ ପୂର୍ବରୁ ପ୍ରଫେସର ଗଗନେନ୍ଦ୍ରନାଥ ଦାଶଙ୍କଠାରୁ ତାଙ୍କର ପ୍ରଶଂସା ଶୁଣିଥିଲି। ତାଙ୍କ ସମ୍ପର୍କରେ ଆସିବାଦ୍ୱାରା ଦେବେନ୍ଦ୍ରବାବୁଙ୍କ ଜ୍ଞାନର ଗଭୀରତା, ବହୁପାଠିତା, ଗଭୀର ଅନୁସନ୍ଧିତ୍ସା ଓ ମଣିଷପଣିଆ ସମ୍ବନ୍ଧରେ ଭଲଭାବେ ଜାଣିଲି। ଏକାଧିକ ଆଲୋଚନାଚକ୍ରରେ ଆମେ ଉଭୟେ ଯୋଗ ଦେଇଛୁ। ଗୋଟିଏ ବିଷୟକୁ କେତେ ଗଭୀରକୁ ଯାଇ ତର୍ଜମା କରାଯାଇପାରେ, ତାହା ତାଙ୍କଠାରେ ଦେଖିବାକୁ ପାଇଥିଲି। ଉଭୟେ ଗୋଟିଏ ପ୍ରକଳ୍ପରେ କାର୍ଯ୍ୟ କରିବା ସମୟରେ ମୁଁ ତାଙ୍କଠାରୁ ଅନେକ ବିଷୟ ଶିକ୍ଷା କରିଛି। ଏମିତି କୌଣସି ତାତ୍ତ୍ୱିକ ବିଷୟ ବା ସମସ୍ୟା ନାହିଁ, ଯାହା ତାଙ୍କଦ୍ୱାରା ସମାଧାନ ହୋଇପାରି ନାହିଁ।

ନିଖିଳ ଭାରତ ଅଧ୍ୟାପକ ସମ୍ମେଳନର ସେ ଥିଲେ ସଭାପତି ଓ ମୁଁ ଥିଲି କାର୍ଯ୍ୟକାରୀ ସଭାପତି। ତାଙ୍କର ସଂଗଠନ ସମ୍ପୃକ୍ତି ମତେ ଆଶ୍ଚର୍ଯ୍ୟ କରିଛି। ଧିମେଇ ପଡ଼ିଥିବା ସମ୍ମିଳନୀ ତାଙ୍କ ନେତୃତ୍ୱରେ ଚଳଚଞ୍ଚଳ ହୋଇ ଉଠିଥିଲା। ସଂଗଠନର ସମସ୍ତ ସଦସ୍ୟଙ୍କୁ ଏକତ୍ରିତ କରି କିପରି ଜୀବନ୍ତ ଓ ଗତିଶୀଳ କରାଯାଇପାରେ, ସେ କଳା ତାଙ୍କୁ ବେଶ୍ ଜଣାଥିବାରୁ ଦ୍ୱିତୀୟ ଥର ମଧ୍ୟ ସେ ବିନା ପ୍ରତିଦ୍ୱନ୍ଦ୍ୱିତାରେ ସଭାପତି ଭାବରେ ନିର୍ବାଚିତ ହୋଇଥିଲେ। ଗୋଟିଏ ସଂଗଠନ ଚଳାଇବାପାଇଁ କିପରି ଧୈର୍ଯ୍ୟ, ସହନଶୀଳତା ଓ ବୁଦ୍ଧିମତାର ଆବଶ୍ୟକତା

ରହିଛି, ତାହା ମୁଁ ତାଙ୍କଠାରୁ ଶିଖିଥିଲି । ତାଙ୍କ ଅବର୍ତ୍ତମାନରେ ଅଧାପକ ସମ୍ମେଳନର ଭବିଷ୍ୟତ କ'ଣ ହେବ, ତାହା ବର୍ତ୍ତମାନ ଏକ ବଡ଼ ପ୍ରଶ୍ନ ହୋଇଛି ।

ମୁଁ ବ୍ୟକ୍ତିଗତ ଭାବରେ ତାଙ୍କ ନିକଟରେ ବହୁ ଭାବରେ ଋଣୀ । 'ଚର୍ଯ୍ୟାପଦ'ର ସଂକଳନ ଓ ସମ୍ପାଦନା ଦାୟିତ୍ୱ ସେ ମତେ ଦେଇଥିଲେ । କେବଳ ଦାୟିତ୍ୱ ଦେଇ ନଥିଲେ, ଏତଦ୍ ସମ୍ପର୍କୀୟ ଅନେକ ପୁସ୍ତକ ତାଙ୍କ ପାଠାଗାରରୁ ମତେ ଦେଇଥିଲେ । କେଉଁ ଦୃଷ୍ଟିକୋଣରୁ ତା'ର ସମ୍ପାଦନା କରାଯିବ, ଆଲୋଚନାର ଦୃଷ୍ଟିଭଙ୍ଗୀ କ'ଣ ରହିବ, ବିଭିନ୍ନ ପାଠକୁ କିପରି ମିଶାଯିବ, ଶବ୍ଦକୋଷ କେଉଁ ନିୟମରେ ପ୍ରଣୟନ କରାଯିବ- ବିଭିନ୍ନ ବିଷୟରେ ସେ ମୋତେ ପରାମର୍ଶ ଦେବା ସହିତ ଉତ୍ସାହିତ କରିଛନ୍ତି । ଆଜି ଯେତେବେଳେ ସେହି ପୁସ୍ତକଟି ପ୍ରକାଶନର ଆଲୋକ ଦେଖିବାକୁ ଯାଉଛି, ସେତେବେଳେ ସେ ଆମ ଗହଣରେ ନାହାନ୍ତି । ତାଙ୍କ ଅବର୍ତ୍ତମାନ ମତେ ଭୀଷଣ ଭାବରେ ବ୍ୟଥିତ କରିଛି । ଓଡ଼ିଆ ସାହିତ୍ୟ ଜଣେ ଉଚ୍ଚକୋଟୀର ଗବେଷକ ଓ ସାହିତ୍ୟିକଙ୍କୁ କେବଳ ହରାଇଲା ନାହିଁ, ଓଡ଼ିଶା ଜଣେ ବିଶିଷ୍ଟ ଚିନ୍ତକ, ବାଗ୍ମୀ ଓ ବୁଦ୍ଧିଜୀବୀଙ୍କୁ ମଧ୍ୟ ହରାଇଲା ।

ଓଡ଼ିଆ ଭାଷା ଓ ସାହିତ୍ୟ ଏକ ସମର୍ପିତ ବ୍ୟକ୍ତିଙ୍କୁ ହରାଇଲା । ତାଙ୍କର ଉତ୍ତୁଙ୍ଗ ବ୍ୟକ୍ତିତ୍ୱ, ପାଣ୍ଡିତ୍ୟ, ବହୁଶାସ୍ତ୍ରଦର୍ଶିତା ଓ ଏଷଣାର ପଟାନ୍ତର ନାହିଁ । ସମ୍ପାଦନାରେ ତାଙ୍କ ବୌଦ୍ଧିକ ଓ ପାଣ୍ଡିତ୍ୟପୂର୍ଣ୍ଣ ମୁଖବନ୍ଧ ଗୋଟିଏ ଗୋଟିଏ ଉଚ୍ଚମାନର ସନ୍ଦର୍ଭ ହେବାର ଯୋଗ୍ୟତା ରଖେ । ସମାଲୋଚନାରେ ତାଙ୍କର ଗଭୀର ଅନୁସନ୍ଧିତ୍ସା, ପାଣ୍ଡିତ୍ୟପୂର୍ଣ୍ଣ ବିଶ୍ଳେଷଣ, ମୌଳିକ ବିଚାରଦୃଷ୍ଟି, ତୁଳନାତ୍ମକ ଓ ସଂରଚନାତ୍ମକ ବିଚାର ପଦ୍ଧତି ଓ ସର୍ବୋପରି ବସ୍ତୁନିଷ୍ଠ ଭାବଧାରା ତାଙ୍କୁ ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର କରି ଚିହ୍ନାଇ ଦେଇଥାଏ । ବାସ୍ତବରେ ଓଡ଼ିଆ ସାହିତ୍ୟରେ ସେ ଥିଲେ ଜଣେ ବିଦ୍ୱାନ ଗବେଷକ । ପାଶ୍ଚାତ୍ୟ ସାହିତ୍ୟ ତତ୍ତ୍ୱର ମନନଶୀଳ ଅଧ୍ୟୟନ, ସ୍ରଷ୍ଟା-ସୃଷ୍ଟିର କାଳ ନିରୂପଣ ଓ ଭାବାବୋଧରେ ବିଜ୍ଞାନସମ୍ମତ ବିଚାରଦୃଷ୍ଟି, ବିଷୟ ବିଶ୍ଳେଷଣରେ ଯୌକ୍ତିକ ଉପସ୍ଥାପନା, ବିସ୍ମୃତ ପ୍ରତିଭା ତଥା କୃତିର ଉଦ୍ଧାର, ଲୁପ୍ତପ୍ରାୟ ପତ୍ର-ପତ୍ରିକାର ସଂଗ୍ରହ ଓ ଆଲୋଚନା ଏବଂ ଅନେକ କ୍ଷେତ୍ରରେ ନୂତନ ଦୃଷ୍ଟି ସଂପାତ ତାଙ୍କ ଗବେଷଣା ଓ ସମାଲୋଚନାକୁ ଦେଇଛି ନୂତନ ଦିଶା । ତାଙ୍କ ପୁସ୍ତକ (ସମ୍ପାଦନା ଓ ମୌଳିକ) ପଢ଼ିଲେ ଜ୍ଞାନଦୃଷ୍ଟି ଉନ୍ମୀଳନ ହୁଏ ଓ ଚିନ୍ତାର ପରିଧି ପରିବ୍ୟାପ୍ତ ହୋଇଥାଏ । ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ ସେ ରାଶିରାଶି ପ୍ରବନ୍ଧ ରଚନା କରିଛନ୍ତି । ବହୁ ଜାତୀୟ ଓ ଆନ୍ତର୍ଜାତିକ ପତ୍ର-ପତ୍ରିକାରେ ତାଙ୍କର ପ୍ରବନ୍ଧ ପ୍ରକାଶପାଇଛି ।

ମଣିଷ ଭାବରେ ସେ ଥିଲେ ଅନନ୍ୟ । ତାଙ୍କର ବଡ଼ ଗୁଣ ହେଉଛି, କନିଷ୍ଠମାନଙ୍କୁ ସର୍ବଦା ପ୍ରଶଂସା କରିବା ଓ ଉଚ୍ଚସ୍ଥାନ ଦେବା । ଅନେକ ଆଲୋଚନା ସଭାରେ ମୋ ଅଜାଣତରେ ସେ ମତେ ସଭାପତି ଆସନରେ ବସାଇ ନିଜେ ଆଲୋଚକର ଭୂମିକା ନେଇଥାନ୍ତି; ମାତ୍ର ମୁଁ

ସେହି କାର୍ଯ୍ୟକ୍ରମକୁ ପରିବର୍ତ୍ତନ କରି ବରିଷ୍ଠତା ଏବଂ ଜ୍ଞାନଦୃଷ୍ଟିରୁ ସର୍ବଦା ସଭାପତି ଆସନରେ ବସାଇଛି । କୌଣସି ଅଜ୍ଞାତ ଓ ଜଟିଳ ବିଷୟକୁ ସେ ଏତେ ସରଳ ଓ ଚମତ୍କାର ଭଙ୍ଗୀରେ ଉପସ୍ଥାପନ କରିଥାନ୍ତି ଯେ, ତା'ର ପଟ୍ଟାନ୍ତର ନାହିଁ । ମତେ ଲାଗୁଛି, ମୁଁ ଯେପରି ଦିଗ୍‌ଦର୍ଶନ ଶୂନ୍ୟ ହୋଇଗଲି । ପ୍ରତ୍ୟେକ ଜଟିଳ ବିଷୟର ସମାଧାନ ତାଙ୍କ ମାଧ୍ୟମରେ ମୁଁ ସମାହିତ କରୁଥିଲି । ବୋଧହୁଏ ଭବିଷ୍ୟତରେ ମୋର ସେହି ଅସୁମାରି ଜଟିଳ ସମସ୍ୟା ଓ ଅନେକ ଅଜ୍ଞତା ସେହିପରି ଅସମାଧିତ ରହିଯିବ ବୋଲି ଆଶଙ୍କା କରୁଛି । ତାଙ୍କର ମରଶରୀର ପଞ୍ଚଭୂତରେ ଲୀନ ହୋଇଯାଇଛି, କିନ୍ତୁ ମୋ ଅନୁଭବରେ ସେ ଚିର ଜୀବନ୍ତ ହୋଇ ରହିଥିବେ । ହେ ଜ୍ଞାନତପସ୍ୱି ! ଆପଣଙ୍କୁ ମୋର ଶ୍ରଦ୍ଧାଞ୍ଜଳି ଓ ବିନମ୍ର ପ୍ରଣତି ଜଣାଇ ରାଧାନାଥଙ୍କ ଭାଷାରେ କହିବାକୁ ଇଚ୍ଛା ହେଉଛି–

"ତୁମ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମେ ଆୟୁଷ୍ମାନ ।"

*କୋରାପୁଟ*

### ପ୍ରଦୀପ୍ତ କୁମାର ପଣ୍ଡା

## ଛତା ଉଡ଼ିଗଲା

ଦେବେନ୍ଦ୍ର ଭାଇନା ମୋ ମୁଣ୍ଡ ଉପରେ ଛତାଭଳି ଥିଲେ। ଖରା, ବର୍ଷା, ଶୀତ, କାକର ସବୁକୁ ଥିଲେ ରକ୍ଷାକାରୀ। ଖାଲି ସାହିତ୍ୟ ନୁହେଁ, ଘରସଂସାର, ପରିବାର, ସମାଜ, ରାଜନୀତି, ଅର୍ଥନୀତି, ଜୀବନଦର୍ଶନ ସବୁପାଇଁ ସେ ଥିଲେ ମୋର ଚରମ ଓ ପରମ ଉପଦେଷ୍ଟା। ତାଙ୍କ ଉପଦେଶ ହିଁ ଅନେକ ସମୟରେ ମନକୁ ଘେନେ ଓ ତାହା ହିଁ କାର୍ଯ୍ୟରେ ପରିଣତ ହୁଏ। ଓଡ଼ିଶା ସରକାରଙ୍କ କଲେଜମାନଙ୍କରେ ବହୁସ୍ଥାନରେ ଚାକିରି କରି ଅବସର ନେଇଥିବାରୁ ଅନେକ ଛାତ୍ର ବହୁ ସମୟରେ ନାନା ସମସ୍ୟା ବିଷୟରେ ପ୍ରଶ୍ନ କରନ୍ତି। ଉତ୍ତର ଦେବାଲୋକ କେବଳ ଜଣେ। ସେ ହେଲେ ଦେବେନ୍ଦ୍ର କୁମାର ଦାଶ।

ଦେବେନ୍ଦ୍ର ଭାଇନାଙ୍କ ସହ ମୋର ପରିଚୟ ମାତ୍ର ଅଳ୍ପ କେତେ ବର୍ଷ ତଳର। ଆଗରୁ ମୁଁ ତାଙ୍କୁ ଜାଣିଥିଲି ଲେଖାରୁ, ଭାଷଣରୁ। କିନ୍ତୁ ପ୍ରତ୍ୟକ୍ଷ ପରିଚୟ ହେଲା ରମାଦେବୀରେ ଚାକିରି କଲା ପରେ। ସେ ସେତେବେଳେ ତାଙ୍କର ପ୍ରାଚୀନ କର୍ମକ୍ଷେତ୍ର ରାଉରକେଲା ଛାଡ଼ି ଭୁବନେଶ୍ୱର ଆସିଥାନ୍ତି। ଏଠିକାର ପାଣିପାଗ ଲୋକଚରିତ୍ର ତାଙ୍କୁ ସୁହାଉ ନ ଥାଏ। ଠିକ୍ ଏହି ସମୟରେ ମୋ ଭଳି ଏକ ଅଦରକାରୀ ମଣିଷ ତାଙ୍କର ନିକଟତର ହୁଏ। କେଜାଣି କାହିଁକି ସେଇ ପ୍ରଥମ ଦେଖାରୁ ଲୋକଟିର ବ୍ୟବହାର, ପାଣ୍ଡିତ୍ୟ, ସାଧୁତା ଓ ସ୍ପଷ୍ଟବାଦିତା ମୋତେ ତାଙ୍କ ପ୍ରତି ଆକୃଷ୍ଟ କରେ। ଏତେ ସବୁ ଥାଇ ତାଙ୍କର ପ୍ରଚାର ବିମୁଖତା ମୋତେ ଖୁବ୍ ଭଲ ଲାଗେ; ଯେଉଁଥିଲାଗି ବନ୍ଧନରେ ଅଠା ଲାଗିଯାଏ। ଆଉ ଛାଡ଼େନା। ଭାରି କଷ୍ଟ ହେଉଛି ଏବେ ଏଇ ହଠାତ୍ ଛାଡ଼ିପଡ଼ିବାଟାକୁ।

ଭାଇନା ବାଙ୍ଗାଲୋରରୁ ଚାଲି ଆସିଲେ ଆୟକର ବାର୍ଷିକ ବିବରଣୀ ଜୁଲାଇ ପୂର୍ବରୁ ଦାଖଲ କରିବେ ଓ ଅନ୍ୟାନ୍ୟ କେତେକ ଜରୁରୀ କାମ ଲାଗି। ନହେଲେ ଆଣ୍ଠୁ ଅପରେସନ୍ ପରେ ସେ ଭାଉଜଙ୍କୁ ଏକଲା ଛାଡ଼ି ଆସି ନଥାନ୍ତେ। ଏ କେତେ ବର୍ଷ ହେଲା ମୁଁ ତାଙ୍କର

ଆୟକର ରିଟର୍ଣ୍ଣ ଦାଖଲ କରୁଥିଲି ଏଥର ବି ଚାରି ହଜାର ଛଅଶହ ଟଙ୍କା ତାଙ୍କୁ ଦେବାକୁ ପଡ଼ିଲା ସରକାରଙ୍କୁ। ମୁଁ ଦେଇଦେଇଛି, ଆପଣ ମୋତେ ଦେଇଦେବେ କହିଲାରୁ ସେ ରାଜି ହେଲେନି। ନା ନା ମୁଁ ନିଜେ ଯାଇ ବ୍ୟାଙ୍କରେ ଦେବି। ତାଙ୍କ ପାଇଁ କାମ ଆଉ କିଏ କରୁ, ସେ କଥା ତାଙ୍କୁ ମୋଟେ ଭଲ ଲାଗୁ ନଥିଲା। ସେ କେତେକ ବୈଷୟିକ କଥାରେ ବେଳେବେଳେ ମୋର ସହାୟତା ନେଉଥିଲେ। କିନ୍ତୁ ଛୋଟ ସାହାଯ୍ୟଟିଏ ଲାଗି ସେ ଏତେ କୃତଜ୍ଞତା ପ୍ରକାଶ କରୁଥିଲେ ଯେ ମୋତେ ଅନେକ ସମୟରେ ଲାଜ ଲାଗୁଥିଲା। ସମ୍ବଲପୁର ଯିବା ପାଇଁ ସେ ଟିକେଟ୍ କରିଥିଲେ। ବାଲେଶ୍ୱରରେ ଫକୀରମୋହନ ସାହିତ୍ୟ ପରିଷଦ ଓ କେନ୍ଦ୍ର ସାହିତ୍ୟ ଅକାଦେମୀର ‘ଫକୀର ମୋହନ ସାହିତ୍ୟରେ ଐତିହାସିକ ଚିତ୍ର’ ସଂପାନରେ ଭିତ୍ତି ପ୍ରବନ୍ଧ ପଢ଼ିବାକୁ ଯିବାପାଇଁ ଗାଡ଼ି ମୁଁ ଠିକ୍ କରି ଦେଇଥିଲି। ମୋ ଘର ପାଖରେ ଜଣେ ବିଶ୍ୱସ୍ତ ଡ୍ରାଇଭରବନ୍ଧୁଙ୍କ ଗାଡ଼ିରେ ସେ ଓ ଦୀପ୍ତିବାବୁ ବାଲେଶ୍ୱର ଯାଇଥିଲେ। ଗଙ୍ଗାଧର, ରାଧାନାଥ ଓ ଫକୀରମୋହନ ସାହିତ୍ୟର ସେ ଥିଲେ ଅପ୍ରତିଦ୍ୱନ୍ଦ୍ୱୀ ସମୀକ୍ଷକ; ଯାହା ତାଙ୍କର ଶେଷଜୀବନ ପାଇଁ କାଳ ହେଲା। ଲାଗଲାଗ ସମ୍ବଲପୁର ଓ ବାଲେଶ୍ୱର ସଭାରେ ଯୋଗ ଦେବା ପାଇଁ ଯିବା ତାଙ୍କ ଅସୁସ୍ଥତା ବଢ଼ାଇ ଦେଲା। ଯାହାବି ହେଲା ତାଙ୍କର ମନୋବଳ ଏତେ ଦୃଢ଼ ଥିଲା ଯେ ସେ ଆରମ୍ଭରୁ ଡାକ୍ତରୀ ଚିକିତ୍ସା ପାଇଁ ରାଜି ହେଲେନି। ନ ହେଲେ ହୁଏତ ଆଜି ଆମେ ଛତା ଛେଉଣ୍ଡ ହୋଇ ଯାଇ ନଥାନ୍ତୁ।

ଅଗଷ୍ଟ ୨୧ ସନ୍ଧ୍ୟାରେ ଭାଇନା ମୋତେ ଫୋନ୍ କଲେ। ତା’ ପୂର୍ବରୁ ପ୍ରାୟ ତିନିଚାରିଥର ମୁଁ ଯାଇ ତାଙ୍କୁ ଡାକ୍ତରଙ୍କୁ ଦେଖାଇବାକୁ ବାଧ୍ୟ କରିଥିଲି। ସେ ତାଙ୍କର ପଡ଼ୋଶୀ ଦୁଇ ଡାକ୍ତର ବନ୍ଧୁଙ୍କ ସହ ପରାମର୍ଶ କଲେ। କିନ୍ତୁ ଡାକ୍ତରଖାନା ଯାଇ ପରୀକ୍ଷା କଲେନି। ଅଗଷ୍ଟ ୨୧ରେ ଉତ୍କଳ ସାହିତ୍ୟ ସମାଜର ନିର୍ବାଚନ ଥିଲା। ସେଥିରେ ଭୋଟ୍ ଦେବାକୁ ସେ ଅସୁସ୍ଥତା ଯୋଗୁ ଯାଇ ପାରି ନଥିଲେ। ମୁଁ ଯାଉଯାଉ ମୋତେ ପଚାରିଲେ କିଏ ଜିତିଲା ? ଗୋବିନ୍ଦ ଚାନ୍ଦଙ୍କୁ ସେ ବହୁତ ସ୍ନେହ କରୁଥିଲେ। ତାଙ୍କର ଜିତିବା ଖବର ଶୁଣି ଭାଇନା ଖୁବ୍ ଆନନ୍ଦିତ ହେଲେ। ମୋତେ ତାଙ୍କ ସଂପାଦିତ ‘ଫକୀରମୋହନ ସେନାପତିଙ୍କ ଗଳ୍ପ ସମଗ୍ର’ ବହିଟି ଦେଲେ। କହିଲେ, “ଆପଣଙ୍କୁ ଏ ବହିଟି ପ୍ରଥମେ ଦେବାରୁ ମୋତେ ଖୁବ୍ ଭଲ ଲାଗିଲା।” ବହିଟିର ସୁନ୍ଦର ମୁଦ୍ରଣକୁ ଉଭୟେ ପ୍ରଶଂସା କଲୁ। ପ୍ରାୟ ଦଶ ବର୍ଷ ତଳୁ ବହିଟି ପଡ଼ିଥିଲା। ଏନ୍‌ବିଟିର ପ୍ରମୋଦବାବୁ ବହୁ ମନଦୁଃଖ କରି ମୋତେ ଦିଲ୍ଲୀରେ କହିଲେ, “ମୁଁ ତାଙ୍କ ନିକଟରେ ପ୍ରତିଶ୍ରୁତି ଦେଇଥିଲି ଯେପରି ହେଲେ ଭାଇନାଙ୍କୁ କହି ବହିଟିକୁ ସମ୍ପୂର୍ଣ୍ଣ କରାଇବି ବୋଲି। କରୋନାର ବନ୍ଦ ସମୟରେ କେତେକ ସନ୍ଧ୍ୟାରେ ଶ୍ରୁତଲିଖନ ନେଇ ତା’ର ୫୪ ପୃଷ୍ଠାର ପ୍ରସ୍ତାବନାଟି ପ୍ରସ୍ତୁତ ହେଲା। ସେଥିପାଇଁ ଭାଇନା ମୋତେ ପ୍ରଥମ ବହିଟି ଦେବାକୁ ଇଚ୍ଛା କରିଥିଲେ। ଆହୁରି ଅନେକ କଥା ସେମିତି ଅଧା ରହିଗଲା। ଭାଇନାଙ୍କୁ

ମୁଁ କହିଥିଲି, ସେଗୁଡ଼ିକ ଯେମିତି ହେଲେ ପୂର୍ଣ୍ଣ କରିବା। କିନ୍ତୁ ସାରଳା ମହାଭାରତ କାମରେ ମୋର ସମ୍ପୃକ୍ତି ଓ ଆଳସ୍ୟ ଓଡ଼ିଆ ସାହିତ୍ୟକୁ ସେ ସବୁରୁ ବଞ୍ଚିତ କଲା। ଏଥିପାଇଁ କେବେହେଲେ ମୁଁ ନିଜକୁ କ୍ଷମା ଦେଇ ପାରିବି ନାହିଁ। ନିରବଧିକାଳ, ବିପୁଳାଚ ପୃଥୀରେ ହୁଏତ କେତେ ଜ୍ଞାନୀଗୁଣୀ ଲୋକ ଜନ୍ମନେବେ। କିନ୍ତୁ ସାହିତ୍ୟକୁ ନିକୁଟି ନିକୁଟି ପଢ଼ି ତା'ର ଅସଲ ମଞ୍ଜକୁ ପାଠକଙ୍କ ନିକଟରେ ଉପସ୍ଥାପନା କରିବା ପରି ଲୋକ ଆଉ ଜନ୍ମିବେ କି ନାହିଁ ମୋର ସନ୍ଦେହ।

ଭାଇନା ମୋ ବାଧ୍ୟବାଧକତାରେ ଓଡ଼ିଆ ଅଧ୍ୟାପକ ସମ୍ମେଳନ ସହିତ ସଂପୃକ୍ତ ହୋଇଥିଲେ। ପରେ ତା' ସହ ସେ ଏତେ ଜଡ଼ିତ ହୋଇପଡ଼ିଲେ ଯେ ନିଜେ ତା'ର ସଭାପତି ହେଲେ। ଓଡ଼ିଆ ଅଧ୍ୟାପକମାନଙ୍କର ସାମଗ୍ରିକ ବିକାଶ ହେଉ ଏହା ସେ ସର୍ବଦା ଇଚ୍ଛା କରୁଥିଲେ। ହାତରୁ ପଇସା ଖର୍ଚ୍ଚ କରି ସଭାସମିତିମାନ କରାଉଥିଲେ। ଘରେ ସଭା ଡକାଇ ଆମକୁ ଖରାବେଳେ ପାଖ ହୋଟେଲରେ ଜବରଦସ୍ତ ଖୁଆଇ ବିଦା କରୁଥିଲେ। ଖାଲି ଅଧ୍ୟାପକ ସମ୍ମେଳନ ନୁହେଁ, ତାଙ୍କ ଲେକ୍‌ଭିଉ ହୋମ୍‌ର ବିକାଶ ପରିଷଦର ସେ ସଭାପତି ଥାଇ ଅନେକ ବିକାଶମୂଳକ କାମ ମଧ୍ୟ କରିଥିଲେ। ସେଥିପାଇଁ ଆଜି ସମସ୍ତେ ତାଙ୍କୁ ଝୁରି ହେଉଛନ୍ତି। ମଣିଷ ଭଳି ମଣିଷଟିଏ ଥିଲେ ଭାଇନା। ତାଙ୍କର ଅନୁପସ୍ଥିତି ଆଜି ଆମ ସମସ୍ତଙ୍କୁ ଏତେ ଆଘାତ ଦେଇଛି, ତାହା କଥାରେ କହି ହେବନି। ସବୁଦିନ ଲାଗି ବ୍ୟକ୍ତିଗତ ଭାବେ ମୋ ମୁଣ୍ଡର ଛାତଟି ଉଡ଼ିଗଲା, ଯାହା ମୃତ୍ୟୁ ଯାଏ ଅପୂରଣୀୟ ରହିବ। ଭାଇନା ଆରପୁରରେ। ମୁଁ ଏଠି। ଦୂରରେ ରହି ଖାଲି ପ୍ରଣାମଟିଏ କରୁଛି। ଗ୍ରହଣ କରବେ। ସର୍ବଦା ଆପଣଙ୍କ ଆଶୀର୍ବାଦ ଯେପରି ମୋ ଉପରେ ଥିବ, ଏତିକି ପ୍ରାର୍ଥନା।

ଭୁବନେଶ୍ୱର

অভিরাম বিশ্বাল

# জ্ঞান, নৈতিকতা ও সহৃদয়তার সংগম

ଏବେ ବି ବିଶ୍ୱାସ ଓ ଗ୍ରହଣ କରିବାକୁ ଅତି କଷ୍ଟ ଲାଗୁଛି ଯେ ଦେବେନ୍ଦ୍ରବାବୁ, ଦେବେନ୍ଦ୍ର ଭାଇନା, ଦେବେନ୍ଦ୍ର ଦାଶ, ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶ (୧୯୫୪-୨୦୨୨) ମାତ୍ର ୬୮ ବର୍ଷ ବୟସରେ ଚାଲିଯାଇ ପାରନ୍ତି ଓ ଚାଲିଗଲେ ! କ୍ରିକେଟ୍‌କୁ ଭଲ ପାଉଥିବା ଦେବେନ୍ଦ୍ରବାବୁଙ୍କୁ ଆମେ ଅନେକ ସମୟରେ ମଜାରେ କହୁଥିଲୁ- ଆପଣ ନିଶ୍ଚୟ ଶତକ ଅପରାଜିତ ରହିବେ। ସିଏ ତାଙ୍କ ଦାଢ଼ିରେ ହାତ ବୁଲେଇ ହସି ଦେଉଥିଲେ।

ତାଙ୍କ ସହ ପ୍ରଥମ ଦେଖା ହୋଇଥିଲା ୧୯୮୪ ମସିହା ନଭେମ୍ବର ମାସରେ। ମୁଁ ଜବାହରଲାଲ ନେହରୁ ବିଶ୍ୱବିଦ୍ୟାଳୟ ଛାଡ଼ି ରାଉରକେଲା ଆସୁଥାଏ ଅଧ୍ୟାପନା କରିବା ପାଇଁ। ରେଳ ଷ୍ଟେସନ୍‌ରେ ସିଏ ଅପେକ୍ଷା କରିଥାନ୍ତି। ପାଛୋଟି ନେଇ କହିଥିଲେ- ଆପଣ ଏଠି ଯେତେଦିନ ଯାଏ ଅଛନ୍ତି ଆପଣଙ୍କର କୌଣସି ଅସୁବିଧା ହେବନି। ପ୍ରାରମ୍ଭିକ ପରିଚୟ ସମୟକ୍ରମେ ଅତି ଘନିଷ୍ଠ ସମ୍ପର୍କରେ ପରିଣତ ହେଲା। ପରେ ସିଏ ସବୁବେଳେ ଅକୁଣ୍ଠଚିତ୍ତରେ ବିଦ୍ୟା, ବୁଦ୍ଧି, ସଖ୍ୟ, ଖାଦ୍ୟ, ସମୟ, ଐକ୍ୟ, ଆଳାପ, ଏକାନୁଭୂତି ଓ ଅର୍ଥ ବାଟେ ଅପ୍ୟାୟିତ କରିଚାଲିଥିଲେ।

ରାଉରକେଲାରେ ମୁଁ ଓ ଅଧ୍ୟାପକ-ଗୀତିକବି-ପରେ ପ୍ରଶାସକ ମନୋଜ ମହାନ୍ତି (ମନୋଜ ଭାଇ) ଏବଂ ଦେବେନ୍ଦ୍ର ବାବୁ ବାସନ୍ତୀ କଲୋନୀର ଗୋଟିଏ ଭଡ଼ାଘର ଏ.ଏଲ୍/୫୨ର ଦୁଇଟି ସଂଲଗ୍ନ କିନ୍ତୁ ସ୍ୱାଧୀନ ଓ ପୃଥକ୍ ଭାଗରେ ରହୁଥିଲୁ। ଘରମାଲିକ ସେକ୍ଟର୍ ପଟେ ରହୁଥିବା ପଲେଇବାବୁ ପ୍ରତିମାସ ଏକାଧିକ ଥର ଆସନ୍ତି; କିନ୍ତୁ କେବେ ବି ନିଜ ଆଡୁ ଭଡ଼ା କଥା ଉଠାନ୍ତିନି। ତାଙ୍କୁ ଭଡ଼ା ଦେଇ ଦେଉଛୁ କହିଲେ ତାଙ୍କଠୁଁ ଉତ୍ତର ମିଳେ- ନାଇଁ, ନାଇଁ, ମୁଁ ଏଥରକ କେବଳ ଆସିଥିଲି ଦେବେନ୍ଦ୍ରବାବୁଙ୍କ ବହି ଥାକରେ ନୂଆ ନୂଆ ବହି ଦେଖି ମୋ ମନ ଓ ନୟନକୁ ପବିତ୍ର କରିବା ପାଇଁ।

ଦେବେନ୍ଦ୍ର ବାବୁ ତାଙ୍କ ପଢ଼ାଘରେ ଶୀତ ଦିନେ ଧଳା ଧୋତି ଓ ଗଂଜି ପିନ୍ଧି କାଣ୍ଟିଆ ଘୋଡ଼େଇହୋଇ ସକାଳୁ ସକାଳୁ ଅଖିଆଅପିଆ ଆନ୍ତୋନିଓ ଗ୍ରାମ୍‌ଚି କିମ୍ବା ଲୁଇ ଆଲ୍‌ଥୁଜର୍ ପଢୁଥିବେ। କେବେ ବି ଚା' କି କଫି ପିଉନଥିବା ଦେବେନ୍ଦ୍ରବାବୁ ଆମେ ପହଞ୍ଚିଗଲେ ସାଙ୍ଗେସାଙ୍ଗେ ଚା' ନୋହିଲେ କଫି ସହ ଜଳଖିଆର ବ୍ୟବସ୍ଥା କରୁଥିଲେ। ଆଉ ଖରାଦିନ ଆସିଗଲେ ତାଙ୍କ କାନରେ ଆଗ ପଡୁଥିଲା ଉତ୍ତରପ୍ରଦେଶାଗତ ଜାମୁକୋଳି ବିକାଳିର ଡାକ- କାଳା କାଳା ହରଦ୍ୱାର୍‌ୱାଲା। ଆଦର୍ଶ ଆଳସ୍ୟରେ ବୁଡ଼ି ରହିଥିବା ଏ ଜାମୁକୋଳି ଡାଆଣାକୁ ସିଏ ସେ ଖବର ଦେଇଦେଉଥିଲେ।

ଅନେକ ଥର ସ୍କୁଟରରେ ବସେଇ ସିଏ ସାରା ରାଉରକେଲା ବୁଲେଇଛନ୍ତି। ରାଉରକେଲା ଷ୍ଟେସନ୍ ପାଖ ଦି ବେଷ୍ଟ୍ ପୁସ୍ତକଭଣ୍ଡାର ଥିଲା ଆମ ଦୁହିଁଙ୍କର ଅନ୍ୟତମ ଆଡ୍‌ଡା ଏବଂ ସେ ବହି ଦୋକାନ ସହ ସିଏ ମତେ ପ୍ରଥମେ ପରିଚିତ କରାଇଥିଲେ। ସୁନ୍ଦରଗଡ଼ ଓ ସମ୍ବଲପୁର ଜିଲ୍ଲାର ଅନେକ ପୁରୁଣା ପାଠାଗାର ଦେଖେଇଛନ୍ତି ଦେବେନ୍ଦ୍ର ବାବୁ। ଦିଲ୍ଲୀ, କଲିକତା, ବିଶ୍ୱଭାରତୀ, କଟକ, ଭୁବନେଶ୍ୱର, ବାଲେଶ୍ୱର ଓ ପୁରୀର କେତେକେତେ ପ୍ରାଚୀନ ସାରସ୍ୱତ ଅନୁଷ୍ଠାନଆୟୋଜିତ ସମାରୋହକୁ ବନ୍ଦୋବସ୍ତ କରି ଡାକି ନେଇଛନ୍ତି। ନିଜେ ବି ସିଏ ନିୟମିତ ରାଜ୍ୟ ଓ ଦେଶର ଅତି ଗୁରୁତ୍ୱପୂର୍ଣ୍ଣ ପାଠାଗାର, ପୁସ୍ତକାଳୟ, ଅଭିଲେଖାଗାର ଓ ସଂଗ୍ରହାଳୟକୁ ଯାଉଥିଲେ। ଥରେ ରାତି ବାରଟା ପାଖାପାଖି ପ୍ରଗତି ପାଠାଗାର ପଟୁ ରିଂ ରୋଡ୍‌ରେ ଆସୁଥିଲା ବେଳେ ଦ୍ରୁତଗାମୀ ଷ୍ଟିଲ୍ ପ୍ଲାଣ୍ଟ ବସ୍‌ଟିଏ ଆମ ଦୁଇଜଣଙ୍କ ଉପରେ ଚଢ଼ିଯାଇଥାନ୍ତା। ଖଣ୍ଡିଆଖାବରା ହୋଇ ସ୍କୁଟରରେ ଘରକୁ ଫେରିବା ବାଟରେ ସିଏ କହିଥିଲେ- ବର୍ତ୍ତିଗଲେ ମାନେ ଆମ ଦୁହେଁ ଦୀର୍ଘଜୀବୀ ହେବା।

ଗଙ୍ଗାଧର ମେହେର ମହାବିଦ୍ୟାଳୟ, ସମ୍ବଲପୁର ବିଶ୍ୱବିଦ୍ୟାଳୟ ଓ ଶାନ୍ତିନିକେତନରୁ ଓଡ଼ିଆ ଭାଷା-ସାହିତ୍ୟ ପଢ଼ିଥିବା ଦେବେନ୍ଦ୍ର ବାବୁ ବିଭିନ୍ନ ସମୟରେ ବିଶ୍ୱଭାରତୀ, ରାଉରକେଲାର ମ୍ୟୁନିସିପାଲ୍ ଓ ଇସ୍ପାତ୍ କଲେଜ, ଭୁବନେଶ୍ୱରସ୍ଥ କମଳା ନେହରୁ ମହିଳା ମହାବିଦ୍ୟାଳୟ ଏବଂ ରେଭେନ୍ସା ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରିଥିଲେ। ପ୍ରଥମଟିରେ ଥିଲେ ଅସ୍ଥାୟୀ ଅଧ୍ୟାପକ ଏବଂ ଶେଷଟିରେ ସ୍ୱତନ୍ତ୍ର ଆମନ୍ତ୍ରିତ ପ୍ରଫେସର। କମଳା ନେହରୁରେ ଥିଲାବେଳେ ସ୍ୱେଚ୍ଛାରେ ଅବସର ନେଇଥିଲେ ମୁଖ୍ୟତଃ ପୂର୍ଣ୍ଣକାଳୀନ ପଢ଼ାପଢ଼ି ଓ ଲେଖାଲେଖି ପାଇଁ। ଗବେଷକ, ପ୍ରାବନ୍ଧିକ, ସମାଲୋଚକ, ସମୀକ୍ଷକ, ସମ୍ପାଦକ, ଅନୁବାଦକ, ଭାଷ୍ୟକାର, ସଂକଳକ ଓ ଜନ ବିଦ୍ୱାନ୍ ଭାବେ ଦେବେନ୍ଦ୍ର ଦାଶଙ୍କ ଅବଦାନ ଥିଲା ପ୍ରଗାଢ଼ ତଥା ପଥପ୍ରଦର୍ଶକ। ଗଙ୍ଗାଧର, ମଧୁସୂଦନ, ଗୋପବନ୍ଧୁ, ଫକୀରମୋହନ, ନନ୍ଦକିଶୋର, ଗାନ୍ଧିଜୀ, ରାଧାନାଥ, ନଗେନ୍ଦ୍ରବାଳା, ଉତ୍କଳ ସମ୍ମିଳନୀ, ନନ୍ଦନତତ୍ତ୍ୱ, ଜ୍ଞାନମୀମାଂସା, ବହୁଶୃଙ୍ଖଳାଶ୍ରୟୀ ଅଧ୍ୟୟନ, ତୁଳନାତ୍ମକ ଅବଗାହନ, ବଂଗୋତ୍କଳ ସାଂସ୍କୃତିକ ଆଦାନପ୍ରଦାନ, ଭୀମଭୋଇ,

ମହିମାଧର୍ମ, ଲକ୍ଷ୍ମୀପୁରାଣ, ଅନୁବାଦ ଏବଂ ଓଡ଼ିଆ ଭାଷା, ସାହିତ୍ୟ ଓ ଅସ୍ମିତାର ଇତିହାସତତ୍ତ୍ୱ ଆଦି ଉପରେ ତାଙ୍କର ଏକକ ତଥା ମିଳିତ ଦ୍ୱିଭାଷୀ (ମୁଖ୍ୟତଃ ଓଡ଼ିଆରେ ଓ କେତେକ ଇଂରାଜୀରେ) ସର୍ଜନା ସର୍ବତ୍ର ଚର୍ଚ୍ଚାର ବିଷୟ ଥିଲା। ରାଜ୍ୟ, ଦେଶ ଓ ବିଶ୍ୱର ଇତିହାସ ସାଙ୍ଗକୁ ରାଜନୀତି ଉପରେ ତାଙ୍କର ଅଗାଧ ଅବଗତି ପ୍ରାୟ ସଭିଁଙ୍କୁ ଚମତ୍କୃତ କରୁଥିଲା।

ଖାଲି ଚିନ୍ତାଚେତନା ଓ ଲେଖାପଢ଼ାରେ ନିଜକୁ ସୀମିତ ରଖୁନଥିଲେ ଦେବେନ୍ଦ୍ରବାବୁ। ଅନୁଷ୍ଠାନ ଓ ସଂଗଠନ ବିନା ଚିନ୍ତାଚେତନାର ଭାଗ୍ୟ ଯେ କ'ଣ ସିଏ ଜାଣିଥିଲେ। ସଂଗଠନ ଓ ଅନୁଷ୍ଠାନପ୍ରିୟ ଦେବେନ୍ଦ୍ରଙ୍କର ପ୍ରଗତି ଉତ୍କଳ ସଂଘ, ପ୍ରଗତି ପାଠାଗାର, କଲ୍‌ଚରାଲ୍ ଏକାଡେମୀ, ଉତ୍କଳ ସାହିତ୍ୟ ସମାଜ, ଓଡ଼ିଶା ହେତୁବାଦୀ ସଂଗଠନ, ଓଡ଼ିଆ ଗବେଷଣା ପରିଷଦ, ବିଶ୍ୱଭାରତୀ ପ୍ରାକ୍ତନୀ ଓ ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନ ଆଦି ସହ ବିଭିନ୍ନ ଭୂମିକାରେ ନିବିଡ଼ ସମ୍ପର୍କ ଥିଲା। ସିଏ ଉଭୟ 'ମୁଣ୍ଡ ଖଟେଇବା ଓ ଖଟ ମୁଣ୍ଡେଇବା' ଜାଣିଥିଲେ। ଦେବେନ୍ଦ୍ର ବାବୁ ଓଡ଼ିଆକୁ ଖାଲି ଏକ ବିଷୟ ଓ ବିଭାଗ ବୋଲି ଭାବୁ ନଥିଲେ। ଜଣେ ବହୁଭାଷୀ ଓ ବହୁଶାସ୍ତ୍ରଦର୍ଶୀର ପଦ୍ଧତି, ପରିଭାଷା ଏବଂ ଅନୁଶୀଳନ ଆଭିମୁଖ୍ୟ ଅବଲମ୍ବନ କରୁଥିବା ଦେବେନ୍ଦ୍ର କୁମାର ଦାଶ ଏମିତି ଜଣେ ବିଦ୍ୱାନ୍ ଯିଏ କି ଶାସ୍ତ୍ରୀୟ ପରଂପରାର ହେବା ସାଙ୍ଗକୁ ଆଧୁନିକ ଓ ସମସାମୟିକ ସହ ଯୋଡ଼ି ହେବାକୁ ଆଦୌ କୁଣ୍ଠା ପ୍ରକାଶ କରୁନଥିଲେ। ଗୋଟିଏ ଲେଖା ଲେଖିଲା ବେଳେ ସିଏ ପ୍ରସଙ୍ଗଟିର ମୂଳକୁ, ପ୍ରକୃତ ଉତ୍ସ ଓ ସ୍ରୋତକୁ ଏବଂ ପୃଷ୍ଠଭୂମିକୁ ଠାବ କରିବା ସମେତ ପ୍ରସଙ୍ଗଟିର ଅନ୍ତରାଳେ କ୍ରିୟାରତ ପ୍ରବାହର ମାଟିବାଣୀ ଓ ଯୁଗଧର୍ମ ସହ ସମ୍ପର୍କଟିକୁ ସମସ୍ୟାଜର୍ଜରିତ ଢଙ୍ଗରେ ଉପସ୍ଥାପନ ତଥା ତର୍ଜମା କରୁଥିଲେ। ଓଡ଼ିଆ, ସମ୍ବଲପୁରୀ, ବଙ୍ଗଳା, ଇଂରାଜୀ ଓ ସଂସ୍କୃତ ଜାଣିଥିବା ଏବଂ କିଛି କିଛି ହିନ୍ଦୀ ବି ଜାଣିଥିବା ଦେବେନ୍ଦ୍ର ଦାଶଙ୍କ ପାଖରେ ବିବିଧ ପ୍ରବେଶ ଦ୍ୱାର ଓ ପଞ୍ଜିକା ବ୍ୟବହାର କରିବାର ବିରଳ ଦକ୍ଷତା ଉପଲବ୍ଧ ଥିଲା।

ଅନେକ ସମୟରେ ଆମ ଭିତରୁ କେତେକଙ୍କୁ ଲାଗୁଥିଲା ଏମିତି କିଛି ନାହିଁ ଯାହା ଦେବେନ୍ଦ୍ରବାବୁ ଜାଣି ନାହାଁନ୍ତି; ଆଉ ସିଏ ଜାଣି ନାହାଁନ୍ତି ମାନେ ସେ କଥାଟି ବୋଧହୁଏ ନ ଜାଣିଲେ ଚଳିବ ଓ ଜାଣିବା ଉପଯୋଗୀ ନୁହେଁ। ୧୫୦୪ ପୃଷ୍ଠା ସମ୍ବଳିତ 'ସମ୍ବାଦ-ଆମ ଓଡ଼ିଶା' ପ୍ରକାଶିତ ଅତ୍ୟନ୍ତ ଉପାଦେୟ ଓ ମହତ୍ତ୍ୱପୂର୍ଣ୍ଣ 'ସାହିତ୍ୟ କୋଷ' (୨୦୧୮)ର ସମ୍ପାଦନା ପ୍ରକ୍ରିୟାରେ ଦାଶରଥି ଦାସ, ସୁଦର୍ଶନ ଆଚାର୍ଯ୍ୟ ଓ ଗୌରାଙ୍ଗ ଦାଶଙ୍କ ସମେତ ଦେବେନ୍ଦ୍ର ଦାଶଙ୍କ ପ୍ରଜ୍ଞା ଓ ଅଭିଜ୍ଞତାର ଯଥେଷ୍ଟ ଭୂମିକା ଥିଲା। ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶଙ୍କୁ ଦେଖିବା ଓ ଜାଣିବା ପରେ ଅନେକ ପରିମାଣରେ ଜାଣିହେଉଥିଲା ନୀଳକଣ୍ଠ ଦାସ, ସୂର୍ଯ୍ୟନାରାୟଣ ଦାଶ, ନବକିଶୋର ଦାସ, ପରମାନନ୍ଦ ଆଚାର୍ଯ୍ୟ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ପ୍ରହ୍ଲାଦ ପ୍ରଧାନ, କୁଞ୍ଜବିହାରୀ ଦାଶ, ନଟବର ସାମନ୍ତରାୟ, ଗୋଲୋକ ବିହାରି ଧଳ,

ସତ୍ୟନାରାୟଣ ରାଜଗୁରୁ ଓ ବେଣୀମାଧବ ପାଢ଼ୀଙ୍କ ବାବଦରେ ଯେଉଁମାନଙ୍କୁ ଆମେ ଦେଖିବାର ଓ ଜାଣିବାର ସୁଯୋଗ ପାଇନଥିଲୁ।

ଯେଉଁଠି ଯେଉଁଠି ଦେବେନ୍ଦ୍ର ବାବୁ ଘର ବଦଳେଇ ରାଉରକେଲାରେ ରହୁଥିଲେ ଓ ସେଠୁ ବଦଳି ହୋଇ ଭୁବନେଶ୍ୱର ଆସିଲେ ସବୁବେଳେ ଆଗେ ଆଗେ ଟ୍ରକ୍ ଟ୍ରକ୍ ଭର୍ତ୍ତି ବହି ଯାଉଥିଲା ଏବଂ ପଛେ ପଛେ ଦେବେନ୍ଦ୍ର ବାବୁ। ଭୁବନେଶ୍ୱରରେ ବହି ରଖିବାର ଆବଶ୍ୟକତା ସକାଶେ ଓ ବହିର ମୋହରେ ସିଏ ଆଗରୁ ରହୁଥିବା ସେଇ ଏକା ଆପାର୍ଟମେଣ୍ଟରେ ଆଉ ଏକ ଫ୍ଲାଟ୍ କିଣିଥିଲେ କଷ୍ଟେମଷ୍ଟେ। କିନ୍ତୁ ତାଙ୍କ ବହୁଆୟାମୀ ବ୍ୟକ୍ତିତ୍ୱର ବିଶେଷତ୍ୱ ହେଲା ତାଙ୍କଠିଁ ଜ୍ଞାନ, ନୈତିକତା, ବେସାଲିସ୍ ମନୋଭାବ, ଅନ୍ୟାୟ ବିରୋଧରେ ପ୍ରତିବାଦ କରିବାର ବିବେକବନ୍ତ ସାହସ, ସ୍ପଷ୍ଟବାଦିତା, ସହୃଦୟତା ଓ ମଣିଷପଣିଆର ଏକାୟନ। କପଟ ବିନୟକୁ ନାପସନ୍ଦ କରୁଥିଲେ ସିଏ। ତାଙ୍କୁ ଭେଟୁଥିବା କେହି ବି ଆହତ ଓ ଅପମାନିତ ହୋଇ ଫେରୁନଥିଲେ। ଯଥାସମ୍ଭବ ସବୁ ପ୍ରକାରର ସାହାଯ୍ୟ କରୁଥିଲେ ପ୍ରାୟ ସମସ୍ତଙ୍କୁ। ଆଉ କନିଷ୍ଠମାନଙ୍କର ବୌଦ୍ଧିକ ପରିପାଳନ ନିମନ୍ତେ ତ ସିଏ ଥିଲେ ସର୍ବଦା ଆଗଭର।

ଯେତେବେଳେ ଦେବେନ୍ଦ୍ରବାବୁଙ୍କର ସାରସ୍ୱତ ସର୍ଜନା ଓ କର୍ମପ୍ରବଣତା ଶୀର୍ଷରେ ଥିଲା, ଆଇ.ଆଇ.ଟି ଓ ଆଇ.ଆଇ.ଏମ୍‌ରେ ପଢ଼ିଥିବା ଯଥାକ୍ରମେ ବଡ଼ପୁଅ ଚିନୁ ଓ ସାନପୁଅ ମୁନୁ ଭଲଭାବେ ଅବସ୍ଥାପିତ ହୋଇ ସାରିଥିଲେ ଏବଂ ପତ୍ନୀ ଗୀତା ଭାଉଜ ବି ଚାକିରିରୁ ସ୍ୱେଚ୍ଛା-ଅବସର ନେଇ ବୃତ୍ତିଗତ ଜଞ୍ଜାଳରୁ ମୁକ୍ତ ହୋଇଯାଇଥିଲେ ସେତେବେଳେ ଦେବେନ୍ଦ୍ରବାବୁଙ୍କ ଆକସ୍ମିକ ବିୟୋଗ ଘଟିଲା।

ଜଗତସିଂହପୁର ଜିଲ୍ଲାର ବୀରନରସିଂହପୁର ଶାସନ ଦେବେନ୍ଦ୍ରବାବୁଙ୍କ ମୂଳ ଗାଁ। ସେଇ ଗାଁ ବି ଡ. ଶ୍ରୀରାମଚନ୍ଦ୍ର ଦାଶଙ୍କ ଗାଁ ଏବଂ ସିଏ ଦେବେନ୍ଦ୍ରବାବୁଙ୍କ ସମ୍ପର୍କୀୟ। ଶ୍ରୀରାମଚନ୍ଦ୍ର ଦାଶଙ୍କ ଭଳି ଦେବେନ୍ଦ୍ରବାବୁ ମଧ୍ୟ ଅସରନ୍ତି ସ୍ମୃତି, ଉପାଖ୍ୟାନ, ତଥ୍ୟ, ଘଟଣାବଳି ଓ ସାଧାରଣଜ୍ଞାନର ଜୀବନ୍ତ ଗନ୍ତାଘର ଥିଲେ। ଲେଖାଲେଖିରେ ଯେମିତି ନିଜ ବକ୍ତବ୍ୟ ଓ ଅଭିଭାଷଣରେ ସେମିତି ଦେବେନ୍ଦ୍ର ବାବୁ ସବୁବେଳେ ନୂଆନୂଆ, ମୌଳିକ ଓ ପ୍ରଭାବଶାଳୀ କଥାମାନ ଏବଂ ଦୃଷ୍ଟିଭଙ୍ଗୀ ଲୋକଲୋଚନକୁ ଆଣୁଥିଲେ।

କିଛିଦିନ ତଳେ ରହସ୍ୟ କରି ଏକ ସର୍ବେକ୍ଷଣର ନିଷ୍କର୍ଷ ଆମେ ଦୁହେଁ ଚର୍ଚ୍ଚା କରୁଥିଲୁ, ଯେଉଁଥିରେ କୁହାଯାଇଥିଲା ଯେ ଏକ ନିର୍ଦ୍ଦିଷ୍ଟ ବୟସ ବର୍ଗର ଶହେରୁ ମାତ୍ର ଆଠଜଣ ବଞ୍ଚୁଛନ୍ତି। ଠୋ ଠୋ ହସି ଦେବେନ୍ଦ୍ର ବାବୁ କହିଥିଲେ- ସୁଖର କଥା ମୁଁ ଆଉ ସେ ବର୍ଗ ଭିତରେ ନାହିଁ। ମୋର ଧାରଣା ମୁଁ ୮୫+ ବର୍ଷ ବଞ୍ଚିବି। ହେଲେ ଖବର ମିଳିଲା ଗତ ମାସ ୨୫ ତାରିଖରେ ସେ ଚାଲିଗଲେ ବୋଲି। ପ୍ରଜ୍ଞାର ବିବିଧବିଶ୍ୱ ବା ମଲ୍‌ଟିଭର୍ସିଟିର ପ୍ରଫେସର ଦେବେନ୍ଦ୍ର କୁମାର ଦାଶଙ୍କୁ ମୋର କୋଟି କୋଟି ପ୍ରଣାମ !

*ଭୁବନେଶ୍ୱର*

ସୁମନ୍ୟୁ ଶତପଥି

# ସମାଲୋଚନା-ସାହିତ୍ୟ କ୍ଷେତ୍ରର ଅପୂରଣୀୟ କ୍ଷତ

ଏଇ ଭିତରେ ଅନେକ ବନ୍ଧୁ ଓ ପରିବାର ସଦସ୍ୟ ଆମକୁ ଛାଡ଼ି ଚାଲିଗଲେଣି- କରୋନା କିମ୍ବା ଅନ୍ୟ କାରଣରୁ। ସବୁ ବିୟୋଗ ଦୁଃଖଦାୟକ ନିଶ୍ଚୟ। କିନ୍ତୁ ସବୁଠାରୁ ହୃଦୟବିଦାରକ ସମ୍ବାଦ ହେଉଛି ଅପେକ୍ଷାକୃତ ଅଳ୍ପ ବୟସରେ, ନିରୋଗ ଓ କର୍ମରତ ବନ୍ଧୁ ସହୋଦରମାନଙ୍କର ଆକସ୍ମିକ ବିଦାୟ। ବନ୍ଧୁ ଦେବେନ୍ଦ୍ରବାବୁଙ୍କ ଅକସ୍ମାତ ବିୟୋଗ ମର୍ମନ୍ତୁଦ ଓ ଅସହ୍ୟ।ଏହା କହିବା ପଛରେ ଅନେକ କାରଣ ଅଛି- ତାଙ୍କ ଅନ୍ତରଙ୍ଗ ବନ୍ଧୁମାନେ ନିଶ୍ଚୟ ହୃଦୟଙ୍ଗମ କରୁଥିବେ। କାରଣ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଦେବେନ୍ଦ୍ର ବାବୁଙ୍କ ଶ୍ରଦ୍ଧାଶୀଳ ଓ ଉଦାର ସ୍ୱଭାବ।

ଦେବେନ୍ଦ୍ର ବାବୁଙ୍କ ସାଙ୍ଗରେ ପରିଚୟ ହେଲି ତାଙ୍କ ଲିଖିତ ବହି ମାଧ୍ୟମରେ। ସ୍ୱଭାବତଃ କୌତୂହଳ ହେଲା ତାଙ୍କୁ ଜଣେ ବ୍ୟକ୍ତି ଭାବରେ ଜାଣିବା ପାଇଁ। କିନ୍ତୁ ଦେବେନ୍ଦ୍ର ବାବୁ ଯେ ମୋତେ ଅନେକ ପୂର୍ବରୁ ଜାଣିଥିଲେ ତାହା ମୁଁ ଜାଣିଲି ପ୍ରଥମ ଭେଟରେ। ଗଙ୍ଗାଧର ମେହେର କଲେଜରେ ସେ ଯେତେବେଳେ ସାହିତ୍ୟ ଅଧ୍ୟୟନ କରି ଗବେଷଣା କ୍ଷେତ୍ରରେ ବେଶ୍ ଅକାଳପକ୍ୱତା ପାଇ ସାରିଥିଲେ, ସେତେବେଳେ ତାଙ୍କ ଉପର ଦୁଇ ତିନି ପିଢ଼ିର ଆମେ କିଛି ବାଲୁଙ୍ଗା ନିଜ ନିଜର ଚିରକୁମାର ନହେଲେ ଚିର ନାବାଳକି ନେଇ ଗର୍ବ ଅନୁଭବ କରୁଥିଲୁ। ମୋର ବାଲୁଙ୍ଗାମି ପାଇଁ ହେଉ ଅଥବା କ୍ରିକେଟ ଖେଳାଳି ହିସାବରେ ସ୍ଥାନୀୟ ହିରୋଗିରି ହେଉ, ଦେବେନ୍ଦ୍ର ବାବୁ ମୋତେ ଜାଣିଥିଲେ ବୋଲି କହିଥିଲେ। ମନେ ପଡ଼ିଲେ ଲଜ୍ଜା ଲାଗେ ଯେ, ଆମେ ଇଂରାଜୀ ସାହିତ୍ୟରେ ସ୍ନାତକୋତ୍ତର ବିଭାଗର ଛାତ୍ର ହେଇ ସୁଦ୍ଧା ଯାହା ପଢ଼ି ନଥିଲୁ, ସେ ଓଡ଼ିଆ ବିଭାଗର ସ୍ନାତକ ଶ୍ରେଣୀର ଛାତ୍ର ହୋଇ ଇଉରୋପୀୟ ସାହିତ୍ୟ ବିଷୟରେ ଆମଠାରୁ ଅଧିକ ଗ୍ରନ୍ଥ ପାରାୟଣ କରିସାରିଥିଲେ ଓ ୧୯୭୨ ମସିହାରେ ମାତ୍ର ୧୭-୧୮ ବର୍ଷ ବୟସରେ ସେ 'ପାର୍ବତୀ ଓ ଆଗାମେମନନ୍'

ନାମରେ ଏକ ଗବେଷଣାତ୍ମକ ପ୍ରବନ୍ଧ ଗଙ୍ଗାଧର ମେହେର କଲେଜର ପତ୍ରିକା, 'ସପ୍ତର୍ଷି' (ପ୍ରଥମ ଖଣ୍ଡ; ସଂଖ୍ୟା ୫-୬)ରେ ଛାପି ଥିଲେ। ଭାରତରେ ତୁଳନାତ୍ମକ ସାହିତ୍ୟ ବିଧିବଦ୍ଧ ଭାବରେ ଚର୍ଚ୍ଚା ହେବା ସେତେବେଳେ ଆରମ୍ଭ ହେଇଥିଲା କି ନା ସନ୍ଦେହ। ଏହା ଥିଲା ଦେବେନ୍ଦ୍ର ବାବୁଙ୍କ ଅକାଳପକ୍ୱତାର ମାତ୍ର ଗୋଟିଏ ଉଦାହରଣ । ସେହି କାଳରୁ ଜୀବନର ଶେଷ ଦିନ ପର୍ଯ୍ୟନ୍ତ ଏକନିଷ୍ଠ ଭାବରେ ଗବେଷଣାରତ ରହି ସେ ଯେଉଁ ଗଭୀର ନିଷ୍କର୍ଷଗତ ପରିଣାମ ଛାଡ଼ି ଯାଇଛନ୍ତି, ତାହା ଅତୁଳନୀୟ। ଅବଶ୍ୟ ସେସବୁର ଆକଳନ ଯଥାଶୀଘ୍ର କରାଯାଇପାରିଲେ ତାଙ୍କପ୍ରତି ଉଚିତ ଶ୍ରଦ୍ଧାଞ୍ଜଳି ହେବ ବୋଲି ମନେକରୁଛି।

ଦେବେନ୍ଦ୍ରବାବୁ ତାଙ୍କ ପୂର୍ବରୁ ଅନେକ ଦଶନ୍ଧିର ଗବେଷଣାତ୍ମକ ତ୍ରୁଟିକୁ କିପରି ନିର୍ମମ ଭାବରେ ପ୍ରାମାଣିକ ତଥ୍ୟ ଦ୍ୱାରା ସଂଶୋଧନ କରିଛନ୍ତି, ତାହା ସୁବିଦିତ। ଆଜି ଆମେ ଯେଉଁମାନେ ଓଡ଼ିଆସାହିତ୍ୟକୁ ନେଇ ଗବେଷଣାରତ ଓ ସମାଲୋଚନା ଜାରି ରଖିଛୁ, ସେଥିରେ ଦେବେନ୍ଦ୍ର ବାବୁଙ୍କ ପୂର୍ବସୂରୀ (ଯେପରି ନଟବର ସାମନ୍ତରାୟ, ଗଗନେନ୍ଦ୍ର ଦାସ ଓ ସୁଦର୍ଶନ ଆଚାର୍ଯ୍ୟ)ମାନଙ୍କ ସହିତ ଖୋଦ ଦେବେନ୍ଦ୍ର ବାବୁଙ୍କଠାରେ କେତେ ଋଣୀ ତାହା ଶବ୍ଦରେ ପ୍ରକାଶ କରିବା ଅସମ୍ଭବ। ମନରେ କୌଣସି ସନ୍ଦେହ ହେଲେ ତାଙ୍କୁ ଫୋନ୍ କରିବା ମୋର ଏକ ଅଭ୍ୟାସରେ ପରିଣତ ହୋଇଥିଲା। କଥା କଥାରେ ସେ ଏତେ କଥା କହିଯା'ନ୍ତି ଯେ ସେସବୁ ନିଜ ଗୁଣରେ ଗୋଟିଏ ଗୋଟିଏ ମୌଳିକ ଓ ମୌଖିକ ପ୍ରବନ୍ଧ ପରି ଲାଗେ। ତାଙ୍କ ପାଖକୁ ଫୋନ୍ କରିବା ଆଗରୁ ମୁଁ ନିଜପାଖରେ ନ୍ୟୂନତମ ଘଣ୍ଟାଏ ସମୟ ଅଛି କି ନାହିଁ ସ୍ଥିର କରିଥାଏ। ଅଳ୍ପ ଦିନ ତଳେ ସିଏ କେଉଁ ଏକ ପ୍ରସଙ୍ଗରେ କହିଯାଇଥିଲେ ଯେ, ଓଡ଼ିଆ ସାହିତ୍ୟର ଆଧୁନିକତାକୁ ବଙ୍ଗଭିତିକ କହି ଓ ମୋଗଲବନ୍ଦୀ ଅଞ୍ଚଳ ଭିତରେ ସୀମିତ ରଖି ରାଧାନାଥ ଓ ଫକୀରମୋହନଙ୍କ ସମୟଠାରୁ ଆରମ୍ଭ କରିବା ଦ୍ୱାରା କବିସୂର୍ଯ୍ୟ ବଳଦେବ ରଥଙ୍କ କବିତାରେ ଯେଉଁ ନୂତନ ପ୍ରୟୋଗର ସୂତ୍ରପାତ ହେଇଛି ତାହା ବ୍ୟାଖ୍ୟା କରିବା କଷ୍ଟସାଧ୍ୟ ହୋଇପଡୁଛି । ମୋ ଭାଷାରେ ଦେବେନ୍ଦ୍ର ବାବୁଙ୍କ ସାରଗର୍ଭକ ସୂଚନାଟିର ହୁଏତ ଏକ ବିକୃତ ରୂପ। କିନ୍ତୁ ପାଠକେ ଉଦାହରଣଟିକୁ ନିଜ ମନରେ ଠିକ୍ ଭାବରେ ରୂପାନ୍ତରଣ କରି ଦେବେନ୍ଦ୍ର ବାବୁଙ୍କ ତଥ୍ୟକୁ ଭଲ ଭାବରେ ବୁଝିପାରିଥିବେ ବୋଲି ଆଶା।

ଦେବେନ୍ଦ୍ରବାବୁଙ୍କ ବିଷୟରେ ମୁଁ ଯାହା କହିଲି ବା କହିପାରିବି, ସେସବୁ ତାଙ୍କର ସମଗ୍ର କୃତିର ଅଣୁ ସଦୃଶ କ୍ଷୁଦ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ। ମହାସମୁଦ୍ରକୁ ଶଙ୍ଖପଣା। ତାଙ୍କପରି ପ୍ରତିଭାକୁ ଶ୍ରଦ୍ଧାଞ୍ଜଳି ଦେବାର ଚେଷ୍ଟାରେ ଏହିପରି ଶଙ୍କାକୁଳ ହେବା ସ୍ୱାଭାବିକ।

ଶେଷରେ ବନ୍ଧୁ ଦେବେନ୍ଦ୍ର ବାବୁଙ୍କ ଆତ୍ମାର ସଦଗତି କାମନା କରି ମୋର ଶ୍ରଦ୍ଧାପୂର୍ଣ୍ଣ ଯଦିଓ ଅଯଥେଷ୍ଟ ବକ୍ତବ୍ୟ ଶେଷ କରୁଛି।

*ନୂଆଦିଲ୍ଲୀ*

ଭାରତଭୂଷଣ ମହାନ୍ତି

# ହେ ବନ୍ଧୁ ବିଦାୟ

ଇଏ ତ ହୃଦୟକୁ ବିଦୀର୍ଣ୍ଣ କରିଦେଲା ପରି ନିଷ୍ଠୁର ଆଘାତ ! ନିମିଷକେ ଓଡ଼ିଶାର କେତେକ ସାହିତ୍ୟିକ ଅନୁଷ୍ଠାନ ଅନାଥତୁଲ୍ୟ ଅସହାୟ ହୋଇଗଲେ । ସତୀର୍ଥ, ସହଯାତ୍ରୀମାନେ ନିଃସଙ୍ଗ ହୋଇଗଲେ । କେତେ ଜ୍ଞାନପିପାସୁ ଗବେଷକ ଦିଗ୍‌ଦର୍ଶକ ହରାଇଲେ । କେତେ ଲେଖା ଅଧୁରା ରହିଗଲା । କେତେ ବହିର ସଂକଳନ, ପ୍ରକାଶନ ଅଧବାଟରେ ଗତି ହରାଇଲା; ଯେତେବେଳେ ସମ୍ବାଦ ମିଳିଲା ଗବେଷକ ଦେବେନ୍ଦ୍ର ଦାଶ ଆଉ ନାହାନ୍ତି ।

ପତ୍ନୀ ନି-କ୍ୟାପ ପ୍ରତିରୋପଣ ପରେ ପୁଅପାଖେ ଫିଜିଓଥେରାପିପାଇଁ ଥିଲେ ବାଙ୍ଗାଲୋରରେ । ଦେବେନ୍ଦ୍ରବାବୁ କେଇଦିନ ପୂର୍ବରୁ ଭୁବନେଶ୍ୱର ଆସି ଏକାକୀ ଥିଲେ । ଜ୍ୱରାକ୍ରାନ୍ତ ହୋଇ ଆପୋଲୋରେ ଚିକିତ୍ସିତ ହେଉଥିଲେ । 'ଆମ ଓଡ଼ିଶା' ସହକର୍ମୀ ହସ୍ପିଟାଲରେ ରକ୍ତଦାନ କରିବାକୁ ଯାଇଥିବା ସମୟରେ ଡାକ୍ତର ଖବରଦେଲେ ଆଉ ରକ୍ତର ପ୍ରୟୋଜନ ନାହିଁ, ଦେବେନ୍ଦ୍ରବାବୁ ଦେହତ୍ୟାଗ କରିସାରିଛନ୍ତି ।

ଆମ 'ପ୍ରଗତି ଉତ୍କଳ ସଂଘ' ପରିବାର ଦେବେନ୍ଦ୍ରବାବୁଙ୍କ ସହ ଅନ୍ତରଙ୍ଗ ସଂପର୍କ ଥିବା ଅନେକ ଅନୁଷ୍ଠାନ ମଧ୍ୟରୁ ଅନ୍ୟତମ । ଦେବେନ୍ଦ୍ରବାବୁ ଥିଲେ 'ପ୍ରଗତି ଉତ୍କଳସଂଘ'ପରିବାରପାଇଁ ଏକମାତ୍ର ଉପାର୍ଜନକ୍ଷମ ସନ୍ତାନ । ସେ ଉପାର୍ଜନ କରୁ ନଥିଲେ ଅର୍ଥ । ତାଙ୍କର ଉପାର୍ଜନ ଥିଲା ସମ୍ମାନ ଓ ସ୍ୱୀକୃତି । ଆଜି ପ୍ରଗ୍‌ତି ଉତ୍କଳ ସଂଘ ଯଦି ଓଡ଼ିଶାର ଭାଷା ସାହିତ୍ୟ ଆକାଶରେ ଅନିର୍ବାଣ ଦୀପ୍ତିପରି ରହିଛି ଓ ରହିବ- ତାହା ସମ୍ଭବ ହୋଇଛି କେବଳ ଦେବେନ୍ଦ୍ରବାବୁଙ୍କପାଇଁ ।

'ପ୍ରଗତି ଉତ୍କଳ ସଂଘ' ବ୍ୟାବସାୟିକତାରୁ ଉର୍ଦ୍ଧ୍ୱରେ ରହି ୧୯୮୦ ଏପର୍ଯ୍ୟନ୍ତ ଯେଉଁ ୨୩ଟି ପୁସ୍ତକ ପ୍ରକାଶ କରିଛି, ସେସବୁ ଓଡ଼ିଆ ଭାଷା-ସାହିତ୍ୟର ଅମୂଲ୍ୟ ସଂପଦ । ଏହା ମଧ୍ୟରୁ ଯାହା ଓଡ଼ିଆ ଜାତିପାଇଁ ଅକଳନୀୟ ମୂଲ୍ୟ ବହନ କରେ, ତାହା ହେଉଛି

ମଧୁବାବୁଙ୍କ ସଂପର୍କୀୟ ପାଞ୍ଚଟି ଗ୍ରନ୍ଥ- ଯେଉଁଥିରୁ ଚାରିଟିର ସଂକଳୟିତା ଥିଲେ ଦେବେନ୍ଦ୍ରବାବୁ।

ଆମ ପ୍ରକାଶନ ବିଭାଗର ସଂପୂର୍ଣ୍ଣ ଦାୟିତ୍ୱ ନେଇଥିଲେ ଦେବେନ୍ଦ୍ରବାବୁ ଓ ଶ୍ରୀଚରଣବାବୁ। ଆମ ଦ୍ୱାରା ପ୍ରକାଶିତ ସେମାନଙ୍କର ଦ୍ୱାରା ଲିଖିତ ବା ସଂପାଦିତ ହୋଇନଥିବା ପୁସ୍ତକପାଇଁ ମଧ୍ୟ ସଂକଳକ ଓ ପ୍ରେସ୍ ସହ ଯୋଗାଯୋଗ କରୁଥିଲେ ଦୁଇବନ୍ଧୁ। ଦେବେନ୍ଦ୍ରବାବୁଙ୍କ ବିୟୋଗରେ ପ୍ରଗତି ଉତ୍କଳ ସଂଘ ସତେଯେପରି ରିକ୍ତ ହୋଇଗଲା।

ଶାନ୍ତିନିକେତନ ମାଟିରେ ପରିପୁଷ୍ଟ ଚିତ୍ତଭାଇ (ଚିତ୍ତରଂଜନ ଦାସ) ଓ ଦୁଇବନ୍ଧୁଙ୍କ ମଧ୍ୟରେ ଅନ୍ତରଙ୍ଗ ସଂପର୍କ ଥିଲା। ଦେବେନ୍ଦ୍ରବାବୁ କହୁଥିଲେ କେବଳ ତାଙ୍କର ହିଁ ସାହସ ଥିଲା ବୁଦ୍ଧିବାଦୀ ବା ବ୍ୟକ୍ତିଗତ ବିଷୟ ହେଉ, ସେ ପ୍ରଶ୍ନ ପଚାରି ଚିତ୍ତଭାଇଙ୍କୁ ବ୍ୟସ୍ତ କରି ପକାଉଥିଲେ। ଚିତ୍ତଭାଇ ସ୍ୱକୀୟ ରୀତିରେ ବିରକ୍ତ ନହୋଇ ଉତ୍ତର ଦେଉଥିଲେ। ଦେବେନ୍ଦ୍ରବାବୁ ଥିଲେ ସତ୍ୟର କ୍ଷୁରଧାରରେ ଚାଲୁଥିବା ନିର୍ଭୀକ, ସ୍ପଷ୍ଟବାଦୀ, ସାଲିସବିହୀନ ମଣିଷ। ଈର୍ଷା ନାହିଁ, ଅହଙ୍କାର ନାହିଁ, ବିଭିନ୍ନ ଅନୁଷ୍ଠାନକୁ, ମଣିଷଙ୍କୁ ସାହାଯ୍ୟ କରିବାକୁ ସତତ ପ୍ରସ୍ତୁତ ଥିବା ନିର୍ମାୟା ମଣିଷଟିଏ। ଅନେକ ବିଷୟରେ ଗଭୀର ପ୍ରବେଶ ଥିବା ସୁବକ୍ତା, ପ୍ରଖର ସ୍ମୃତିଶକ୍ତି ଓ ବୁଦ୍ଧିମତ୍ତା ତାଙ୍କର ଜନ୍ମଗତ ବିଭବ। ଗବେଷଣା ତାଙ୍କର ନିଶା ଥିଲା। ଗବେଷଣାପାଇଁ ସମୟ ଦେଇପାରୁ ନଥିବାରୁ ସେ ପେନସନ୍‌ରେ ଚଳିଯାଇ ପାରିବେ ବୋଲି ସ୍ୱେଚ୍ଛାକୃତ ଅବସର ନେଇ ଭାଷା-ସାହିତ୍ୟ ଗବେଷଣାରେ ନିମଗ୍ନ ରହିଥିଲେ।

ଦେବେନ୍ଦ୍ରବାବୁଙ୍କର ଅବିସମ୍ବାଦିତ, ଅବିକୃତ ତଥ୍ୟ ପରିବେଷଣ କରିବାପାଇଁ ଅଙ୍ଗୀକାରବଦ୍ଧତାର ପଟାନ୍ତର ନାହିଁ। ମଧୁବାବୁଙ୍କ ସଂପର୍କରେ ଓ ଉତ୍କଳ ସମ୍ମିଳନୀ ପ୍ରଥମଭାଗ ପାଇଁ ତଥ୍ୟ ସଂଗ୍ରହ କରିବାକୁ ସେ ଅନେକ ସାଧନା କରିଛନ୍ତି। କଲିକତା ଜାତୀୟ ପାଠାଗାର ଯାଇ ସେଠାରେ ଧୈର୍ଯ୍ୟର ସହ ବହୁଜିନିଷ ଉତାରି ଆଣିଛନ୍ତି ଏବଂ ଓଡ଼ିଶାର ସଂଗ୍ରହାଳୟରୁ ମଧ୍ୟ ବିଭିନ୍ନ ଦଲିଲରୁ ତଥ୍ୟ ସଂଗ୍ରହ କରିଛନ୍ତି।

ଉନବିଂଶ ଶତାବ୍ଦୀରେ ଜନ୍ମିତ ମଦନମୋହନ ପଟ୍ଟନାୟକଙ୍କର 'ମୁକୁର' ଓ 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ଅନେକ ମୂଲ୍ୟବାନ ପ୍ରବନ୍ଧ ପଢ଼ି ସେହି ଲେଖକଙ୍କର ସଂକଳନଟିଏ ପ୍ରସ୍ତୁତ କରିବାକୁ ମନ କରିଥିଲେ। ଲେଖକଙ୍କର ପରିଚୟ ଖୋଜିବାକୁ ଯାଇ ଜାଣିଲେ, ସମସାମୟିକ ତିନିଜଣ ସେହି ନାମରେ ଅଛନ୍ତି। ଗୋଇନ୍ଦା ପରି ଖବର ନେଇ ଶେଷରେ ପ୍ରଥମ ଓଡ଼ିଆ ଚିଫ୍ ସେକ୍ରେଟାରୀ ସୁଧାଂଶୁ ମୋହନ ପଟ୍ଟନାୟକଙ୍କ ପିତା ହିଁ ଲେଖକ ହୋଇଥିବାର ଯଥେଷ୍ଟ ସମ୍ଭାବନା ଅଛି ବୋଲି ଜାଣିବାକୁପାଇ ତାଙ୍କୁ ସାକ୍ଷାତ କଲେ। ତାଙ୍କ

ସହ ଆଲୋଚନା କରି ପ୍ରକୃତ ବ୍ୟକ୍ତି ଜାଣିଲେ ଏବଂ ସଂକଳିତ ହେଲା ୩୭୪ପୃଷ୍ଠା ବିଶିଷ୍ଟ 'ମଦନମୋହନ ରଚନା ସମଗ୍ର'।

ସେ ଥିଲେ ସାହିତ୍ୟର ଛାତ୍ର, ମୁଁ ବିଜ୍ଞାନର। ବୃତ୍ତି ତାଙ୍କର ଅଧ୍ୟାପନା, ଓଡ଼ିଆ ସାହିତ୍ୟରେ ଗବେଷଣା ତାଙ୍କର ଅନ୍ତରର ପ୍ୟାସନ୍ (ରୁଚି)। ସେ ଜଣେ ହେତୁବାଦୀ, ମୁଁ ଶ୍ରୀଅରବିନ୍ଦ, ଶ୍ରୀମା'ଙ୍କର ଅନୁଗାମୀ। ଏତେ ପାର୍ଥକ୍ୟ ସତ୍ତ୍ୱେ ଆମ ଦୁହିଁଙ୍କ ମଧ୍ୟରେ ଥିଲା ପାରସ୍ପରିକ ସ୍ନେହ ଓ ସମ୍ମାନ। ସେ ଲଳିତ ମଧୁର ସ୍ୱରରେ ସମ୍ବୋଧନ କରୁଥିଲେ ଭାରତଭାଇ। ହାୟ ! ସେ ସ୍ନେହସିକ୍ତ ସ୍ୱର୍ଗୀୟ ସମ୍ବୋଧନ ସବୁଦିନପାଇଁ ହଜିଗଲା। ରବୀନ୍ଦ୍ର ନାଥ ନଅବର୍ଷ କନିଷ୍ଠ ଶ୍ରୀଅରବିନ୍ଦଙ୍କ ଉଦ୍ଦେଶ୍ୟରେ ଲେଖିଥିଲେ 'ନମସ୍କାର' କବିତା- "ଅରବିନ୍ଦ ରବୀନ୍ଦ୍ରର ଘେନ ନମସ୍କାର।" ମୁଁ ବିଶ୍ୱକବିଙ୍କ ଅନୁସରଣରେ ଦେବେନ୍ଦ୍ରବାବୁଙ୍କ ସ୍ୱଚ୍ଛ ଚରିତ୍ର, ବିଶ୍ୱପ୍ରାଣତା ଓ ଓଡ଼ିଆ ସାହିତ୍ୟକୁ ବିପୁଳ ଅବଦାନପାଇଁ ଜଣାଉଛି-

"ହେ ଅନୁଜ, ପ୍ରଣାମ ଓ କୃତଜ୍ଞତା ନିଅ।"
"ମହାଯାତ୍ରା ପଥୁକୀର ପଥରୋଧ କରନାହିଁ
ଲୁହ ମୋର ହୋଇ ଯା'ରେ ଥୟ।।
ଚୈତ୍ୟ ଜଗତକୁ ତୁମ ଫେରିବାର ପଥ
ପ୍ରିୟବନ୍ଧୁ ହେଉ ହେ ସୁଗମ
ସାଥେ ରହୁ ବିଭୁ-ବରାଭୟ।।
ଆର ଜନ୍ମେ ପୁଣି ଦେଖା
ହେ ବନ୍ଧୁ ବିଦାୟ।।"

*ରାଉରକେଲା*

ପ୍ରମୋଦ ସର

# ଜଣେ ବହିପ୍ରେମୀ ବନ୍ଧୁଙ୍କ ସ୍ମୃତିରେ

ଦେବେନ୍ଦ୍ର ଭାଇନାଙ୍କ ସହ ପ୍ରଥମ ପରିଚୟ ହୋଇଥିଲା ଶାନ୍ତିନିକେତନର ଛାତ୍ର ଥିବାବେଳେ, ପ୍ରାୟ ୩୧-୩୨ ବର୍ଷ ତଳେ । ଓଡ଼ିଆ ବିଭାଗ ଆୟୋଜିତ ଏକ ଆଲୋଚନାଚକ୍ରରେ ଚିତଭାଇ (ପ୍ରାବନ୍ଧିକ ଚିତରଂଜନ ଦାସ)ଙ୍କ ଭାଷଣ ପରେ ନିଜସ୍ୱ ବକ୍ତବ୍ୟ ରଖିଥିଲେ ସେ । ଆଲୋଚନା ବିଭାଗୀୟ ଶ୍ରେଣୀଶିକ୍ଷାଠାରୁ ଅବଶ୍ୟ ସ୍ୱତନ୍ତ୍ର ସ୍ତରର ଥିଲା । ପରେ ପରେ ତାଙ୍କ ଅଧ୍ୟୟନପ୍ରବଣତା ବିଷୟରେ ମଧ୍ୟ ଶୁଣିଥିଲି ଗବେଷକ-ଭାଇମାନଙ୍କଠୁ ଓ ବିଶେଷତଃ ଦର୍ଶନ ବିଭାଗ ଗ୍ରନ୍ଥାଗାରିକଙ୍କଠୁ । ସେଇଥିପାଇଁ ଆଗ୍ରହ ଜନ୍ମିଥିଲା ସମ୍ପର୍କ ଯୋଡ଼ିବାକୁ । ତା'ପରେ କେବେ କେମିତି କଟକ ବହିବଜାରରେ ଦେଖାସାକ୍ଷାତ୍ ଓ ବହିପତ୍ର ବିଷୟରେ କଥାବାର୍ତ୍ତା । ୨୦୦୨ରେ ମୁଁ ଏନ୍‌ବିଟିରେ ଯୋଗଦେବା ପରେ ୨୦୦୩ରେ କଟକରେ ଆୟୋଜିତ ଭଲ ବହି ବିଷୟକ ଆଲୋଚନାଚକ୍ରକୁ ତାଙ୍କୁ ନିମନ୍ତ୍ରଣ ଜଣାଇଥିଲି । ସେହିଦିନଠୁ ସମ୍ପର୍କଟି ନୂଆ ଭାବରେ ନିବିଡ଼ ହେଲା । ତାଙ୍କ ସଂପାଦିତ ଫକୀରମୋହନଙ୍କ ଆତ୍ମଚରିତ ଏନ୍‌ବିଟି ଆନୁକୂଲ୍ୟରେ ଉଭୟ ଓଡ଼ିଆ ଓ ଇଂରେଜୀରେ ପ୍ରକାଶ ପାଇଥିଲା । ଏପରିକି ଅନୁସୃଷ୍ଟି ଆନୁକୂଲ୍ୟରେ ବିଳାସିନୀଙ୍କ 'ଜୀବନତୃଷ୍ଣା'ର ଉନ୍ମୋଚନ ଉତ୍ସବରେ ସେ ଥିଲେ ମୁଖ୍ୟବକ୍ତା । ସଦ୍ୟପ୍ରକାଶିତ ଫକୀରମୋହନ ସେନାପତିଙ୍କ ଗଳ୍ପସମଗ୍ର ପ୍ରାୟ ବାରବର୍ଷ ତଳର ଆସାଇନ୍‌ମେଂଟ । ସମ୍ପୂର୍ଣ୍ଣ ପାଣ୍ଡୁଲିପିଟି ମିଳିଥିଲା ଏଇ ମାତ୍ର ୮।୯ ମାସ ତଳେ ।

ଫକୀରମୋହନ ଗଳ୍ପସମଗ୍ର ଥିଲା ତାଙ୍କର ଅନ୍ୟତମ ସ୍ୱପ୍ନଟିଏ ଯେମିତି । ବହିଟି ପାଇ ଗତ ୨୧ ତାରିଖରେ କେତେ ଖୁସୀ ହୋଇନଥିଲେ ସେ ! ଏନ୍‌ବିଟିର ସହିଷ୍ଣୁତା ଓ ବନ୍ଧୁ ପ୍ରଦୀପ୍ତବାବୁଙ୍କ (ଡକ୍ଟର ପ୍ରଦୀପ୍ତ କୁମାର ପଣ୍ଡା) ସହଯୋଗ ବିନା ସମ୍ପୂର୍ଣ୍ଣ କରିବା ସମ୍ଭବ ନଥିଲା ବୋଲି କହିଲେ । କଥା ହେଲେ ପ୍ରାୟତଃ ସେ ଦୀର୍ଘ ସମୟ ନିଅନ୍ତି । ବଡ଼ ମୁକ୍ତମନା

ଓ ଆଳାପପ୍ରିୟ । ନିଃସଙ୍କୋଚ ଅନର୍ଗଳ ବାର୍ତାଳାପରେ ବିଶ୍ୱାସ କରନ୍ତି ସେ । ତା'ରି ଭିତରେ ବାରି ହୁଏ ତାଙ୍କ ଅଧ୍ୟୟନର ଦିଗନ୍ତ । ସେଥିରେ ଆପଣାର ଭାବଟିଏ ବି ଥାଏ । ସେଦିନ କିନ୍ତୁ କଷ୍ଟ ଲାଗୁଛି କହିଲେ । ତଥାପି ମନକଥା ବାଢ଼ିଥିଲେ। ଫକୀରମୋହନ ଜୀବନୀ ପ୍ରକାଶନ ନେଇ ମୋ ପ୍ରତିଶ୍ରୁତି କଥା ମନେପକାଇ ଦେଇଥିଲେ । କହିଥିଲି, "ମୋ ଅବସର ପୂର୍ବରୁ ଦେଇପାରିଲେ ହେଲା !" ଏତେ କଷ୍ଟ ଭିତରେ ବି ମନଖୋଲା ହସଟିଏ ପାଇଲି । 'ଗଳ୍ପସମଗ୍ର' କେମିତି ଲାଗିଲା' ପ୍ରଶ୍ନଟିର ପୂରାପୂରି ଆଶାନୁରୂପ ଉତର ସେ ପାଇନଥିଲେ ଅବଶ୍ୟ । ତାଙ୍କ ସହିତ ମୋର ସାରସ୍ୱତ ସମ୍ପର୍କ ଥିଲା । Love and Hate ପର୍ଯ୍ୟାୟର। ତାଙ୍କ ବିଦବତା ଗବେଷଣାନିଷ୍ଠା ଓ ପରଫେକ୍ସନିଜିମ୍ ପ୍ରତି ଯେମିତି ଥିଲା ମୋର ଅଶେଷ ଶ୍ରଦ୍ଧା, ତାଙ୍କ ସୃଜନସଂପୃକ୍ତି, ସାହିତ୍ୟଚିନ୍ତା ଓ ମୂଲ୍ୟାୟନ ପ୍ରତି ସେମିତି ଉଦାସୀନତା । ଉଭୟେ ଉଭୟଙ୍କୁ ବୁଝୁଥିଲୁ । ବୋଧହୁଏ ଓଡ଼ିଆ ସାହିତ୍ୟରେ ବିଶୁଦ୍ଧ ପାଠ-ସଂପାଦନା ଓ ବୈଜ୍ଞାନିକ ଗବେଷଣାର ବିଶେଷ ପ୍ରୟୋଜନ ଅଛି ବୋଲି ସେ ବିଶ୍ୱାସ କରୁଥିଲେ । ଯଥାର୍ଥ ସାହିତ୍ୟ-ସମ୍ବାଦ ପାଇଁ ଶୁଦ୍ଧ ଓ ସମଗ୍ର ପାଠସଂଗ୍ରହ ପ୍ରୟୋଜନ ବୋଲି ଅଡ଼ିବସିଥିଲେ । ଗବେଷକଟିଏ ପାଇଁ ଧମନୀରେ କବିତାର ରକ୍ତ ଅପେକ୍ଷା ଇତିହାସଶୀଳତାର ଅନିବାର୍ଯ୍ୟତାକୁ ସେ ଆଗ କରିଥିଲେ । ସାହିତ୍ୟ-ସନ୍ଧାନ ଅପେକ୍ଷା ଇତିହାସଖୋଜାରେ ତାଙ୍କର ସମଗ୍ର ସାମର୍ଥ୍ୟ ବିନିମୟ କରୁଥିଲେ । ତଥ୍ୟ ଭିତରେ ସତ୍ୟ ଖୋଜୁଥିଲେ, ଇତିହାସରେ ମୁକ୍ତି । ଫୁଲର ଶ୍ରୀ ଓ ସୌନ୍ଦର୍ଯ୍ୟ ନେଇ ମୁଗ୍ଧବିଭୋର ହେବା ଅପେକ୍ଷା ଫୁଲଫୁଟିବା ପଛର କାହାଣୀ ଅନୁସନ୍ଧାନରେ ଥିଲା ଆଗ୍ରହ । ପୂଜାଠୁ ପୂଜାର ପ୍ରସ୍ତୁତିପର୍ବଟି ପ୍ରତି ଆକର୍ଷଣ ଥିଲା ଅଧିକ । ଆୟୋଜନରେ ସାର୍ଥକତା । ଉତ୍ସସନ୍ଧାନରେ ତୃପ୍ତି । ଜୀବନଚରିତବ୍ୟାଖ୍ୟାରେ ତାଙ୍କ ଉତ୍ସାହ ଦେଖି ଏଇ ଅନୁଜ-ବନ୍ଧୁଟି ମଧ୍ୟ କମ୍ ଉତ୍ସାହିତ ହୋଇନଥିଲା । ଫକୀରମୋହନ ଜୀବନୀ ସହ ରମାଦେବୀଙ୍କ ଜୀବନୀ ପ୍ରକାଶ ନେଇ ପ୍ରତିଶ୍ରୁତି ଦେଇଥିଲା ।

ଜୀବନ ଏମିତି । କେତେ କ'ଣ ସ୍ୱପ୍ନ ଓ ଅଭିଳାଷ ଅଧୁରା ରଖି ଚୁପ୍‌ଚାପ୍ ଚାଲିଯାଏ, ଅବେଳରେ । ଆକସ୍ମିକତା ହେଉ କି ନିର୍ଦ୍ଦିଷ୍ଟତା, ଅତିକ୍ରମିବାର ସାମର୍ଥ୍ୟ ନଥାଏ କାହାର । କେବଳ ପଛରେ ଛାଡ଼ିଯାଏ ନିଜସ୍ୱ ସ୍ୱାକ୍ଷର ଓ ସ୍ମୃତି । ମଣିଷ ସ୍ୱାର୍ଥ ପାଇଁ କରିଥିବା ଯାବତୀୟ ପ୍ରୟାସ ଓ ପ୍ରାପ୍ତିର ମୃତ୍ୟୁ ଘଟେ। ଅପର ପାଇଁ ଅବଦାନ ବଂଚିରହେ ।

ଦେବେନ୍ଦ୍ରବାବୁ ଅଧ୍ୟୟନରେ ଜୀବନ ଖୋଜିଥିଲେ । ଆଜୀବନ ଜ୍ଞାନାର୍ଜନ ଓ ଜ୍ଞାନଦାନକୁ ଭଲପାଉଥିଲେ । ବ୍ୟକ୍ତିଗତ ସ୍ୱାର୍ଥ ଓ ଶ୍ରେୟକୁ ପଛରେ ରଖି ସାରସ୍ୱତ ଅଭିପ୍ରାୟଟିର ସଫଳ ରୂପାୟଣକୁ ଗୁରୁତ୍ୱ ଦେଇଥିଲେ । ତାଙ୍କ ଗବେଷଣାରେ ବୃତ୍ତିଦାୟ ନଥିଲା, ନଥିଲା ବି ଛାତ୍ରସେବାର ସହଜ ପନ୍ଥା କି ପ୍ରଦର୍ଶନର ଆଡ଼ମ୍ବର । ଜିଜ୍ଞାସା ଓ କୌତୂହଳରୁ ସେ ଗବେଷକର ଜୀବନ ବିତାଉଥିଲେ । ଭଲ ଗବେଷକଟିଏର ସବୁ ସଦ୍‌ଗୁଣ ତାଙ୍କ ପାଖରେ

ଥିଲା : ଅଧ୍ୟୟନ, ଅଧ୍ୟବସାୟ, ସତ୍ୟନିଷ୍ଠା, ଯୁକ୍ତିଶୀଳତା, ଐତିହ୍ୟଚିନ୍ତା, ଇତିହାସବୋଧ, ନିର୍ମୋହତା, ନିର୍ଭୀକତା ଓ ଅସୀମ ଧୈର୍ଯ୍ୟ । ରସବୋଧ ଓ ସୌନ୍ଦର୍ଯ୍ୟଦୃଷ୍ଟି, କବିତ୍ୱ ଓ କଳ୍ପନାଶକ୍ତି, ସର୍ବୋପରି ନିର୍ବାଚନ ଓ ମୂଲ୍ୟାୟନକୁ ସେ ପଛକୁ ରଖୁଥିଲେ । ଆବେଗ ଓ ତନ୍ମୟତାକୁ ବି ପ୍ରଶ୍ରୟ ଦେଉନଥିଲେ । ତଥ୍ୟସନ୍ଧାନ ଆଗ, ତତ୍ତ୍ୱଜିଜ୍ଞାସା ପଛ । ଗବେଷଣା ଆଗ, ସାହିତ୍ୟସ୍ନାନ ପଛ । ପ୍ରାଣରେ ନିରୋଳା ଗବେଷକଟିଏ ଥିଲେ ବୋଧହୁଏ ।

ତାଙ୍କରି ଏଷଣା ଓ ଅନ୍ତର୍ଦୃଷ୍ଟିରୁ ଆଜି ଓଡ଼ିଆ ଗବେଷଣା ଶୁଦ୍ଧ ପାଠ-ସଂପାଦନା ନେଇ ଉତ୍ସାହ ଦେଖାଇଛି । ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାଣପ୍ରତିଷ୍ଠାତା ଅଗ୍ରଦୂତମାନଙ୍କ ସୃଷ୍ଟିସମଗ୍ର ଯଥାଯଥ ସ୍ୱରୂପ ଫେରିପାଇଛନ୍ତି । ଊନବିଂଶ ଶତାବ୍ଦୀ ସାରସ୍ୱତ ପରିମଣ୍ଡଳର ବହୁ ଲୁପ୍ତ ତଥ୍ୟ ଓ ତତ୍ତ୍ୱଆବିଷ୍କୃତ ହୋଇଛି । ରଚନାସମଗ୍ର ସଂପାଦନାର ଧାରାଟି ପୂର୍ବାପେକ୍ଷା ପରିଷ୍କୃତ ଓ ବିଜ୍ଞାନସମ୍ମତ ପଦ୍ଧତିଟିକୁ ଆପଣାର କରିବା ଶିଖିଛି । ଓଡ଼ିଆ ଗବେଷଣାରେ କେବଳ ଓଡ଼ିଆ ସାହିତ୍ୟପାଠ ନୁହେଁ, ଅନ୍ତର୍ବିଦ୍ୟାଭିତିକ ଅନୁଶୀଳନର ଆବଶ୍ୟକତା ଉପଲବ୍ଧ ହୋଇଛି । ସାହିତ୍ୟ-ଇତିହାସ ଓ ନୂଆ ନୂଆ ସମାଲୋଚନା-ତତ୍ତ୍ୱ ନେଇ ଆଗ୍ରହଉତ୍ସାହ ପରିଲକ୍ଷିତ ହୋଇଛି । ତେବେ ତାଙ୍କୁ ବୁଝିବାକୁ ତାଙ୍କ ଲେଖା ଯଥେଷ୍ଟ ନୁହେଁ, ଲେଖା ଅପେକ୍ଷା ଆଲୋଚନାରେ ଉଜ୍ଜ୍ୱଳ ଦିଶନ୍ତି ସେ । ସେଥିପାଇଁ ତାଙ୍କ ସହ ଡାଏଲଗ୍ କରିବାକୁ ହୁଏ, ବ୍ୟାଖ୍ୟାନ ଶୁଣିବାକୁ ହୁଏ ତଥା ତାଙ୍କ ବିରଳ ବହିସଂଗ୍ରହର ସାନ୍ନିଧ ପାଇବାକୁ ହୁଏ । ସେ ବି ଅହରହ ସମଧର୍ମୀ ବନ୍ଧୁମାନଙ୍କ ସାନ୍ନିଧ୍ୟ ଲୋଡୁଥିଲେ । ସୃଜନରେ ବି ସାଥୀ ଖୋଜୁଥିଲେ । ସାହିତ୍ୟସୃଷ୍ଟି ତାଙ୍କ ପାଇଁ ନୀରବନିର୍ଜନ ମୁହୂର୍ତ୍ତଟିଏର ରୂପାୟଣ ନହୋଇ ଅନେକତ୍ର ଥିଲା ଯୌଥ ଉଦ୍ୟମର ଫଳଶ୍ରୁତି । କେବଳ ଜ୍ଞାନ କାହିଁକି କୃତିତ୍ୱ ବାଂଟିବାରେ ବି କୁଣ୍ଠା ନଥିଲା ତାଙ୍କର । ସେଇଥିପାଇଁ ହୁଏତ ସୃଜନାବେଗଟି ଅଭିମାନରେ ମୁହଁ ଫେରାଉଥିଲା, ତଥ୍ୟନିଷ୍ଠ ବିଦ୍ୟାଚର୍ଚ୍ଚାଟି ମୁଖର ହୋଇଉଠିଥିଲା । ତେବେ ତାଙ୍କ ପ୍ରତିପାଦ୍ୟଟି ଏହିଭଳି ଏକ ସଂଯୁକ୍ତ ପ୍ରୟାସର ଅପେକ୍ଷା କରୁଥିଲା ବୋଧେ । ଓଡ଼ିଆ ଗବେଷଣା ଓ ସଂପାଦନାରେ ଡାଏଲଗ୍ର ପ୍ରୟୋଜନୀୟତାକୁ ସେ ଅନୁଭବ କରିଥିଲେ ଓ ସ୍ୱଆବିଷ୍କୃତ ତଥ୍ୟଟିକୁ ସାବ୍ୟସ୍ତ କରିବାରେ ଆନନ୍ଦ ପାଉଥିଲେ । ଚର୍ଚ୍ଚା ଓ ଗବେଷଣାରେ ନିଜକୁ ଭେଟୁଥିଲେ ।

ଓଡ଼ିଆ ସାହିତ୍ୟ ବୃତ୍ତିବ୍ୟାକୁଳ ଗବେଷଣା ଓ ବିଦ୍‌ବତାଶୂନ୍ୟ ଅଧ୍ୟାପନାର ଦାରିଦ୍ର୍ୟ ଭୋଗୁଥିବାବେଳେ ଜଣେ ନିଷ୍ଠାପର ଗବେଷକ ଓ ବହୁପାଠୀ ଅଧ୍ୟାପକଟିଏ ହରାଇଲା । କେବଳ ବହିବିଳାସୀ ନଥିଲେ ସେ, ଭଲ ମଣିଷଟିଏ ବି ଥିଲେ । ବିଦବତା ଓ ସହୃଦୟତାର ସଂଯୋଗ ଘଟିଥିଲା ତାଙ୍କଠି । Good head and Good heartର ପାରସ୍ପରିକ ଆକର୍ଷଣଟିଏ ଥାଏ ବୋଧହୁଏ । ବିଦ୍ୟାର୍ଜନ ପାଇଁ ଅକୃପଣ ଭାବରେ ଦୁର୍ଲଭ, ଦୁର୍ମୂଲ୍ୟ ବହିପତ୍ର ସଂଗ୍ରହ କରିବା ଓ ଅକୁଣ୍ଠଚିତରେ ଗବେଷଣା ପାଇଁ ଅନ୍ୟମାନଙ୍କୁ ଯୋଗାଇଦେବାର

ଅଦ୍ଭୁତ ଉଦାର ମନ ଓ ହୃଦୟଟିଏ ଥିଲା ତାଙ୍କର । ତେବେ ବ୍ୟକ୍ତିଗତ ବିଫଳତା ବି ସାଙ୍ଗ ଛାଡ଼ିନଥିଲା । ନିଜକୁ ସମ୍ପୂର୍ଣ୍ଣ ଆବିଷ୍କାର ଓ ବିକଶିତ କରିପାରିବାର ଅନୁକୂଳ ବାତାବରଣ ସେ ପାଇପାରିନଥିଲେ । ସ୍ୱୟଂକୁ ସାବ୍ୟସ୍ତ କରିବାର ଅବସର ଭାଗ୍ୟ ଦେଇନଥାଏ ସଭିଙ୍କୁ । ଅନେକ ପ୍ରଫେସରଙ୍କୁ ଜ୍ଞାନ ବାଂଟିଥିବା ବ୍ୟକ୍ତିଜଣକ ପ୍ରଫେସର ନଥିଲେ । ଅନେକ ଗବେଷକଙ୍କୁ ଦିଶା ଦେଖାଇଥିବା ବ୍ୟକ୍ତିଜଣକ ମାର୍ଗଦର୍ଶକର ତଥାକଥିତ ଅଳଙ୍କାରଟି ପିନ୍ଧିନଥିଲେ । ନିଜ ଭିତରେ ସ୍ୱଚ୍ଛ ଓ ସଂଭ୍ରାନ୍ତ ହୋଇଥିଲେ ସମକାଳୀନ ପ୍ରତିଷ୍ଠା-ଦୌଡ଼ଠୁ ଦୂରରେ ରହିବାକୁ ହୁଏ । ବିଘରସଂଜାତ ସାରସ୍ୱତ କ୍ରୋଧ ଓ ଉଜ୍ଜ୍ୱଳ ଏକ ସ୍ୱାଭିମାନ ସାଜୁଥିବା ଭଳି ବିରଳ ବିଦ୍ୱାନ୍ ବ୍ୟକ୍ତିତ୍ୱଟିଏ ଥିଲେ ସେ । ଜ୍ଞାନାର୍ଜନ ଓ ଜ୍ଞାନଦାନର ଉତ୍ସାହ ଭିତରେ ମୁକ୍ତି ଖୋଜିଥିଲେ । ତାଙ୍କରି ସ୍ୱଭାବଜ ଜ୍ଞାନତୃଷ୍ଣା ଓ ଉଦାର ଜ୍ଞାନଦାନ ଆମକୁ ଉତ୍ସାହିତ କରୁ । ତରୁଣ ଗବେଷକମାନେ ତାଙ୍କ ଅବର୍ତ୍ତମାନତାରୁ ପ୍ରେରଣା ନେଇ ଓଡ଼ିଆ ସାହିତ୍ୟ-ଗବେଷଣାରେ ଅନୁଭୂତ ଶୂନ୍ୟତାଟିକୁ ପୂରଣ କରନ୍ତୁ ।

*ନୂଆଦିଲ୍ଲୀ*



ବିନୋଦ କୁମାର ମଲ୍ଲିକ

# ହସନ୍ତ ମଣିଷ ଦେବେନ୍ଦ୍ର ଦାଶ

ମୁଁ ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନର ସଭ୍ୟ ହେବାଠାରୁ ମୋ ଚିହ୍ନା ବା ଅଚିହ୍ନା ସଭ୍ୟମାନଙ୍କ ମଧ୍ୟରୁ ଯେଉଁ ଅଚିହ୍ନା (ମୁଁ ତାଙ୍କ ପାଖରେ) ଲୋକଟିଏ ଖୁବ୍ ଆପଣାର ଲାଗନ୍ତି ସେ ହେଉଛନ୍ତି ଦେବେନ୍ଦ୍ର କୁମାର ଦାଶ ସାର୍। ମୁଁ ପ୍ରାୟ ସବୁ ସମ୍ମିଳନୀରେ ତାଙ୍କୁ ଦେଖିଛି, ନମସ୍କାର କରିଛି। ସେ କିନ୍ତୁ ମୋ ନାଁ କି ଠିକଣା କିଛି ଜାଣନ୍ତି ନାହିଁ। ମୁଁ ତାଙ୍କୁ ଏଇଥିପାଇଁ ଭଲପାଏ ଯେ, ସେ କେମିତି ହସିହସି ଆପଣାଠାରୁ ଆହୁରି ଆପଣାର ପରି ବ୍ୟବହାର କରନ୍ତି। ବେଳେବେଳେ ମୁଣ୍ଡରେ ହାତ ରଖି ଆଶୀର୍ବାଦ କରନ୍ତି। ଯା'ଠାରୁ ମୋ ପାଇଁ କ'ଣ ଆଉ ଗୌରବର କଥା ଥାଇପାରେ ? ମୁଣ୍ଡରେ ହାତ ରଖୁରଖୁ ପଚାରନ୍ତି ଭଲ ଅଛ ? ଆଉ ସବୁ ଖବର କ'ଣ ? ଏ ଜାଗାରେ କ'ଣ ଆଉ ପରିଚୟ ଆଦାନପ୍ରଦାନର ଆବଶ୍ୟକତା ଥାଏ କି ? ତାଙ୍କର ସେଇ ସ୍ନେହମମତା ପାଖରେ ମୁଁ କେମିତି ତଲ୍ଲିନ ହୋଇଯାଏ, କିଛି କହିପାରେନା। ଏପରି କି ମୋ ନାଁ ବି। ମୁଁ ଭଲ ଭାବରେ ଜାଣିଛି ସେ ମୋ ନାଁ ଜାଣନ୍ତି ନାହିଁ। ମୋ ଭଳି ଅନେକ ଲୋକଙ୍କ ନାଁ ମଧ୍ୟ ଜାଣନ୍ତି ନାହିଁ, କିନ୍ତୁ ସେ ସମସ୍ତଙ୍କୁ ଆପଣାର ବୋଲି ଭାବି କଥା ହୁଅନ୍ତି। ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନକୁ ସେ ନିଜର ପରିବାର ବୋଲି ଭାବୁଥିଲେ। ତାଙ୍କ ପରିବାରକୁ ଆସୁଥିବା ସଭ୍ୟ/ଲୋକଙ୍କର ପୁଣି ପରିଚୟ କ'ଣ ପଚାରିବେ ?

ଟିଭି ନିୟୁଜ୍‌ରେ ତାଙ୍କ ବିୟୋଗଜନିତ ଖବର ଦେଖି ନିଜକୁ ବିଶ୍ୱାସ କରିପାରିଲି ନାହିଁ। ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନ ଗ୍ରୁପ୍, ଓଇଏସ୍ ହ୍ୱାଟସ୍ ଗ୍ରୁପ ଖୋଲି ଦେଖିଲି ସବୁଆଡ଼େ ସାର୍‌ଙ୍କ ବିୟୋଗ ଜନିତ ଦୁଃଖଦ ଖବର। ବହୁ ଲୋକ ଶୋକ ବ୍ୟକ୍ତ କରୁଥାନ୍ତି, ମୁଁ ମଧ୍ୟ ସେଥିରେ ସାମିଲ ହୋଇଗଲି। ମୁଁ ଗୋଟେ କଥା ବୁଝି ପାରୁ ନଥିଲି ସଦା ହସହସ ମଣିଷଟି କେମିତି ସମସ୍ତଙ୍କ ଆଖିରେ ଲୁହ ଭରି ଦେଇ ଏତେ ଶୀଘ୍ର ଚାଲିଗଲେ।

ତାଙ୍କ ପକ୍ୱ ଶ୍ମଶ୍ରୁରେ କଇଁଫୁଲିଆ ହସ ଦେଖିଲେ କେହି କ'ଣ ବିଶ୍ୱାସ କରିପାରିବେ ସେ ଏତେ ଶୀଘ୍ର ଆମ ସମସ୍ତଙ୍କୁ ପରକରି ଅଫେରା ରାଇଜକୁ ଚାଲିଯାଇ ପାରିବେ। ମୁଁ ଜାଣିଥିଲି ହସ ହେଉଛି ସମସ୍ତ ରୋଗର ମଉଷଧି। ଯାହା ମୁହଁରେ ହସ ଭରି ରହିଥିବ ତା ପାଖକୁ ସ୍ୱୟଂ ଯମରାଜ ମଧ୍ୟ ଆସିବାକୁ ଭୟ କରନ୍ତି। କିନ୍ତୁ ସାରଙ୍କ ପାଖରେ ଏମିତି ଓଲଟପାଲଟ ହୋଇଗଲା କାହିଁକି।

ରେଭେନ୍ସାରେ ସେଭେନ୍ ପିଲାର ଅଫ୍ ଉଇଡ୍‌ଜମ୍‌ର ସମ୍ମିଳନୀ କକ୍ଷରେ ତାଙ୍କ ସହିତ ଆମର ଶେଷ ସାକ୍ଷାତକାର ଥିଲା। ସେ ସେହି ବାର୍ଷିକ ଉତ୍ସବରେ ଅନେକ ପ୍ରତିଶ୍ରୁତି ଦେଇଥିଲେ, ସଂଗଠନକୁ ଆହୁରି ବ୍ୟାପକ କରିବାକୁ ସଭ୍ୟମାନଙ୍କୁ ଉପଦେଶ ଦେଇଥିଲେ। ସମସ୍ତ ଓଡ଼ିଆ ଅଧ୍ୟାପକ ଯେପରି ଏହି ସମ୍ମିଳନୀରେ ସଭ୍ୟ ହେବେ ସେ ଦିଗରେ ଅନେକ ପ୍ରଚେଷ୍ଟା କରିଛନ୍ତି। ତାଙ୍କର କିଛି ସ୍ୱପ୍ନ ପୂରଣ ହୋଇଛି, ଆଉ କିଛି ଅଛି, ଯାହା ଆମମାନଙ୍କ ଉପରେ ଛାଡ଼ିଯାଇଛନ୍ତି। ଏହି ଅବସରରେ ତାଙ୍କ ପବିତ୍ର ସ୍ମୃତି ଚାରଣ କରି ମୁଁ ନିଜକୁ ଗର୍ବ କରିବା ସହିତ ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରୁଛି। ତାଙ୍କ ପରିବାରକୁ ଏହି ଦାରୁଣ ଦୁଃଖ ସହିବାର ଶକ୍ତି ପ୍ରଭୁ ଦିଅନ୍ତୁ ବୋଲି ବିନୀତ ପ୍ରାର୍ଥନା କରୁଛି।

*କେନ୍ଦ୍ରାପଡ଼ା*

## ଅପର୍ଣ୍ଣା ମହାନ୍ତି

# ଦେବେନ୍ଦ୍ର: ସ୍ମୃତିଲେଖ

ଆକାଶରୁ ବଜ୍ରପାତ ହେଲା ପରି ଏକ ଦୁଃସମ୍ବାଦ । ମାତ୍ର ଦୁଇଦିନର ସାମାନ୍ୟ ଅସୁସ୍ଥତା ପରେ ଓଡିଆ ସାହିତ୍ୟର ଷ୍ଟାର ଗବେଷକ ଚାଲିଗଲେ । ଘନିଷ୍ଠ ବନ୍ଧୁମାନଙ୍କ ସହ ମିଶି କେତେ ଯୋଜନା କରିଥିଲେ । ସବୁ ଅଧା ରହିଗଲା । ଗଭୀର ପ୍ରଜ୍ଞା, ଏଷଣା, ଧୀଷଣା ସହିତ ଜଣେ ନିରହଂକାରୀ, ବନ୍ଧୁବତ୍ସଳ ମଣିଷ ଯେ ଏମିତି ଉଭେଇଯିବେ, ଏକଥା କାହାରି ବିଶ୍ୱାସ ହେଉ ନଥିଲା । ଉତ୍କଳଭାରତୀ ତା'ର ଜଣେ ସତ୍ୟାନ୍ୱେଷୀ ସୁସନ୍ତାନକୁ ହରାଇଲା ।

ଦେବବାବୁ ବିରଳ ବ୍ୟକ୍ତିତ୍ୱସମ୍ପନ୍ନ ମଣିଷ । ଅମାୟିକ ଅଥଚ ଅନମନୀୟ । ଅନୁଗୋଳ କଲେଜରେ ଆୟୋଜିତ ଏକ ସଂପାନରେ ବନ୍ଧୁ ଗୌରାଙ୍ଗ ଚରଣ ଦାଶ ମାଧ୍ୟମରେ ତାଙ୍କ ସହ ମୋର ପରିଚୟ ପ୍ରଥମ । କଥାବାର୍ତ୍ତା ଛଳରେ ସେ କହିଥିଲେ, ମୋର କବିତାର ସ୍ୱର ତାଙ୍କୁ ଏକାଧାରାରେ ଆକର୍ଷିତ ଏବଂ ବିତର୍କିତ ହେବାକୁ ଆହ୍ୱାନ ଦିଏ । ତାଙ୍କର ଏ ସ୍ପଷ୍ଟବାଦିତା ମତେ ଖୁବ ପ୍ରଭାବିତ କରିଥିଲା । କ୍ରମଶଃ ଗଢିଉଠିଥିଲା ଆନ୍ତରିକତା । ମନେପଡୁଛି, ପୁଅ ବାହାଘରରେ ଘର ଠିକଣା ଖୋଜି ଆସି ନିମନ୍ତ୍ରଣ କରିବା। ଦେଖାହେଲେ କୁଶଳ ଜିଜ୍ଞାସା ସହ ନିର୍ମଳ ହସଟିଏ ଖେଳିଯାଉଥିଲା ତାଙ୍କ ମୁହଁରେ । ନଗେନ୍ଦ୍ରବାଳାଙ୍କର ନିଷ୍ଠୁର ବାସ୍ତବତା ସହ ସେ ହିଁ ମୋର ବିଦ୍ରୋହୀ ଚେତନାକୁ ପରିଚିତ କରାଇଥିଲେ ।

ତାଙ୍କର ଅନେକ ଘନିଷ୍ଠବନ୍ଧୁ ଓ ସହଯୋଗୀ ମୋର ସାନଭାଇ ପରି, ପ୍ରିୟ । ଦେବବାବୁଙ୍କ ପରିବାର ସହିତ ସେମାନେ ମଧ୍ୟ ଭାଙ୍ଗିପଡିଛନ୍ତି ଦୁଃଖରେ । ଆହୁରି ଅନେକ ପ୍ରକଳ୍ପର କାମ ବାକି ଥିଲା । ତାଙ୍କ ପରି ନିରଳସ ସାଧକ ଆଉ ଜଣେ ମିଳିବେ ନାହିଁ ଓଡିଆ ସାରସ୍ୱତ ଆକାଶର ଏହି ଚିର ଅନସ୍ତମିତ ନକ୍ଷତ୍ରଙ୍କୁ ମୋର ଅଶ୍ରୁତ ଶ୍ରଦ୍ଧାଞ୍ଜଳି । ସେ ନାହାନ୍ତି ନୁହଁ, ଅଛନ୍ତି । ଏଇଠି ଅଛନ୍ତି । ଆମ ଗହଣରେ ।

*କେନ୍ଦ୍ରାପଡା*

ରୁକ୍ମିଣୀ ସାହୁ

# ଏକ ଅମଉଳା ଫୁଲର ଅନୁଭବ

କିଏ ଜାଣିଥିଲା ? 'ଫୁଲ ଫୁଟିବାର କାହାଣୀ'ର ଲେଖକଙ୍କର ହଠାତ ଜୀବନ ଫୁଲଟି ଭାଦ୍ରବର କେଉଁ ଏକ ଅସତର୍କ ଅଶୁଭ ମଧ୍ୟାହ୍ନ ସୂର୍ଯ୍ୟରେ ଗୁରୁପୁଷ୍ୟା ଯୋଗରେ ମଉଳିପଡିବ ? ପ୍ରଜ୍ଞାରୂପକ, ସାହିତ୍ୟ ରୂପକ ସୂର୍ଯ୍ୟକୁ କେଉଁ ସୂର୍ଯ୍ୟ ବା ଦଗ୍ଧୀଭୂତ କରିପାରେ ? ସମୟସାଗର ଯାହାର ପାଦ ନିକଟରେ ସ୍ତବ୍ଧ ହୋଇଯାଏ, ମହାକାଳ ଯେଉଁଠି ତାର ଶିର ନୁଆଁଇଦିଏ । ସେହି ସୁସାହିତ୍ୟିକ, ବାଗ୍ମୀ, ବିଶିଷ୍ଟ ସମାଲୋଚକ, ଗବେଷକ, ସଂପାଦକ, ସଂଗଠକ ଦେବେନ୍ଦ୍ର କୁମାର ଦାଶଙ୍କୁ ମୋର ଲୋତକାଞ୍ଜଳିରେ ବିନମ୍ର ଶ୍ରଦ୍ଧାଞ୍ଜଳି ।

ତାଙ୍କ ସହିତ ମୁଁ ଦୀର୍ଘ ଚଉଦ ବର୍ଷ ମ୍ୟୁନିସିପାଲ ମହାବିଦ୍ୟାଳୟରେ ଏକାଠି ଓଡିଆ ବିଭାଗରେ କାମ କରିଛି । ମୋ ଭିତରେ ବହୁ ତିକ୍ତମଧୁର, ହସକାନ୍ଦ, ବାଦବିସମ୍ବାଦ, ମାନଅଭିମାନର ସ୍ମୃତି ।  ତାଙ୍କ ଭଳି ଜଣେ ସ୍ପଷ୍ଟବାଦୀ, ସଚ୍ଚୋଟ, ଉଦାରଚେତା ବ୍ୟକ୍ତିତ୍ୱ ମୁଁ କମ୍ ଦେଖିଛି । ସେ ଏକାଧାରରେ ଯେପରି ସାହିତ୍ୟ ସିଂହ, ପୁରୁଷ ସିଂହ । ଅନେକଥର ମୁଁ ତାଙ୍କୁ କହିଛି, ସାର୍, ଆପଣଙ୍କ ନାଁ ଦେବେନ୍ଦ୍ର ନ ହୋଇ ମାନବେନ୍ଦ୍ର ହୋଇଥିଲେ ଠିକ୍ ହୋଇଥାନ୍ତା। ନିରବରେ ହସିଛନ୍ତି । ୧ ୯ ୯୩ ମସିହାରେ ପ୍ରଥମେ ଭଦ୍ରକରୁ ମ୍ୟୁନିସିପାଲ ବଦଳି ହୋଇ ଆସିବାବେଳେ କୃଷ୍ଣଚରଣ ବେହେରାଙ୍କର ଖଣ୍ଡିଏ ଚିଠି ଆଣି ତାଙ୍କୁ ଦେଇଥିଲି । ମୋତେ କହିଥିଲେ, ତୁମେ ଯାଅ, କିଛି ଅସୁବିଧା ହେବ ନାହିଁ, ମୋର ଛାତ୍ର ଦେବେନ୍ଦ୍ର ସେଠି ଅଛି । ଚିଠି ହାତରେ ତାଙ୍କ ସହିତ ପ୍ରଥମ ସାକ୍ଷାତ । ଚିଠିଟି ପଢିସାରି ମୋତେ କହିଥିଲେ- କାହିଁକି ଏ ଜାଗାକୁ ଆସିଲେ ମ୍ୟାଡାମ୍ ? ଆପଣ କଣ ଏଠି ପାରିବେ ? ଉତ୍ତରରେ କହିଥିଲି- "କ୍ଷେତ୍ରେ ପରୀକ୍ଷା ପ୍ରାର୍ଥନୀୟ ପାର୍ଥ" ଆପଣ ବେଶ୍ ବିଜ୍ଞ । ଏକଥା କିଏ, କାହାକୁ, କାହିଁକି, କଣ ପାଇଁ କହିଥିଲା, ତାକୁ ମୁଁ ଦୋହରାଇବି ନାହିଁ । ଅଧ୍ୟକ୍ଷଙ୍କ ପ୍ରକୋଷ୍ଠରେ କଥାବାର୍ତ୍ତା । ସେତେବେଳେ ଦଶରଥ ପଟେଲ ଅଧକ୍ଷ ।

ତେବେ ସେ ଯାହା ହେଉ, ମ୍ୟୁନିସିପାଲ ଆପଣଙ୍କୁ ପାଇ ଧନ୍ୟ । ମୁଁ ନିରବରେ ହାତଯୋଡି ଦେଇଥିଲି ।

ଜାତୀୟ ସଂସ୍ଥାନରେ ଯୋଗ ଦେବା ପାଇଁ ସେ ଟିଟିଲାଗଡ ଯାଇଥିଲେ । ମୁଁ ମଧ୍ୟ ଯାଇଥିଲି । ମୋର ପେପର ପଢିବାର ଥିଲା । ଅଜାମ୍ବର ମଲ୍ଲ ସାର ସେଠି ଥିଲେ । ଆମକୁ ନିମନ୍ତ୍ରଣ କରିଥିଲେ । ସାଙ୍ଗରେ ମୋର ସ୍ୱାମୀ ଆଉ ପୁଅ । ପୁଅ ଖୁବ ଛୋଟ ଥିଲା । ମୁଁ ପେପର ପଢିବା ସମୟରେ ଖୁବ୍ ଜୋରରେ ସେ କାନ୍ଦିଲା । ମୋ ସ୍ୱାମୀ ତାକୁ ସମ୍ଭାଳିପାରିଲେ ନାହିଁ । ଦେବେନ୍ଦ୍ରବାବୁ ତାକୁ କାଖେଇ ନେଇ ପାଖ ପାନ ଦୋକାନରୁ ବେଲୁନ, ଚକଲେଟ ଦେଇ ବୋଧବାଧ କଲେ । ଛୋଟ ପିଲାଙ୍କୁ ସେ ଖୁବ ଭଲ ପାଆନ୍ତି ।

ପାଖାପାଖି ବୈଷ୍ଣବ ସାର ଓ ଆମେ ସବୁ ସେଠି ଗୋଟେ ଗେଷ୍ଟହାଉସରେ ରହିଥିଲୁ । ସେ ରାତିରେ ଗପ କରୁଥାନ୍ତି । ପୁଅ ମୋତେ ନ ଦେଖିଲେ ରହିପାରେ ନାହିଁ । ମୁଁ ଘୋଡା ହେବି ଆଉ ସେ ମୋ ପିଠି ଉପରେ ବସିବ । ସେଦିନ ଦେଖିଲି, ଜଣେ ଦାମ୍ଭିକ ବ୍ୟକ୍ତିସତ୍ତା ଭିତରେ ବି କେମିତି ନରମ, କୋମଳ ପିତୃତ୍ୱ ଗୋପନୀୟ ଥାଏ । ଲେଖିବସିଲେ ତ ସରିବ ନାହିଁ । ସେହିଭଳି ଏକ ଅମଉଳା ଫୁଲର ଅମରତ୍ୱ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ପ୍ରାର୍ଥନା, ସେ ଆନନ୍ଦରେ ଥାନ୍ତୁ ।

ତାଙ୍କ ସାହିତ୍ୟାଲୋକରେ ଏ ଜାତି ଉଜ୍ଜଳତର ଦିଶିବ, ଏଥିରେ ସନ୍ଦେହ ନାହିଁ । ସେ ସାହିତ୍ୟ ଉଦ୍ୟାନର ଏକ ଅମଉଳା ଫୁଲ ।

*ରାଉରକେଲା*

ସଂଜିତା ମିଶ୍ର

# ଗୋଠଚଂଦ୍ରମା

ହଁ, ସେ ଥିଲେ ଗୋଠଚଂଦ୍ରମା। ଶ୍ରେଷ୍ଠ, ବରିଷ୍ଠ ଓ କର୍ମନିଷ୍ଠ।

ଆମ ଓଡ଼ିଆ ଅଧ୍ୟାପକଗୋଠ ମଧ୍ୟରେ ସେ ପ୍ରଜ୍ଞାଯୁକ୍ତ ଉଜ୍ଜ୍ୱଳ ଚଂଦ୍ରମା ସମ। ଫକୀରମୋହନ ଗ୍ରଂଥାବଳୀର ନୂତନ ସଂସ୍କରଣରୁ ମୁଖବଂଧଟି ପଢ଼ି ଏଇ ଚଂଦ୍ରମାଂକ ଦର୍ଶନ ନିମଂତେ ଇଚ୍ଛା ଜାଗିଲା। ରେଭେନ୍ସା ବିଶ୍ୱବିଦ୍ୟାଳୟର ଗୋଟିଏ ପାଠଚକ୍ରରେ ସାର୍‌ଙ୍କ ସହ ପରିଚୟ ହେଲା। ସେ ଆଲୋକଦ। ମୋର ତ୍ରୁଟିଗୁଡ଼ିକ ସୂଚାଇ ଦେଲେ ଅଥଚ ତାହା ତ୍ରୁଟି ବୋଲି କହିଲେନାହିଁ। ଅଂଧାର ଘରଭିତରେ ଥିବା ଗବେଷକ ନିମଂତେ ସେ ଆସ୍ତେ ଦୀପଟିଏ ଜାଳିଦିଅଂତି ଅଥଚ ଆଲୋକ ଦେବାର ଦାତାପଣ ଦାବି କରଂତିନାହିଁ।

ସେହି ଶୀତଳ ଚଂଦ୍ରମା ହିଁ ପ୍ରେରଣା ଦେଲେ ଓଡ଼ିଆ ଭ୍ରମଣସାହିତ୍ୟର ଭଗୀରଥ ଫକୀରମୋହନ ପ୍ରବଂଧଟି ଲେଖିବା ନିମଂତେ। ସେ ହିଁ ବର୍ତ୍ତିକା ଦେଖାଇଥିଲେ ଫକୀରମୋହନଙ୍କ ଆତ୍ମଜୀବନୀକୁ ନେଇ ପ୍ରବଂଧ ଲେଖି ଓଡ଼ିଶା ସାହିତ୍ୟ ଏକାଡେମୀର ସଂପାନରେ ପାଠକରିବାପାଇଁ।

ଆମ କଲେଜର ମଧୁଜୟଂତୀ ଉତ୍ସବରେ ତାଙ୍କ ଦୀକ୍ଷାଂତ ଅଭିଭାଷଣ, ସଂପୂର୍ଣ୍ଣ ନୂତନ ତଥ୍ୟ ପରିବେଷଣ ଓ ତତୋଽଧିକ ନୂତନ ଦୃଷ୍ଟିକୋଣ ସଭିଂକୁ ବିମୁଗ୍ଧ କରିଦେଲା। ଯେତେବେଳେ ଆମ କଲେଜର ସମାଜବିଜ୍ଞାନୀମାନେ ସାର୍‌ଙ୍କ ବିଶ୍ଳେଷଣର ବିମୁଗ୍ଧ ପ୍ରଶଂସାକଲେ, ସେତେବେଳେ ମୋର ପ୍ରାଣକୁ ପ୍ରଚୁର ସାନ୍ତ୍ୱନା ମିଳିଥିଲା।

ମାତ୍ର ଗୋଟିଏ ମାସ ମଧ୍ୟରେ ମଧୁସୂଦନ, ମହାତ୍ମା ଗାନ୍ଧୀ ଓ ଓଡ଼ିଶା ପ୍ରସଙ୍ଗକୁ ନେଇ ଯେଉଁ ଗବେଷଣାତ୍ମକ ଗ୍ରଂଥଟି ଆମ ମହାବିଦ୍ୟାଳୟ ତରଫରୁ ପ୍ରକାଶ କରାଗଲା, ସେ ତା'ର ପଚ୍ଛପୁରୋଧା ଥିଲେ। ସେହି ଅବସରରେ ଦିନେ ସଂଜବେଳେ ମୁଁ ଓ ସାର୍‌ଙ୍କ ପାଖରେ ପାଠ ପଢ଼ିବାର ସୁଯୋଗ ପାଇଥିବା ସୌଭାଗ୍ୟବାନ ଛାତ୍ର କମଳ, ଭୁବନେଶ୍ୱର ବସାଘରେ

ତାଂକୁ ଭେଟିଥିଲୁ। ସେଦିନ ସାର୍ କହିଥିଲେ, ଫକୀରମୋହନଂକ ଗଳ୍ପରେ ବ୍ୟବହୃତ ମିଥ୍ ବିଷୟରେ କାମ ହେଇନି। ତମପରି କେହି ଆସିଲେ ମୁଁ କହିଦିଅଂତି, ତମେମାନେ ଲେଖିଦିଅଂତ।

ଏମିତି କ'ଣ କେହି କାହାକୁ ଛାଡ଼ି ଦେଇ ଚାଲିଯାଆଂତି ! ମୁଁ ସଂପୂର୍ଣ୍ଣ ନିଃସ୍ୱ ହେଇଯିବା ପରି ଅନୁଭବ କଲି। ଦେବେନ୍ଦ୍ର ସାର୍‌ଙ୍କୁ ହରାଇଦେବା ଅର୍ଥ ବିମଳ ଚଂଦ୍ରାଲୋକ ହରାଇବା। ସେ ହିଁ ନିଜେ ଦୃଷ୍ଟାଂତ ହୋଇ ଆମକୁ ଦେଖାଇ ଦେଇଥିଲେ ଯେ, ଜ୍ଞାନୀ ଲୋକଟିଏ ସବୁବେଳେ କ୍ରୋଧୀ କି କଠୋର ହେବ ନାହିଁ। ଜ୍ଞାନଦାତା ପ୍ରଚଂଡ଼ ମାର୍ତ୍ତଂଡ ନ ହୋଇ ଶୀତଳ ଜହ୍ନ ମଧ୍ୟ ହୋଇପାରିବ। ସାର୍‌ଙ୍କର ପ୍ରଜ୍ଞାଦୀପ୍ତି ରଜତକିରଣ ସମ ଶୀତଳ।

ହେ ଗୋଠଚଂଦ୍ରମା, ମୋର ଅନେକ ପ୍ରଶ୍ନ ରହିଗଲା ଯାହା ଆପଣଂକୁ ପଚାରି ପାରିଲିନାହିଁ। ମୋର ଅନେକ ଭକ୍ତିପୂତ ପ୍ରଣତି ନିବେଦନ କରିବାର ଥିଲା, ଯାହା ମୁଁ ଅରପି ପାରିଲିନି। ଆପଣ କହିବାକୁ ଚାହୁଁଥିବା ପ୍ରସଂଗମାନ ମୋର ଟିପି ଆଣିବାର ଥିଲା, ଯାହା ମୁଁ କରିଲି ନାହିଁ।

ଆପଣ କ'ଣ ନିରବରେ ଶିକ୍ଷା ଦେଇଗଲେ ଯେ ପ୍ରତିଟି ମୁହୂର୍ତ୍ତ ମୂଲ୍ୟବାନ। କାଲିର ଝୁଲିରେ ଆଜିଟି ପଡ଼ିବା ପୂର୍ବରୁ ହିଁ ଯାହା କରିବାର କଥା କରିଯାଅ। ଆପଣଂକ କୃତିର ଅନ୍ତ ନାହିଁ। ଗବେଷଣା ଥିଲା ଆପଣଂକ ନିଶା, ପେଶା ଓ ବେଉସା।

ପୃଥିବୀର କେଉଁ ଏକ କୋଣରୁ ଆଂଜୁଳାଏ ଅଶ୍ରୁଭିଜା ଶ୍ରଦ୍ଧାଞ୍ଜଳି ଗ୍ରହଣ କରିବା ହେବେ। ଆଜିର ଏ ଅପୂର୍ଣ୍ଣିମା ତିଥିରେ।

*କଟକ*

## ଚୈତନ୍ୟ କର୍ମୀ

# ସ୍ମରଣୀୟ ଦେବେନ୍ଦ୍ର

୧୯୯୭ ମସିହାରୁ ୧୯୯୯ ମଧ୍ୟରେ ପଣ୍ଡିତ ରାଘବ ମିଶ୍ରଙ୍କ ରଚନାବଳୀ ସଂଗ୍ରହ କାର୍ଯ୍ୟରେ ସଂପୃକ୍ତ ଥାଏ । ଉଦ୍ଦେଶ୍ୟ "ରାଘବ ଗ୍ରନ୍ଥାବଳୀ" ପ୍ରକାଶନ । ଏହି ଅବସରରେ ପ୍ରଫେସର ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କୁ ସାକ୍ଷାତ କଲି । ସେ ପରାମର୍ଶ ଦେଲେ "ବାବୁ, ତୁମ୍ଭେ ଦେବେନ୍ଦ୍ର ଦାଶ ପାଖକୁ ଯାଅ, ସେ ରାଉରକେଲା ମହାବିଦ୍ୟାଳୟରେ ଅଛନ୍ତି । ଯଥେଷ୍ଟ ସାହାଯ୍ୟ କରିପାରିବେ ।" ମୁଁ ରାଉରକେଲା ଯାଇ ଦାଶ ମହୋଦୟଙ୍କୁ ସାକ୍ଷାତ କରିବାରୁ ସେ କହିଲେ, 'ସ୍ୱଭାବ କବି ଗଙ୍ଗାଧରଙ୍କ ସମ୍ବନ୍ଧରେ ପଣ୍ଡିତ ରାଘବ ମିଶ୍ର ଯାହା ଲେଖିଛନ୍ତି । ସେ ସମସ୍ତ ମୋ ପାଖରେ ଅଛି, ଆପଣ ନେଇପାରିବେ' । ରାଘବ ମିଶ୍ରଙ୍କ ଅନ୍ୟ ଲେଖା 'ସମ୍ବଲପୁର ହିତୈଷିଣୀରେ ପ୍ରକାଶପାଇଛି । ଆପଣ ଦେବଗଡ ସୁଢଳ ଦେବ ପାଠାଗାର ଯାଇ ସଂଗ୍ରହ କରିପାରିବେ । ' ଦେବେନ୍ଦ୍ର ଦାଶ ମହାଶୟଙ୍କ ପାଖରୁ କବିତାଗୁଡିକୁ ଆଣି 'ରାଘବ ଗ୍ରନ୍ଥାବଳୀ' ସ୍ଥାନିତ କରିଅଛୁ। ରାଘବ ଗ୍ରନ୍ଥାବଳୀ ପ୍ରକାଶ ପାଇଲା ୨୦୦୦/ ୨୦୦୧ ମସିହାରେ । ଦାଶ ମହୋଦୟ ମୋ ହୃଦୟରେ ଚିର ସ୍ୱର୍ଣ୍ଣିମ ସ୍ମରଣୀୟ ଭାବରେ ରହିଯାଇଛନ୍ତି । ତାଙ୍କୁ ଶତକୋଟି ପ୍ରଣାମ ଜଣାଇ ରହୁଛି ।

*ବରଗଡ*

## ମନୋଜ ମହାପାତ୍ର

# ରେ ଆତ୍ମନ୍ ! ନିଦ୍ରା ପରିହରି

ସାହିତ୍ୟ ସମ୍ପାଦନା ଜଗତର ଶାଶ୍ୱତ ପ୍ରହରୀ ଦେବେନ୍ଦ୍ର କୁମାର ଦାଶ । ଆମ ପରିବାର ଆଉ ପ୍ରକାଶନର ଜଣେ ସଦସ୍ୟ । ସମଗ୍ର ସାହିତ୍ୟପ୍ରେମୀଙ୍କର ଏକ ଶ୍ରଦ୍ଧାଶୀଳ ନାମ । ତାଙ୍କର ଅକାଳ ବିୟୋଗ ଆମ ସାହିତ୍ୟ ଜଗତର ଏକ ଅସ୍ମରଣୀୟ କ୍ଷତି । ପ୍ରତ୍ୟେକଙ୍କୁ ସେ ନିଜର ଆତ୍ମୀୟ ମନେକରନ୍ତି । ସାହିତ୍ୟ ଯେ ଏକ ତପସ୍ୟା, ଏହା ମୁଁ ଦେବେନ୍ଦ୍ରବାବୁଙ୍କଠାରେ ଅନୁଭବ କରିଥିଲି । ମୋ ନନାଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନ ମୋତେ ଆଶ୍ଚାର୍ଯ୍ୟାନ୍ୱିତ କରେ । ଉଭୟଙ୍କର ଉଭୟଙ୍କ ପ୍ରତି ଆକର୍ଷଣ କେବଳ ଅନୁଭବର ବିଷୟ । ସେ ସୌଭାଗ୍ୟ ମୁଁ ପାଇଥିଲି । ମାତ୍ର ଉଭୟେ ଦିବଂଗତ ହୋଇଥିଲେ ମଧ୍ୟ ତାଙ୍କର ଉପସ୍ଥିତି ପ୍ରତି ସ୍ମରଣରେ ଅନୁଭବ କରେ । ମାତୃଭାଷାର ସଂରକ୍ଷଣରେ ଉଭୟଙ୍କ ଅବଦାନ ଭୁଲିବାର ନୁହେଁ ।

ସାହିତ୍ୟ ପ୍ରତି କର୍ତ୍ତବ୍ୟ ପରାୟଣତା ଦେବେନ୍ଦ୍ରବାବୁଙ୍କ ସମର୍ପଣର ଶୀର୍ଷ ସ୍ପର୍ଶ କରିଥିଲା । ରାଉରକେଲା ଅବସ୍ଥାନ ବେଳେ 'ପ୍ରଗତି ଉତ୍କଳ ସଂଘ'ର ପ୍ରକାଶନ ପାଇଁ ଅନେକ ଥର କଟକ ଆସି କେତେ ଯେ ପରିଶ୍ରମ କରନ୍ତି, ନ ଦେଖିଲା ମଣିଷ ବିଶ୍ୱାସ କରିପାରିବ ନାହିଁ। ତାଙ୍କ ତ୍ୟାଗ ଆଉ ସମର୍ପଣର ଭାବ ଅତୁଳନୀୟ । 'ପ୍ରଗତି ଉତ୍କଳ ସଂଘ'ର ସମସ୍ତ ଗୌରବମୟ ପ୍ରକାଶନ ଦେବେନ୍ଦ୍ରବାବୁ ଓ ଶ୍ରୀଚରଣବାବୁଙ୍କ ସାହିତ୍ୟ-ଶ୍ରଦ୍ଧାର ନିଦର୍ଶନ ।

ପ୍ରଚଣ୍ଡ ଗ୍ରୀଷ୍ମର ପ୍ରାଦୁର୍ଭାବକୁ ଖାତିର ନକରି କଟକର ଏକ ଛୋଟ ହୋଟେଲରେ ମାସ ମାସ ରହି ଶ୍ରୀରାମଚନ୍ଦ୍ର ଭବନ ପାଠାଗାରର ଅମୂଲ୍ୟ ସମ୍ପଦକୁ ନିରୀକ୍ଷଣ କରି ଶୁଦ୍ଧ ସାହିତ୍ୟ ସଂପାଦନାରେ ନିଜ ଜୀବନକୁ ଉତ୍ସର୍ଗ କରିଦେଇଥିଲେ । ସମସ୍ତ ଘାତ ପ୍ରତିଘାତକୁ କେବଳ ଏକ ମୃଦୁ ହସରେ ଉଡାଇ ଦେଇ ମା' ଉତ୍କଳ ଭାରତୀଙ୍କର ସେବା କରିବାର ସୁଯୋଗରେ ନିଜକୁ କୃତାର୍ଥ ମଣୁଥିଲେ । ଦେବେବନ୍ଦ୍ରବାବୁ ଆଉ ନାହାନ୍ତି- ଏହା ବିଶ୍ୱାସ କରିହହେଉନାହିଁ। ଏଭଳି ଏକ ସାଧୁ, ଜିଜ୍ଞାସୁଙ୍କ ସଂସ୍ପର୍ଶରେ ଆସି ନିଜକୁ କୃତାର୍ଥ ମଣୁଛି ।

ଗ୍ରନ୍ଥମନ୍ଦିର, କଟକ

ଅଜୟ କୁମାର ମିଶ୍ର

# ମୋ ଦେବନା

ଦେବନା, ଦେବେନ୍ଦ୍ର କୁମାର ଦାଶଙ୍କ ସହିତ ପରିଚିତ ହେବା ପରଠାରୁ ନିଜକୁ ଧନ୍ୟ ମଣିଲି। ଜଣେ ପ୍ରକୃତ ବିଦ୍ୱାନଙ୍କ ସହିତ କୌଣସି ପ୍ରକାରେ ଯୋଡ଼ିହେବାରେ ଆନନ୍ଦ ଥାଏ। ପରେ ଜାଣିଲି, ସେ ମୋ ଜିଲ୍ଲାର, ପୁଣି ମୋ ମାମୁଘର ପାଖ, ମୋ ମାମୁଙ୍କର ଛାତ୍ର ବି। ଏଇ ହିସାବଠାରୁ ଜଣେ ବିଦ୍ୟା-ବିନୋଦୀ ବିଦ୍ୱାନ ଭାବରେ ହିସାବ ବରଂ ବେଶି। ବହୁପାଠୀ ଦେବନାଙ୍କୁ ସମୟ ସମୟରେ ଅନେକ କଥା ପଚାରେ। ସୁନ୍ଦର ସମାଧାନ ଦିଅନ୍ତି, ଅକୁଣ୍ଠ ଭାବରେ।

ମୁଁ ନିଜ ହାତରେ ଗଢୁଥିବା ଜିନିଷ ଦେଖି ସେ ଖୁବ୍ ଆନନ୍ଦିତ ହୁଅନ୍ତି, ଏସବୁ ଗଢ଼ଣପାଇଁ ବାରବାର ଉତ୍ସାହ ଦିଅନ୍ତି। ଏସବୁକୁ ଏକାଠି କରି ଏକ ସଂଗ୍ରହାଳୟ କରି ସଂରକ୍ଷିତ କରି ରଖିବାକୁ ପରାମର୍ଶ ବି ଦିଅନ୍ତି। କଥା ଥିଲା, ମୋ ମ୍ୟୁଜିୟମ୍ ଆସିବେ, ବୁଲିଯିବେ। ସଂପଦର ପ୍ରସାରଣ ପାଇଁ ଅନେକଥର ଉତ୍ସାହ ଦେଇଛନ୍ତି। ହାୟ ମୋର ଦୁର୍ଭାଗ୍ୟ, ମୁଁ ଲଣ୍ଡନରୁ ଫେରି ମ୍ୟୁଜିୟମ୍ ସଜାଡୁଛି, ଅଥଚ ସେ କେବେ ବି ଆଉ ଆସିପାରିବେ ନାହିଁ। ସାହିତ୍ୟ ଜଗତର ଅନେକ କର୍ମୀଙ୍କୁ ସେ ତାଙ୍କ ମନ ମ୍ୟୁଜିୟମ୍‌ରେ ରଖିଯାଇଛନ୍ତି। କାଳ ତାଙ୍କୁ କଳନା କରିବା ପୂର୍ବରୁ ଅକାଳ ବିୟୋଗ ଘଟିଲା ତାଙ୍କର।

ମିଶ୍ରଶାଳ ତାଙ୍କୁ ଅପେକ୍ଷା କରିବ, ଅଥଚ ସେ ଫେରିବେ ନାହିଁ; ଏ ସତକୁ ଗ୍ରହଣ କରିହେଉ ନାହିଁ। ଭଗବାନ ତାଙ୍କୁ ଏତେ ଚଞ୍ଚଳ କୋଳେଇ ନେବେ ବୋଲି ବିଶ୍ୱାସ ବି କରିହେଉନାହିଁ। ବହୁଦର୍ଶୀ ବିଦ୍ୱାନ୍ ଭାବରେ, ସଂଗ୍ରାହକ-ସଂରକ୍ଷକ, ସମ୍ପାଦକ, ଗବେଷକ ଓ ବିବେକୀ ମଣିଷ ଭାବରେ ଏ ଜାତି ତାଙ୍କୁ ଆଜି ପର୍ଯ୍ୟନ୍ତ ବି କିଛି ଦେଇନାହିଁ, ତାଙ୍କଠୁଁ ନେଇଛି କିନ୍ତୁ ଅନେକ। ଦାନରେ ଯେ ବିଶ୍ୱାସୀ, ପ୍ରତିଦାନରେ ତାଙ୍କର ପ୍ରତ୍ୟାଶା ନଥାଏ। ଦେବନାଙ୍କର ଏଇ ଜୀବନଦୃଷ୍ଟି ନିକଟରେ ଆମରଣ କୃତଜ୍ଞ। ତାଙ୍କ ପାଇଁ ସଂକ୍ଷିପ୍ତ ଅଶ୍ରୁଳ ସ୍ମୃତିଲିପିଟିଏ ସମର୍ପଣ କରୁଛି ମାତ୍ର।

*କଟକ*

## ମନୋଜ ମହାନ୍ତି

# ସାର୍‌ଙ୍କୁ ମୁଁ ଯେମିତି ଜାଣେ

ଶ୍ରୀ ଦେବେନ୍ଦ୍ର କୁମାର ଦାଶଙ୍କ ସହିତ ପାଖାପାଖି ଚାରିଦଶନ୍ଧିର ଅବିସ୍ମରଣୀୟ ସଂପର୍କ। ୧୯୮୪ ମସିହାରେ ତାଙ୍କ ସହ ମୋର ପ୍ରଥମ ପରିଚୟ ରାଉରକେଲା ମ୍ୟୁନିସ୍‌ପାଲ୍ ମହାବିଦ୍ୟାଳୟରେ। ଇତିହାସ ବିଭାଗର ଅଧ୍ୟାପକ ଭାବରେ ମୁଁ ଯୋଗଦେବା ସମୟରେ ସେ ଥିଲେ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ବରିଷ୍ଠ ଅଧ୍ୟାପକ। ଏହା ବ୍ୟତୀତ ଦୁହେଁ ଗୋଟିଏ ଜିଲ୍ଲା(ଜଗତସିଂହପୁର), ଗୋଟିଏ ନିର୍ବାଚନ ମଣ୍ଡଳୀ(ବାଲିକୁଦା) ଏବଂ ପାଖାପାଖି ବ୍ଲକର ଲୋକ ହୋଇଥିବାରୁ ପରସ୍ପରର ନିକଟତର ହେବାକୁ ଆଦୌ ଡେରି ହେଲାନାହିଁ। ଅଧିକନ୍ତୁ, ବାସନ୍ତୀ କଲୋନୀରେ ସେ ରହୁଥିବା ଏ/ଏଲ୍ ୫୨ ନଂ ଘରର ସଂଲଗ୍ନ ଗୃହରେ ମୁଁ ଏବଂ ରାଜନୀତି ବିଜ୍ଞାନର ଅଧ୍ୟାପକ ଅଭିରାମ ବିଶ୍ୱାଳ ରହୁଥିଲୁ। ଧୀରେ ଧୀରେ ତାଙ୍କ ସହିତ ଘନିଷ୍ଠତା ଗଢ଼ିଉଠିଲା ଏବଂ ଆମେ ଦୁହେଁ ତାଙ୍କ ପରିବାରର ଅଂଶ ବିଶେଷ ପାଲଟିଗଲୁ।

ମୁଁ ତାଙ୍କୁ ଅତି ପାଖରୁ ଦେଖିଛି ଆଉ ତାଙ୍କ ମୁହଁରୁ ତାଙ୍କ ଜୀବନର ଅନେକ କଥା ଶୁଣିଛି। ତାହା ଆର୍ଥିକ ଦୁଃସ୍ଥିତିର ଝଡ଼ଝଞ୍ଜା ଭିତରେ କଟିଥିବା ଘଟଣାବଳୀ ହେଉ ଅବା ବୃତ୍ତିଗତ ଏବଂ ବ୍ୟକ୍ତିଗତ ସମସ୍ୟା ହେଉ, ସେ ମୋତେ ସବୁ ନିଃସଙ୍କୋଚରେ କହୁଥିଲେ, ବିଶେଷ ଅନ୍ୟ କାହାକୁ ନ କହିବାକୁ ମୋ’ଠୁ ଛୋଟ ପ୍ରତିଶ୍ରୁତିଟିଏ ନେଇ। ପରବର୍ତ୍ତୀ ସମୟରେ ସରକାରୀ ସ୍ତରରେ ତାଙ୍କର ଯେ କୌଣସି କାର୍ଯ୍ୟ ପାଇଁ ସେ ମୋର ସଂପୂର୍ଣ୍ଣ ସାହାଯ୍ୟ ଲୋଡୁଥିଲେ, ଆଉ ମୁଁ ତାହା ବିନା ଦ୍ୱିଧାରେ କରିଦେଉଥିଲି। ସମୟସ୍ରୋତରେ ଆମ ସଂପର୍କର ରଙ୍ଗ କେବେ ବି ଫିକା ପଡ଼ିନି, ସେମିତି ରହିଥିଲା ସବୁବେଳେ ସୁନ୍ଦର ଓ ସୁଗନ୍ଧିତ, ତାଙ୍କର ଆକସ୍ମିକ ତିରୋଧାନ ପର୍ଯ୍ୟନ୍ତ।

ସେ ଥିଲେ ସରଳ, ନିରଳସ, ଆତ୍ମପ୍ରଚାର ବିମୁଖ, ଅହଙ୍କାରବର୍ଜିତ ଅମାୟିକ ବ୍ୟକ୍ତିତ୍ୱ। କଥାରେ ସେ ଥିଲେ ଯେମିତି ଅକୃତ୍ରିମ ଓ ଅକପଟ, ବ୍ୟବହାରରେ ତତୋଧିକ ସ୍ନେହୀ ଓ ଆପଣାର। ଅନ୍ୟାୟ ଓ ପକ୍ଷପାତିତା ବିରୋଧରେ ତାଙ୍କର ସ୍ୱର ଥିଲା ଶାଣିତ। ସେଥିପାଇଁ ତାଙ୍କର ବୃତ୍ତିଗତ ଜୀବନରେ ଅନେକ ପ୍ରତିକୂଳ ପରିସ୍ଥିତି ଆସିଥିଲା। କିନ୍ତୁ, ସେ ସାଲିସ୍ କରିନଥିଲେ କି ହାରିଯାଇନଥିଲେ। ଶ୍ମଶ୍ରୁଧାରୀ ମୁଖକୁ ଦେଖିଲେ ଲାଗୁଥିଲା ସତେ ଯେପରି ତାଙ୍କ ଭିତରେ ଆହୁରି ସ୍ୱପ୍ନ ଓ ସାମର୍ଥ୍ୟ ଅଛି ଆଉ ଅଧିକ କିଛି ସାହିତ୍ୟ ସୃଷ୍ଟି କରିବାପାଇଁ।

ଜଣେ ଛାତ୍ରବତ୍ସଳ, ନିଷ୍ଠାବାନ ଓ ପ୍ରଜ୍ଞାଦୀପ୍ତ ଅଧ୍ୟାପକ ଭାବରେ ସେ ଥିଲେ ବେଶ୍ ସ୍ୱନାମଧନ୍ୟ। ଖାଲି ଯେ ଓଡ଼ିଆ ଭାଷା ଓ ସାହିତ୍ୟରେ ତାଙ୍କର ବ୍ୟୁତ୍ପତ୍ତି ଥିଲା ତାହା ନୁହେଁ; ଇତିହାସ, ରାଜନୀତି, ବିଜ୍ଞାନ, ଇଂରାଜୀ ସାହିତ୍ୟ, ସମାଜବିଜ୍ଞାନ ଇତ୍ୟାଦି ବିଷୟରେ ତାଙ୍କର ଗଭୀର ପ୍ରବେଶ। ତାଙ୍କ ଜ୍ଞାନର ଦିଗ୍‌ବଳୟକୁ ବହୁବିଧ ଆଭାରେ ଦୀପ୍ତିମୟ କରିଥିଲା। ପାଠ ପଢ଼େଇବାଠାରୁ ନିଜେ ଅଧିକ ପଢ଼ିବାର ନିଶା, ଗୁଣାତ୍ମକ ଓ ଗବେଷଣାତ୍ମକ ସାହିତ୍ୟ ସୃଷ୍ଟି କରିବାର ଉତ୍ସର୍ଗୀକୃତ ମନୋଭାବ, ଆର୍ଥିକ ଅସୁବିଧା ସତ୍ତ୍ୱେ ଧାର ଉଧାର କରି ବହି କିଣିବାକୁ ଜାତୀୟ ପୁସ୍ତକ ମେଳା, କଲିକତା, ଶାନ୍ତିନିକେତନ, ରାଜ୍ୟ ଅଭିଲେଖାଗାର, ଭୁବନେଶ୍ୱରକୁ ଯିବା ଇତ୍ୟାଦି ତାଙ୍କର ନିଷ୍ଠା ଓ ପ୍ରତିଶ୍ରୁତିବଦ୍ଧତାର ଖାଲି ସ୍ୱାକ୍ଷର ବହନ କରୁଥିଲା ତାହା ନୁହେଁ, ମୋତେ ଆଶ୍ଚର୍ଯ୍ୟ ଓ ଅଭିଭୂତ ମଧ୍ୟ କରିଥିଲା। ଏପରିକି ଗବେଷଣା ଓ ଅଧ୍ୟୟନପାଇଁ ସଂପୂର୍ଣ୍ଣ ସମୟ ଦେବାକୁ ସେ ପ୍ରାଧ୍ୟାପକ ଭାବରେ ଚାକିରିରୁ ସ୍ୱେଚ୍ଛାକୃତ ଅବସର ନେଇଥିଲେ। ଜଣେ କୃତବିଦ୍ ଗବେଷକ ଭାବରେ ତାଙ୍କ ଲିଖିତ ଓ ସଂପାଦିତ ପୁସ୍ତକ 'ଫୁଲ ଫୁଟିବାର କାହାଣୀ', 'ଗଙ୍ଗାଧର କବିତା ଓ କବି ଆତ୍ମା', ରାଧାନାଥ, ଫକୀରମୋହନ, ଗୋପବନ୍ଧୁ, ମଧୁସୂଦନ ଗ୍ରନ୍ଥାବଳୀ ଇତ୍ୟାଦି ତାଙ୍କ ଅମର କୃତିର ଅମଳିନ ଆଲେଖ୍ୟ କରି ଓଡ଼ିଆ ବାଣୀଭଣ୍ଡାରକୁ ସମୃଦ୍ଧ କରିଛି।

ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ଗବେଷଣା, ପ୍ରବନ୍ଧ ଓ ସମାଲୋଚନାର ଝଡ଼ଭର୍ତ୍ତି ଆକାଶରେ ସେ ଥିଲେ ଏକ ଝଡ଼ର ଇଗଲ୍। ଯିଏ ଝଡ଼ ଭିତରେ ଡେଣା ହଲେଇ ଉଡୁଥିଲେ। ମୌଳିକ ଗବେଷଣାର ନୂତନ ଦିଗନ୍ତ ଆଉ ଆଗାମୀ ପିଢ଼ିକୁ ଦେଇଥିଲେ ଅମୃତ ପ୍ରେରଣା। ତାଙ୍କର ଅକାଳ ବିୟୋଗରେ ସାହିତ୍ୟ ଜଗତରେ ସୃଷ୍ଟି ହୋଇଛି ଏକ ଅପୂରଣୀୟ ଶୂନ୍ୟତା।

ତାଙ୍କର ଅବର୍ତ୍ତମାନରେ ମୁଁ ଆଜି ବୁଝୁଛି କାହିଁକି ପରିଚୟ ହେବା ଦିନଠାରୁ ମୁଁ ତାଙ୍କର ସବୁବେଳେ 'ସାର୍' ବୋଲି ସମ୍ବୋଧନ କରୁଥିଲି, ଯଦିଚ ଆମ ସର୍ଜନାର ମାଧ୍ୟମ ଥିଲା ସଂପୂର୍ଣ୍ଣ ଭିନ୍ନ– ମୋର ଗୀତିକବିତା ଆଉ ତାଙ୍କର ପ୍ରବନ୍ଧ ଓ ସମାଲୋଚନା। ବୋଧହୁଏ,

ତାଙ୍କର ଅଗାଧ ପାଣ୍ଡିତ୍ୟ, ଅଧ୍ୟବସାୟ, ସାଧୁତା, ସ୍ପଷ୍ଟବାଦିତା, ବେସାଲିସ ଚେତନା, ଇସ୍ପାତି ନୈତିକତା, ଉଦାରତା ଓ ସର୍ବୋପରି ମଣିଷପଣିଆ ମୋ ଭିତରେ ଅଗୋଚରରେ ତାଙ୍କପାଇଁ ଏକ ସ୍ୱତନ୍ତ୍ର ସମ୍ମାନବୋଧ ସୃଷ୍ଟି କରିଥିଲା। ତାଙ୍କ ସହିତ ଆଉ ତ ଦେଖା ହେବନି, 'ସାର୍' ବୋଲି ଆଉ ଡାକି ହେବନି ସତ, କିନ୍ତୁ ସେ ମୋ ହୃଦୟରେ ସେହି ଆସନରେ ଅଧିଷ୍ଠିତ ହୋଇ ରହିଥିବେ ମୋର ଅବଶିଷ୍ଟ ଆୟୁଷ ସରିବା ଯାଏଁ।

ଭୁବନେଶ୍ୱର



## ପ୍ରଦୀପ୍ତ କୁମାର ବାରିକ

# ଦେବୋପମ ଦେବେନ୍ଦ୍ରଙ୍କୁ ଦଣ୍ଡବତ

ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶଙ୍କ ଅପ୍ରତ୍ୟାଶିତ ବିୟୋଗ ଖବର ଶୁଣି ମୋର ବିଶ୍ୱାସ ହେଲାନାହିଁ । ସଂଗେ ସଂଗେ ମୋର ବଂଧୁ, ସତୀର୍ଥ ଡକ୍ଟର ପ୍ରଦୀପ୍ତ କୁମାର ପଣ୍ଡାଙ୍କୁ ଘଟଣାର ସତ୍ୟାସତ୍ୟ ପଚାରିଲି । ଅବିଳମ୍ବେ ତାଙ୍କଠାରୁ ଦେବେନ୍ଦ୍ର ଦାଶଙ୍କ ଅକାଳ ବିୟୋଗ ସଂପର୍କରେ ଅବହିତ ହେଲି । ସଂସାର ଓ ଜୀବନର ଅଳିକତା ସଂପର୍କରେ ଏକ ସୁତୀବ୍ର ବେଦନା ମିଶ୍ରିତ ଖେଦ ମୋର ଭାବରାଜ୍ୟକୁ ଆଚ୍ଛାଦିତ କରିରଖିଲା । ଜୀବନର ମରଣପ୍ରାପ୍ତି ସମ୍ବନ୍ଧୀୟ ସମସ୍ତ ସିଦ୍ଧାନ୍ତ କେଜାଣି କାହିଁକି ମୋତେ ଅଖାଡୁଆ ଲାଗିଲା । ଅଳ୍ପ କେତେଦିନ ତଳେ ତାଙ୍କ ସହିତ ପ୍ରାୟ ଅଧ ଘଂଟେ ଫୋନ୍‌ରେ କଥା ହୋଇଥିଲି । ପ୍ରସଙ୍ଗକ୍ରମେ ପରିବାର, ଦେହ, ପାଠ, ସମୟ ଓ ସଂସାରର ଦାବି ସମେତ ଅନ୍ୟାନ୍ୟ ସାମାଜିକ ସମସ୍ୟା ଓ ସଂକଟ ଓ ତଜ୍ଜନିତ ଅବାଞ୍ଛିତ ଦୃଶ୍ୟ ଓ ସ୍ଥିତି ସଂପର୍କରେ ଆଲୋଚନା ହୋଇଥିଲା । ତାଙ୍କ ସହିତ ଫୋନରେ କଥାହେଲେ ମୋ ପାଇଁ ଘଂଟାଏ ବି ଯଥେଷ୍ଟ ହେଉ ନଥିଲା ।

ତାଙ୍କ ସହିତ ମୋର ପରିଚୟ ସଂପୂର୍ଣ୍ଣ ଆନୁଷ୍ଠାନିକ ନହେଲେ ବି ପୂରାପୂରି ଅଣଆନୁଷ୍ଠାନିକ ବି ନୁହେଁ । କେତେଥର ସମାନ ସଭାମଂଚରେ ତାଙ୍କ ସହିତ କୌଣସି ନା କୌଣସି ସାହିତ୍ୟିକ ଚର୍ଚ୍ଚା ଆଲୋଚନାରେ ଅଂଶଗ୍ରହଣ କରିଛି । ଭୁବନେଶ୍ୱରରେ ତାଙ୍କ ଲେକ ଭିଉ ହୋମ୍‌କୁ ଯାଇଛି । ସେ ନିଖିଳଭାରତ ଓଡ଼ିଆ । ଆଧ୍ୟାପକ ସମ୍ମେଳନର ସଭାପତି ଥିବାରୁ ସେଥି ନିମନ୍ତେ ଆହୂତ କେତେକ ବୈଠକରେ ଭାଗନେଇ ତାଙ୍କ ପ୍ରଶସ୍ତ ବ୍ୟକ୍ତିତ୍ୱ ଏବଂ ବିଜ୍ଞ ବିଚାରବୋଧର ପରିଚୟ ପାଇଛି । ଗବେଷଣା ଥିଲା ତାଙ୍କର ରୁଚି ଏବଂ ସ୍ୱାଭିମାନ । ସାହିତ୍ୟ ପାଠ ଆଲୋଚନାରେ ମୋର ଯେତେବେଳେ କିଛି ସନ୍ଦେହ ଆସେ, ତାଙ୍କୁ ଗୋଟିଏ ଫୋନ୍ କରିଦେଲେ ସବୁ ମେଂଟି ଯାଏ । ସଂଗେସଂଗେ କେତେ କୁଆଡୁ ତଥ୍ୟ ପ୍ରମାଣ ଓ ନଜିର ଉପସ୍ଥାପନ କରି ମୋର ଅବବୋଧଗତ ଅନ୍ଧଦିଗନ୍ତକୁ

ଆଲୋକୋଜ୍ଜ୍ୱଳ କରିଦିଅନ୍ତି । ଅନ୍ତର୍ଗତ ଅସହଜପଣିଆକୁ କେଡ଼େ ସହଜରେ ଦୂରେଇ ଦେଇ ସେଠାରେ ଥୋଇଦିଅନ୍ତି ଆତ୍ମପ୍ରତ୍ୟୟର ଆଲୋକବର୍ତ୍ତିକା; ଯାହା ସେ ଅର୍ଜନ କରିଥାଆନ୍ତି ତାଙ୍କର ଗଭୀର ଅଧ୍ୟବସାୟ, ନିରବଚ୍ଛିନ୍ନ ନିଷ୍ଠା ଏବଂ ଅନ୍ତହୀନ ଅନ୍ୱେଷାରୁ । ତା' ସାଂଗକୁ ତାଙ୍କର ଥିଲା ଅଦ୍ଭୁତ ସ୍ମରଣ ଶକ୍ତି ।

କଥାବାର୍ତ୍ତାରେ ଶୁଭ୍ର, ମାର୍ଜିତ ଓ ପରିଛନ୍ନ ଭଦ୍ରଭାବ ଉତୁରି ପଡୁଥିବ; ବ୍ୟବହାରରେ ଲାଗୁଥିବେ କେହି ଜଣେ ଆତ୍ମୀୟ ଅମାୟିକ ନିଜଲୋକ ଭଳି ଏବଂ ତାଙ୍କ ପାଖରୁ ଆସିଲା ପରେ ଲାଗୁଥିବ କ'ଣ କିଛି ଗୋଟେ ଛାଡ଼ିଆସିଲା ଭଳି । ମୁହଁରେ ହସ ହସ ଭାବ, କଥା କଥାରେ ଜ୍ଞାନଗର୍ଭିତାର ଅଭିଜ୍ଞାନ ଏବଂ ଚାଲିଚଳନରେ ଆର୍ଯ୍ୟ ଅନୁଷ୍ଠାନର ଉଦ୍ଭାସ । ଆତିଥ୍ୟ ପ୍ରଦାନ ଯାହା ପାଇଁ ଏକ ଦୁର୍ଲ୍ଲଭ ସୁଯୋଗ; ସିଏ ହେଉଛନ୍ତି ଦେବେନ୍ଦ୍ର ଦାଶ ମୁଁ ତାଙ୍କୁ ଡାକୁଥିଲି ଭାଇନା ।

କେତେ ଆନ୍ତରିକତା, ଉପଦେଶ, ପରାମର୍ଶ, ସାହାଯ୍ୟ ଓ ସହଯୋଗ ତାଙ୍କଠାରୁ ପାଇଛି ! ସେ ସବୁର ଗୋଟି ଗୋଟି ହିସାବ ମୋ ପାଖରେ ନାହିଁ । ଦାୟିତ୍ୱ ଓ କର୍ତ୍ତବ୍ୟ ନିର୍ବାହରେ ଦକ୍ଷ ଏବଂ ଉଦାର ମାନବିକତାର ଏଭଳି ନିଚୋଳ ମଣିଷର ସାନ୍ନିଧ ଆଉ ଏଣିକି ମିଳିବ ନାହିଁ ।

ମଣିଷ ଜନ୍ମ ଦୁର୍ଲ୍ଲଭ ବୋଲି କୁହାଯାଏ । କିନ୍ତୁ ତା' ଭିତରେ ଏଭଳି ଦାରୁଣ ଅବସ୍ଥା କାହିଁକି ଆସେ କେଜାଣି ! ଦୁଃଖ ସବୁବେଳେ ସ୍ମରଣୀୟ । କିନ୍ତୁ କେତେକ ସ୍ମରଣୀୟ ଦୁଃଖର ଦାକ୍ଷିଣ୍ୟରେ ଅବଶିଷ୍ଟ ଜୀବନର ମୁହୂର୍ତ୍ତମାନେ ଓଜନିଆ ହୋଇଯାଆନ୍ତି । ଦେବେନ୍ଦ୍ର ଦାଶଙ୍କ ଶୂନ୍ୟତା ସେଇଭଳି ନିରୋଳା ଅନୁଭବଟିଏ ମୋ ପାଇଁ । ଜ୍ଞାନ, କଲ୍ୟାଣ ଓ ସଂସ୍କାରର ସେହି ସମନ୍ୱିତ ନିର୍ମାଣକୁ ମୋର ଲୋତକାର୍ପିତ ନମସ୍କାର ।

*ଭୁବନେଶ୍ୱର*

ନୀଳାଦ୍ରିନାଥ ଦାଶ

# ସ୍ମୃତିରେ ଦେବେନ୍ଦ୍ର କୁମାର ଦାଶ

ବିଦ୍ୱାନ୍, ସୁବକ୍ତା, ସନମାର୍ଗୀ ଓ ଯଶସ୍ୱୀ ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶଙ୍କ ପରଲୋକ ଉତ୍କଳ ପ୍ରାନ୍ତ ତଥା ସମଗ୍ର ବିଶ୍ୱର ସମସ୍ତ ଓଡ଼ିଆଙ୍କ ପାଇଁ ଏକ ଅପୂରଣୀୟ କ୍ଷତି। ଅତ୍ୟନ୍ତ କର୍ମଠ, ନିଷ୍ଠାପର, ଉଚ୍ଚମନା ଓ କର୍ମଚଞ୍ଚଳ ଅଧ୍ୟାପକ ଆମ ସାମାଜିକ ଜୀବନରୁ ନିର୍ବାପିତ ହୋଇଗଲେ। ନିଜର କର୍ମମୟ ଜୀବନରେ ଜ୍ଞାନର ପ୍ରଚାର, ପ୍ରସାର, ଆହରଣ ଓ ବିତରଣକୁ ପ୍ରାଥମିକତା ଦେଇଥିବା ତଥା ସୂକ୍ଷ୍ମ ଚିନ୍ତାଚେତନାର ଜ୍ଞାନଞ୍ଜନ ଲୋପନ କରୁଥିବା ମହାନୁଭବ ଶ୍ରୀଯୁକ୍ତ ଦାଶଙ୍କ ସାନ୍ନିଧ୍ୟ ପ୍ରାପ୍ତିରୁ ଆମ୍ଭେମାନେ ବଞ୍ଚିତ ହୋଇଗଲେ।

ଦେବେନ୍ଦ୍ର ସାର୍‌ଙ୍କ ସହ ମୋର ସଂପର୍କ ମୋର ଅଧ୍ୟାପକ ଓ ଲେଖକ ବନ୍ଧୁ ଅଭିରାମ ବିଶ୍ୱାଳଙ୍କ ମାଧ୍ୟମରେ ଗଢ଼ିଉଠିଥିଲା କିଛି ବର୍ଷ ପୂର୍ବେ। ବିକ୍ରମଦେବ ସ୍ୱୟଂଶାସିତ ମହାବିଦ୍ୟାଳୟ ତରଫରୁ ଆୟୋଜିତ ହେଉଥିବା 'ବିକ୍ରମ ସ୍ମୃତି ବକ୍ତୃତାମାଳା'(ବିକ୍ରମ ମେମୋରିଆଲ ଲେକ୍‌ଚର) କାର୍ଯ୍ୟକ୍ରମର କାର୍ଯ୍ୟକାରୀ ସଂପାଦକ ହିସାବରେ ମୁଁ ଯେତେବେଳେ ଶ୍ରୀଯୁକ୍ତ ବିଶ୍ୱାଳଙ୍କୁ ଯୋଗାଯୋଗ କରିଥିଲି, ସିଏ ଦେବେନ୍ଦ୍ରବାବୁଙ୍କୁ ଆମନ୍ତ୍ରଣ ଜଣାଇବାପାଇଁ ମୋତେ ପ୍ରସ୍ତାବ ଦେଇଥିଲେ। ଶ୍ରୀଯୁକ୍ତ ଦାଶ ରାଜି ହୋଇ ନିର୍ଦ୍ଧାରିତ ତାରିଖ ମୁତାବକ ଜୟପୁରରେ ଆସି ପହଞ୍ଚିଥିଲେ ଏବଂ ସେ ଦେଇଥିବା ବକ୍ତୃତାର ଶୀର୍ଷକ ଥିଲା 'ଓଡ଼ିଶା ଗଠନ ଓ ଉତ୍କଳ ସମ୍ମିଳନୀ'। ଶୀର୍ଷକରୁ ଏହା ଅନୁମେୟ ଯେ ଏହା ରାଜନୈତିକ ପୃଷ୍ଠଭୂମି ଉପରେ ଆଧାରିତ ଏକ ଐତିହାସିକ ଆନ୍ଦୋଳନ, ଯାହାର ପୁରୋଧାମାନେ ଅଗ୍ରପୂଜ୍ୟ ଓ ସର୍ବଜନବିଦିତ ଉତ୍କଳ ଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ଗୋପବନ୍ଧୁ ଚୌଧୁରୀ ଏବଂ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ପ୍ରମୁଖ। ଶ୍ରୋତାମାନଙ୍କ ମଧ୍ୟରେ ଅନେକ ଭାବିନେଇଥିଲେ ଯେ ବକ୍ତା ଶ୍ରୀଯୁକ୍ତ ଦାଶଙ୍କ ବକ୍ତବ୍ୟର ଆଧାର ମଧ୍ୟ ସେମିତି କିଛି ରାଜନୈତିକ ଘଟଣାବଳୀର ଆଲେଖ୍ୟ ମାତ୍ର ହିଁ ହେବ। କିନ୍ତୁ ଦେବେନ୍ଦ୍ର ସାର୍ ସ୍ୱତନ୍ତ୍ର ଉତ୍କଳ

ପ୍ରଦେଶର ଗଠନ ଓ ଉତ୍କଳ ସମ୍ମିଳନୀ ଆନ୍ଦୋଳନର ଅନେକ ଅନାଲୋଚିତ ଦିଗ ଉପରେ ଆଲୋକପାତ କରି ୧୮୬୦ରୁ ୧୯୩୬ ମସିହା ମଧ୍ୟରେ ଖଣ୍ଡବିଖଣ୍ଡିତ ଓଡ଼ିଶା ଭୂମିରେ ସଂଗଠିତ ଅସଂଖ୍ୟ ବିପ୍ଳବ, ସାମାଜିକ ବିବର୍ତ୍ତନ, ପରିବର୍ତ୍ତନଶୀଳ ବୈଜ୍ଞାନିକ ଓ ଧାର୍ମିକ ଦୃଷ୍ଟିଭଙ୍ଗୀ, ଭାଷା ଆନ୍ଦୋଳନ, ଶିକ୍ଷା ସଚେତନତା, ଜାତିଭିତ୍ତିକ ଅସ୍ମିତା ଓ ନାରୀ ଉତ୍‌ଥାନ ଇତ୍ୟାଦି ପ୍ରସଙ୍ଗଙ୍କୁ ଚମତ୍କାର ଭାବେ ଉପସ୍ଥାପନ କରିଥିଲେ। ବିଷୟବସ୍ତୁର ଗାମ୍ଭୀର୍ଯ୍ୟ ଦୃଷ୍ଟିରୁ ଅଧ୍ୟାପକ ଦାଶ ଧୀର, ଶିଷ୍ଟ, ସମ୍ଭ୍ରମ ଓ ଲାଳିତ୍ୟପୂର୍ଣ୍ଣ ଢଙ୍ଗରେ ନିଜର ସୁଚିନ୍ତିତ ମତାମତ ରଖିଥିଲେ। ସେ ଦିନ ମୁଁ ପୁଣିଥରେ ଅନୁଭବ କରିଥିଲି ଜଣେ ଉଚ୍ଚକୋଟିର ବିଦ୍ୱାନ୍ କେଉଁମାନଙ୍କୁ କୁହାଯାଇପାରିବ। କହିବାର ଦ୍ୱିଧା ନାହିଁ, ଅଧ୍ୟାପକ ଦାଶ ସେହି ଧରଣର ଜଣେ ବିଦ୍ୱାନ୍ ଭଳି ସମସ୍ତଙ୍କୁ ସେ ଅବସରରେ ଲାଗିଥିଲେ। ପରେ ତାଙ୍କ ସହ ବ୍ୟକ୍ତିଗତ ଆଲୋଚନା କାଳରେ ମୁଁ ତାଙ୍କ ମହନୀୟ ଓ ଉଦାର ବ୍ୟକ୍ତିତ୍ୱର ଅନେକ ଦିଗ ବାବଦରେ ଅବଗତ ହୋଇପାରିଥିଲି।

ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶଙ୍କ ସହିତ ମୁଁ ବିତାଇଥିବା ମୁହୂର୍ତ୍ତ ସବୁ ମୋ ପାଇଁ ଚିରଦିନ ସ୍ମରଣୀୟ ହୋଇରହିବ।

*ଜୟପୁର, କୋରାପୁଟ*

## କ୍ଷୀରୋଦ ଚନ୍ଦ୍ର ବେହେରା

# ଦେବେନ୍ଦ୍ରଭାଇ: ଏକ ସ୍ମୃତିଲେଖ

ଦେବେନ୍ଦ୍ର ଭାଇଙ୍କ ସଂପର୍କରେ ଲେଖିବାକୁ କଲମ ଚାଲୁନି- ବହୁତ ଚେଷ୍ଟା କରୁଛି, ହେଉନି- ଲାଗୁଛି କୁଆଡ଼େ ଯାଇନାହାନ୍ତି ସେ, ଏଇଠି କୋଉଠି ଅଛନ୍ତି- ଆସିବେ, ଆକଟ କରିବେ।

କିଛିଦିନ ତଳକଥା- ବାଙ୍ଗାଲୋର ଯାଇଥାନ୍ତି ଭାଉଜଙ୍କ ସହ। ମୋ' ଦେହ ଅସୁସ୍ଥ ଥାଏ, ମାତ୍ର ତାଙ୍କୁ ଭେଟିବାକୁ ବ୍ୟଗ୍ର ଥାଏ। ମୋତେ ଦେଖିବାକୁ ଚାଲି ଆସିଲେ। ଦୁଇଘଣ୍ଟାରୁ ଅଧିକ ସମୟ ଅସରନ୍ତି ଗପ। ମୋ' ପରିବାର ତାଙ୍କୁ ତନ୍ମୟ ହୋଇ ଶୁଣୁଥାନ୍ତି।

ବାଙ୍ଗାଲୋର ଛାଡ଼ିବା ପୂର୍ବରୁ ମୁଁ ପରିବାର ନେଇ ଯାଇଥିଲି ତାଙ୍କ ଘରକୁ। କି ଆତ୍ମୀୟତା, କି ଆକଟ! ଋଷି ପ୍ରତିମ ଦେବେନ୍ଦ୍ରଭାଇଙ୍କ ସହ ୧୯୭୭ ମସିହାରୁ ମୋର ସଂପର୍କ। ସେତେବେଳେ ସେ ଶାନ୍ତିନିକେତନରେ ଚର୍ଚ୍ଚାର ବିନ୍ଦୁ। ସେ ସ୍ଥିର କରିଥିବା ଗବେଷଣା ଶୀର୍ଷକ ଅନେକ ବିଜ୍ଞ ପ୍ରଫେସରଙ୍କୁ ଚକିତ କରିଥାଏ। ଆମେତ ବିଶ୍ୱବିଦ୍ୟାଳୟରେ ନବାଗତ। "କନ୍‌ସେପ୍ଟ ଅଫ୍ ମ୍ୟାନ୍ ଇନ୍ ନାଇନ୍‌ଟିନ୍‌ଥ ସେଞ୍ଚୁରୀ ଓଡ଼ିଆ ଲିଟରେଚର"- ବିସ୍ତୃତ ଏ ଅବଧାରଣା, ସେଥିନିମିତ୍ତ ଜ୍ଞାନ ପାଗଳ ଦେବେନ୍ଦ୍ରଭାଇ ପୃଥିବୀର ସମସ୍ତ ଉପାଦେୟ ପୁସ୍ତକକୁ ଅଧ୍ୟୟନ କରିବା ନିମିତ୍ତ ବ୍ୟଗ୍ର। ତାହାର ପ୍ରମାଣ ମିଳୁଥାଏ ପ୍ରତି ସପ୍ତାହରେ ଅନୁଷ୍ଠିତ ହେଉଥିବା ଶାନ୍ତିନିକେତନର ଓଡ଼ିଆ ବିଭାଗ ପାଠଚକ୍ରରେ।

ରାଉରକେଲାରେ ମଧ୍ୟ ତାଙ୍କ ସହ ଦୀର୍ଘ ରହଣି। ଇସ୍ପାତ ମହାବିଦ୍ୟାଳୟର ଓଡ଼ିଆ ସଂସଦ ଏବେବି ଉଦାହରଣଯୋଗ୍ୟ। କି ଭବ୍ୟ ଆୟୋଜନ। ସେଇ ସଂସଦର ବିବରଣୀ ଓ ସ୍ମରଣିକା ପୁସ୍ତକ ଅନନ୍ୟ। ସେହିପରି ବଡ଼ବିଲ ମହାବିଦ୍ୟାଳୟର ଭୀମଭୋଇ ସଂସଦ ଓ ଏହାର ସ୍ମରଣିକା। ତଥ୍ୟ ସଂପାଦନାରେ ସେ ଅନନ୍ୟ। ଫକୀରମୋହନଙ୍କ ଆତ୍ମଜୀବନୀ ହେଉ ଅଥବା ତାଙ୍କ ତିରୋଧାନର କିଛିଦିନ ପୂର୍ବରୁ

ପ୍ରକାଶ ପାଇଥିବା ଫକୀରମୋହନଙ୍କ ଗଳ୍ପ ଗ୍ରନ୍ଥ ସବୁ ଯେପରି ଉତ୍କଳ ସାହିତ୍ୟ ଭଣ୍ଡାରର ଗୋଟିଏ ଗୋଟିଏ ରତ୍ନ।

କ'ଣ ଲେଖିବି ? ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନକୁ ସେ ମୋତେ ତାଗିଦ୍ କରି ନେଇଥିଲେ। ଆଉ କିଛି ସଂଗଠନରେ ମଧ୍ୟ ମୁଁ କାର୍ଯ୍ୟ କରେ, ତାହା ସେ ଚାହୁଁଥିଲେ। ମୋର ବାଙ୍ଗାଲୋର ରହଣି ତାଙ୍କର ପସନ୍ଦ ନଥିଲା। ମୁଁ ସମୟର ସଖୀକଣ୍ଢେଇ ହୋଇ ତାଙ୍କଠାରୁ ଶାରୀରିକ ଦୂରତ୍ୱରେ ଥିଲି। ସେଥିପାଇଁ ବିଳମ୍ବିତ ରାତିରେ ତାଙ୍କ କଣ୍ଠସ୍ୱର ଋଷିଙ୍କ ପ୍ରଣବ ଧ୍ୱନି ପରି ଭାସିଆସେ। ଜାଗ୍ରତ ହୁଅ, ଶୋଇ ପଡ଼ନି, ଉଠ, ଆସ ଆହୁରି ଅନେକ କାମ ଅଛି। ମୋତେ ଲାଗୁଚି ସେ ଅଛନ୍ତି, ଆସିବେ, ଆକଟ କରିବେ, କାମକୁ ଡାକିନେବେ !

ଭାଇ ପ୍ରଣାମ !

ଭୁବନେଶ୍ୱର



## ଶଙ୍କର ପ୍ରସାଦ ତ୍ରିପାଠୀ

# ଦେବେନ୍ଦ୍ର ମୋର ପ୍ରେରଣାର ଉତ୍ସ

ଦେବେନ୍ଦ୍ର କୁମାର ଦାଶ ମୋ' ଜୀବନସଙ୍ଗୀତର ଏକ ଅଭୁଲା ଅନ୍ତଃସ୍ୱର। ଆମେ ଦୁଇଜଣ ଯାକ ଗୋଟିଏ ଦିନରେ ମ୍ୟୁନିସିପାଲ ମହାବିଦ୍ୟାଳୟରେ ଚାକିରି ଜୀବନ ଆରମ୍ଭ କରିଥିଲୁ। ସେ ଦିନ ଥିଲା ୧ ନଭେମ୍ବର, ୧୯୭୯। ପ୍ରିନ୍ସିପାଲ ଅଫିସ୍‌ରେ ନିଯୁକ୍ତିପତ୍ର ଦାଖଲ ସମୟରେ ଆମର ପ୍ରଥମ ଦେଖା। ମୁଁ ପ୍ରିନ୍ସିପାଲ ଅଫିସରେ ପହଞ୍ଚିବା ପୂର୍ବରୁ ସେ ପ୍ରିନ୍ସିପାଲ, ଡକ୍ଟର କେ.ଏସ.ଆର୍. ମୂର୍ତ୍ତିଙ୍କ ସଙ୍ଗରେ ମଧୁର ଆଳପରେ ବ୍ୟସ୍ତ ଥିଲେ। ମୋର ଅପ୍ରତ୍ୟାଶିତ ପ୍ରବେଶ ତାଙ୍କର କଥୋପକଥନରେ ବିରାମ ଆଣିଥିଲା। ପ୍ରିନ୍ସିପାଲ ମୋର ନିଯୁକ୍ତିପତ୍ରରେ ହସ୍ତାକ୍ଷର କଲାପରେ ଆମ ଦୁଇଜଣଙ୍କୁ ସ୍ୱାଗତ କଲେ ଓ ପରସ୍ପରକୁ ଚିହ୍ନା କରେଇ ଦେଲେ। ରୁକ୍ଷ, ନହେଲେ ବି ନିରଳସ ଦେଖାଯାଉଥିବା ଯୁବକଟିର ନାଁ, ଦେବେନ୍ଦ୍ର ଦାଶ ବୋଲି ପ୍ରିନ୍ସପାଲଙ୍କ ପରିଚୟ ପର୍ବରୁ ଜାଣିପାରିଲି। ସେଦିନ ଆମେ ଦୁଇଜଣ ବୋଧହୁଏ ପ୍ରଥମ ଓ ଶେଷଥରପାଇଁ ଜଣେ ଆଉଜଣଙ୍କୁ ନମସ୍କାର ମୁଦ୍ରାରେ ଅଭିନନ୍ଦନ କରିଥିଲୁ। ଅଧ୍ୟକ୍ଷଙ୍କ କାର୍ଯ୍ୟାଳୟରୁ ବାହାରି ଆସିଲା ପରେ ତାଙ୍କର ହୃଦୟ ଖୋଲା ହସ ଓ ଅନ୍ତରଙ୍ଗ କଥାବାର୍ତ୍ତା ମୋର ତାଙ୍କ ପ୍ରତି ଥିବା ପ୍ରଥମ ବିଶ୍ୱାସଟି ଭୁଲ ପ୍ରମାଣିତ ହୋଇ ସାରିଥିଲା। ଦଶହରା ଛୁଟିରୁ ଫେରିବାପରେ ମୁଁ ତାଙ୍କପାଇଁ ପାଲଟି ଯାଇଥିଲି 'ତିହାଡ଼ି' ଓ ସେ ମୋ'ପାଇଁ 'ଦାଶେ'।

'ଦାଶେ' ଅତ୍ୟନ୍ତ ବନ୍ଧୁବତ୍ସଳ, ପରୋପକାରୀ ଓ ସ୍ୱାଭିମାନୀ ମଣିଷ। ଅପ୍ରିୟ ସତ୍ୟ କୁହନ୍ତି। ଅପ୍ରିୟ ସତ୍ୟ କହି ଅନେକ ସମୟରେ ସମାଲୋଚିତ ହେଇଛନ୍ତି। ସତ୍ୟ ବୟାନ କରିବାରେ ଏକ ଅଭୂତପୂର୍ବ ସାହସ ତାଙ୍କ ପାଖରେ ଭରପୂର ଥିଲା। ବାଣିଜ୍ୟ ବିଭାଗର ଛାତ୍ର ଭାବରେ ଓଡ଼ିଆ ଭାଷା ସାହିତ୍ୟ ପ୍ରତି ମୋର ଅନୁରାଗରେ ନିଶ୍ଚୟ ଉଣାଥିଲା। କିନ୍ତୁ ଆଦ୍ୟଯୌବନର ଏକାନ୍ତବାସରେ ସତୀର୍ଥମାନଙ୍କର ମେଳି ପ୍ରାୟତଃ 'ଦାଶ'ଙ୍କ ଆଶ୍ରମରେ

ହିଁ ହେଉଥିଲା। କୋଡ଼ିଏ ବର୍ଷ ଶିକ୍ଷକତା କଲାପରେ ବି, କୌଣସି ସାଧାରଣ ମଞ୍ଚରେ ବିପଦବକ୍ତବ୍ୟ ରଖିବାକୁ ମୋ' ଭିତରେ ଏକ ଅହେତୁକ ଭୀତି ସଞ୍ଚାର କରୁଥିଲା। ଇସ୍ପାତ ମହାବିଦ୍ୟାଳୟରେ ସର୍ବଭାରତୀୟ ସମ୍ମାନର ଆୟୋଜନ ସମୟରେ ମତେ ଧନ୍ୟବାଦ ଦେବାକୁ ବାଧ୍ୟ କରି ମୋ' ଭିତରେ ସାହସର ଏକ ଅଙ୍କୁରରୋପଣ କରିପାରିଥିଲେ।

ଦେବେନ୍ଦ୍ରଙ୍କ କାର୍ଯ୍ୟ ପଦ୍ଧତି ବି ଅତି ନିଆରା- ୧୯୮୧ ମସିହାରେ କଲେଜ ପାଠାଗାରପାଇଁ ପଚାଶହଜାରର ବହି କିଣିବାପାଇଁ ସ୍ଥିରହେଲା। ସ୍ଥାନୀୟ ବିତରକମାନଙ୍କ ପାଖରେ ଗୁଣାତ୍ମକ ପୁସ୍ତକର ଅଭାବ ହେତୁ ପରିଚାଳନା କମିଟି କଲିକତାରୁ ଯାଇ ବହି କିଣିବା ପାଇଁ ନିର୍ଣ୍ଣୟ କଲେ। ମୁଁ, ଦେବେନ୍ଦ୍ର ଓ ଅଜୟ ରଣା ଅଧ୍ୟକ୍ଷଙ୍କ ଆଦେଶ ପାଇ କଲିକତା ଅଭିମୁଖେ ଯାତ୍ରାକଲୁ। ତିନିଜଣଯାକ ସମବୟସ୍କ। କଲିକତାରେ ପହଞ୍ଚିବା ପରେ ଆମ ମନରେ ପଞ୍ଜୁରିମୁକ୍ତ ପକ୍ଷୀର ଅନୁଭବ। ଆରମ୍ଭହେଲା ପୁସ୍ତକକିଣା ପ୍ରକ୍ରିୟା। ଆମେ ପ୍ରଥମେ ପହଞ୍ଚିଲୁ ରୂପା ପବ୍ଲିକେଶନ୍ ଦୋକାନରେ। ଦୋକାନର ପରିଚାଳକଙ୍କୁ ନିଜର ପରିଚୟ ଦେଇ ବହିଲିଷ୍ଟ ଦେଲାବେଳକୁ, ପରିଚାଳକ ମହାଶୟ ଆମକୁ ଗୋଟିଏ ଚିଠି ଧରେଇ ଦେଲେ। ଚିଠିଟି ଲେଖିଥିଲେ REDSର ସଂପାଦକ, ଚିଠିରେ ବିତରକଙ୍କ ଅନୁରୋଧ କରା ହୋଇଥିଲା ଆମମାନଙ୍କୁ କୌଣସି ବହି ନ ବିକିବାପାଇଁ। ଆମେ ଅପମାନିତ ହୋଇ ସିଆଲଦାରେ ରହୁଥିବା ହୋଟେଲକୁ ଫେରିଆସିଲୁ। ହେଲେ ଫୋନ୍‌ରୁ ଜରଉଝରର ସଂପାଦକଙ୍କ ସହିତ କଥା ହେଲାପରେ ଜଣାପଡ଼ିଲା, ପରିଚାଳନା କମିଟିର ଜଣେ ସଦସ୍ୟ ବରାଦିବୈଠକ କରେଇ କଲେଜପାଇଁ ବହିସବୁ ସ୍ଥାନୀୟ ବିତରକଙ୍କଠୁଁ କିଣିବାପାଇଁ ପ୍ରସ୍ତାବ ଦେଇଛି। ବିଚାରବିମର୍ଶ ପରେ ପରିଚାଳନା କମିଟି କଲିକତାର ବିତରକମାନଙ୍କୁ ଚିଠି ଲେଖିଥିଲେ। ଫୋନ୍ ବନ୍ଦ କରିବା ସମୟରେ ସଂପାଦକ ମହାଶୟ କହିଲେ, ବୁଦ୍ଧି ଥିଲେ ସବୁ ସମ୍ଭବ। ଦେବେନ୍ଦ୍ର କଥାଟି ବୁଝିଗଲେ। ଆମେ ଅପରାହ୍ନରେ ପୁଣି ବହିକିଣା ଅଭିଯାନ ଆରମ୍ଭ କଲୁ। ଏଥରକ ଆମେ ସବୁ ଦୋକାନରେ ପ୍ରଥମେ ପଚାରିଲୁ, "ଆପଣ ମ୍ୟୁନିସିପାଲ କଲେଜରୁ ଚିଠି ପାଇଛନ୍ତି କି ?" ଯିଏ ନାହିଁ କହିଲା ଆମେ ତାଙ୍କୁ ଆମ ପାଖରେ ଥିବା ସଂପାଦକଙ୍କ ପୂର୍ବ ଚିଠି ଦେଇ ବହି କିଣିଥିଲୁ, ଦୁଇଦିନ ଭିତରେ ପଚାଶହଜାର ଟଙ୍କାର ବହି କିଣି ରାଉରକେଲା ଫେରିଲୁ। ବହି କଲେଜରେ ପହଞ୍ଚିବା ପରେ ସଂପାଦକ ସହଯୋଗରେ ବିକ୍ରେତାମାନଙ୍କୁ ତାଙ୍କ ପ୍ରାପ୍ୟ ମିଳିଗଲା। ଏହା କେବଳ ଦେବେନ୍ଦ୍ରଙ୍କ ପରିଶ୍ରମର ଫଳ ଥିଲା। ଯୁଦ୍ଧଭୂମିରୁ ପଳାୟନ ଯେମିତି କାପୁରୁଷର ଲକ୍ଷଣ, କର୍ତ୍ତବ୍ୟ ବିମୁଖତା ଦେବେନ୍ଦ୍ରଙ୍କ ପାଇଁ ଗୋଟିଏ ଅପୁରୁଷେୟ କାର୍ଯ୍ୟ। ଦାଶେଙ୍କର ଅବର୍ତ୍ତମାନରେ ସବୁ ପୁରୁଣା କଥା ସ୍ମୃତିରେ ଉଙ୍କି ମାରୁଛି। ତାଙ୍କର କାର୍ଯ୍ୟଶୈଳୀ ସବୁବେଳେ ମୋର ଅନୁକରଣୀୟ ହୋଇ ରହିବ। ଦାଶେ ମୋର ସ୍ମୃତିରେ ଏକ ଅଭୁଲା ସ୍ୱାକ୍ଷର ହୋଇ ଝଲସୁଥିବେ।

*ରାଉରକେଲା*

ସନ୍ତୋଷ ତ୍ରିପାଠୀ

# ଦେବେନ୍ଦ୍ର ଭାଇନା

ଦେବେନ୍ଦ୍ର କୁମାର ଦାଶ, ଏକ ଏକ ନାମ କି ସଂଜ୍ଞାବାଚକ ବିଶେଷ୍ୟ ପଦର ସମାହାର ନୁହେଁ- ଭାଷା, ସାହିତ୍ୟ, ସଂସ୍କୃତି ଶିକ୍ଷାଧାରାକୁ ଫେଣେଇ ଦେବାପରେ ପ୍ରପାନକୀ ଗୁଣରେ ଉତ୍ତର ଅଶି ଓଡ଼ିଶାର ଅସ୍ମିତା ପାତ୍ରରେ ସରସ ଅଂଶର ହୋଇ ଯାହା ସବହଳ ଦିଶିଯିବ, ତାହାହିଁ ଦେବେନ୍ଦ୍ର କୁମାର ଦାଶ।

ଆନ୍ତଃଶାସ୍ତ୍ରୀ ବିଦ୍ୟାମୂଳକ, ସାଂସ୍କୃତିକ ବିଘଟନକାରକ ଓ ସଂପାଦନାମୂଳକ ସାହିତ୍ୟ ସମାଲୋଚନା ଧାରାର ସେ ଅନ୍ୟତମ ତାର୍କିକ ବନାମ ଜଣେ ଐତିହ୍ୟାତ୍ମକ ସୌନ୍ଦର୍ଯ୍ୟ ନିର୍ଦ୍ଧାରଣର ଦିବ୍ୟସାରିଣୀ ଇନ୍ଦ୍ର।

ସାହିତ୍ୟ ତତ୍ତ୍ୱ ସମ୍ବନ୍ଧୀ ବିଚାରବିମର୍ଶ କ୍ଷେତ୍ରରେ ସେ ବିକଳ୍ପ ରହିତ ନମୁନାପୁରୁଷ।

ଫକୀରମୋହନ, ମଧୁସୂଦନ, ଗଙ୍ଗାଧର, ଉତ୍କଳଗୌରବ, ରାଧାନାଥ ଓ ଗୋପବନ୍ଧୁଙ୍କୁ ନବନ୍ୟାୟରେ ପାଠକ ସନ୍ନିଧିକରଣ କରିବାରେ ତାଙ୍କର ସାଧନା ବିନିର୍ମାଣ। ଓଡ଼ିଶାରେ ମିଶନାରୀ କାଳଖଣ୍ଡ ଓ ଉତ୍କଳ ସମ୍ମିଳନୀର ପ୍ରବୋଧନକାରକ ସମୟଖଣ୍ଡକୁ ନୂତନ ଓ ପ୍ରତି ଐତିହାସିକୀ କରି ନବନିର୍ଣ୍ଣୟ କରିବାରେ ତାଙ୍କର ଅବଦାନ ଅଦ୍ୱିତୀୟ। ଏ ଦିଗରୁ ନବ ଉତ୍କଳର ସାରସ୍ୱତ ପରିଧିଖୋଦନର ସେ ଭାବୁକ ଖୋଦକ ତ ବିଭାବନଶୀଳ ଚେତନାର ପ୍ରସାରକ।

ସାହିତ୍ୟର ପଠନପାଠନ ବ୍ୟବସ୍ଥାରେ ସେ ଆପଣାର ସ୍ୱାଭିମାନକୁ ଗାଙ୍ଗେୟ ସଂକଳ୍ପର ଉଦାହୃତରେ ଛାଡ଼ିଯାଇଛନ୍ତି। ମୋ' ପରି, ତମପରି, ଆମପରି ଏବଂ ଆପଣଙ୍କ ପରି ଅନେକଙ୍କର ସେ ଥିଲେ ପ୍ରେରଣାର ଉତ୍ସଭୂମି। ସେ ମୋ' ଭିଟାମାଟିର ଏକ ଅନ୍ୟତମ ଜ୍ଞାନର କଳକଳ, ଛଳଛଳ ଅଳକା।

ହେ ବିକଳ୍ପରହିତ ଶାଶ୍ୱତ ହେତୁବୋଧକ-ଜାତୀୟ ପ୍ରମେୟବୋଧ ! ଆପଣଙ୍କୁ ଅଶେଷ ପ୍ରଣାମ।

**ଅରବିନ୍ଦ ଦାସ**

# ଦୁଇଟି ଅବସୋସ ରହିଗଲା

ଗଣମାଧ୍ୟମରେ କାମ କଲେ ଜୀବନଟା ନ୍ୟୁଜ୍ ସର୍ବସ୍ୱ ହୋଇଯାଏ । ଏପରିକି ବ୍ୟକ୍ତିଗତ ଓ ସାମାଜିକ ଜୀବନ ସହ ମଧ୍ୟ ବେଶ୍ କିଛିଟା ସାଲିସ କରିବାକୁ ପଡ଼େ । ତେଣୁ ନିଜର ଅନେକ କାମକୁ ପଛକୁ ରଖିବାକୁ ହୁଏ । ତେବେ ବିଳମ୍ବରେ ହେଲେ ମଧ୍ୟ କିଛି କାମ ଶେଷରେ ମ୍ୟାନେଜ୍ ହୋଇଯାଏ । ଆଉ କିଛି ସବୁଦିନପାଇଁ ଅଧୁରା ରହିଯାଏ । ମୋ' କ୍ଷେତ୍ରରେ ଦେବେନ୍ଦ୍ର ଭାଇନାଙ୍କୁ ନେଇ ସେପରି ହୋଇଛି । ଓଡ଼ିଶାର ଏଭଳି ଜଣେ ସଫଳ ସାରସ୍ୱତ ସାଧକଙ୍କ ସାନ୍ନିଧ୍ୟ ପାଇବାର ସବୁ ସୁଯୋଗ ଥାଇ ମଧ୍ୟ କିପରି ତାକୁ ହାତଛଡ଼ା କଲି ଭାବିଲେ ନିଜକୁ ନିନ୍ଦିବା ଛଡ଼ା ଏବେ ଆଉ କିଛି ଉପାୟ ନାହିଁ ।

ତାଙ୍କ ପତ୍ନୀ ଗୀତାଅପା ଆମ ନିଜ ବଡ଼ଭଉଣୀ କହିଲେ ଚଳେ । ବଲାଙ୍ଗୀର ରାଜେନ୍ଦ୍ର କଲେଜରେ ଗୀତାଅପାଙ୍କ ବାପା ସ୍ୱର୍ଗତ କୃଷ୍ଣଚନ୍ଦ୍ର ଦାଶ ଷାଠିଏ ଦଶକରେ ରସାୟନ ବିଜ୍ଞାନର ପ୍ରାଧ୍ୟାପକ ଥିବାବେଳେ ମୋ' ବାପା ସ୍ୱର୍ଗତ ଡକ୍ଟର ରାଧାଗୋବିନ୍ଦ ଦାସ ଥିଲେ ଗ୍ରନ୍ଥପାଳ । କଲେଜ କ୍ୟାମ୍ପସରେ ଦୁହିଁଙ୍କ ଘର, ଅର୍ଥାତ୍ ପଡ଼ୋଶୀ । ଗୀତାଅପାଙ୍କ ମା' ଲଳିତା ଦାଶ ଓ ମୋ' ମା' ବହୁତ ଘନିଷ୍ଠ । ବୟସରେ ଗୀତାଅପାଙ୍କ ମା' ବଡ଼, ତେଣୁ ମୋ ମା'ଙ୍କୁ ସେ ତୁ-ତା କରନ୍ତି । ପରବର୍ତ୍ତୀ ସମୟରେ ସେ ପାଟଣାଗଡ଼ ଗାର୍ଲ୍ସ ହାଇସ୍କୁଲରେ ପ୍ରଧାନ ଶିକ୍ଷୟିତ୍ରୀ ଭାବେ ଅବସ୍ଥାପିତ ହେବାରୁ ତାଙ୍କ ପରିବାର ସେଠାରେ ରହନ୍ତି । ସେତେବେଳେ ୧୧+୨+୨ ବ୍ୟବସ୍ଥାରେ ବି.ଏ, ବି.ଏସି, ବି.କମ୍ ସବୁ ଦୁଇବର୍ଷିଆ ଥାଏ । ଗୀତାଅପା ରାଜେନ୍ଦ୍ର କଲେଜରେ ଜୀବବିଜ୍ଞାନ ସମ୍ମାନ ଶ୍ରେଣୀର ପ୍ରଥମବର୍ଷ ଛାତ୍ରୀ । ସେ ସମୟରେ ରାଜେନ୍ଦ୍ର କଲେଜର ମହିଳା ଛାତ୍ରୀନିବାସ ନଥିଲା । ତେଣୁ ଗୀତାଅପା ଆମ ଘରେ ବର୍ଷେ ରହି ପାଠ ପଢ଼ିଥିବା ମନେ ଅଛି । ସେତେବେଳକୁ ଆମର ମଧ୍ୟ ବଡ଼ ପରିବାର ହେଲାଣି । ଚାରି ଭାଇ, ତିନି ଭଉଣୀ । ମା' ଆଉ ପାରିଲେନି । ତେଣୁ ଗୀତାଅପା ତତ୍କାଳୀନ ହେଡ଼କ୍ଲର୍କ ସ୍ୱର୍ଗତ ଦଧିବାବନ ମିଶ୍ରଙ୍କ ଘରେ ରହି ବି.ଏସି. ପାଠ୍ୟକ୍ରମ ଶେଷ କରିଥିଲେ ।

ମୁଁ ଭୁବନେଶ୍ୱରରେ ଅବସ୍ଥାପିତ ହେବାପରେ ସ୍ୱାଭାବିକ ଭାବେ ଗୀତାଅପାଙ୍କ ସହ ଫୋନ୍‌ରେ କେତେଥର ଯୋଗାଯୋଗରେ ରହିଛି। ଆଜି ଯିବି କାଲି ଯିବି ଭାବି ଯାଇହେଇନଥିଲା। ରାଜେନ୍ଦ୍ର କଲେଜର ପ୍ଲାଟିନମ୍ ଜୁବୁଲି ସ୍ମରଣିକା ନେଇ ଯିବାକଥା ଚୂଡ଼ାନ୍ତ ହେଲାବେଳକୁ କରୋନା ଦ୍ୱିତୀୟ ଲହରର ଲକ୍‌ଡାଉନ୍-ସଟଡାଉନ୍। ତା'ପରେ ବି ବହୁତ ସମୟ ମିଳିଛି; ଅଥଚ ହେଳା କରିଦେଇଛି। ଅସମୟରେ ଦେବେନ୍ଦ୍ର ଭାଇନାଙ୍କ ବିଦାୟ ଯୋଗୁଁ ଆଉ ଯାହାର ଯାହା କ୍ଷତି ହେଉ ନହେଉ ମୋର ମସ୍ତବଡ଼ କ୍ଷତିଟିଏ ହୋଇଛି। ଏ ଜୀବଦ୍ଦଶାରେ ଯେ ଭାଇନାଙ୍କୁ ସାକ୍ଷାତ କରିବା ଆଉ ସମ୍ଭବ ନୁହେଁ- ଭାବିଲେ ମାଡ଼ିମାଡ଼ି ପଡୁଛି। ସାରା ଜୀବନ ଅନୁତପ୍ତ ରହିବାକୁ ପଡ଼ିବ। କେମିତି ଯେ ଗୀତାଅପାଙ୍କୁ ମୁହଁ ଦେଖାଇବି ଭାବି ହେଉନାହିଁ।

ଆଉ ଏକ ଅବସୋସ ଏହି ପୃଷ୍ଠଭୂମିରେ ସମ୍ଭବତଃ ସମ୍ପୂର୍ଣ୍ଣ ଅପ୍ରାସଙ୍ଗିକ ନୁହେଁ। ମୋ' ସହ ସମାନ ନାମରେ ଜଣେ ଓଡ଼ିଆ ଗାଳ୍ପିକ ଅଛନ୍ତି। ଭଲ ଲେଖନ୍ତି। ତାଙ୍କର ଭଲ ଗଳ୍ପଟିଏ ପଢ଼ି ମୋତେ ଜାଣିଥିବା ଲୋକେ ମୋତେ ପ୍ରଶଂସା କରି ଫୋନ୍ କଲେ ସେଇ ଲୋକଟି ମୁଁ ନୁହେଁ, ଆଉ ଜଣେ ବୋଲି ସ୍ପଷ୍ଟ କରିଦିଏ। ସାମାଜିକ ଗଣମାଧ୍ୟରେ ବିଶେଷ କରି ହ୍ୱାଟ୍ସଆପ୍‌ରେ ଆସୁଥିବା ବାର୍ତ୍ତାଗୁଡ଼ିକର ଉତ୍ତର ଦେବାରେ ମୁଁ ଟିକେ ଅଳସୁଆ। କାରଣ ଅଗ୍ରାଧିକାର ଭିତ୍ତିରେ ନ୍ୟୁଜ୍ ସମ୍ପର୍କିତ ବାର୍ତ୍ତାଗୁଡ଼ିକର ଉତ୍ତର ଦେବାକୁ ହୁଏ, ନିଷ୍ପତ୍ତି ନେବାକୁ ପଡ଼େ। ଦୁଇତିନି ମାସ ତଳେ ସେଇ ଗାଳ୍ପିକ ଅରବିନ୍ଦ ଦାସଙ୍କର ଏକ ସୁନ୍ଦର ଗଳ୍ପ ପଢ଼ି ରାଜେନ୍ଦ୍ର କଲେଜର ପୂର୍ବତନ ଅଧ୍ୟକ୍ଷ ଡକ୍ଟର ଅକ୍ଷୟ ନନ୍ଦ ମୋତେ ଏକ ପ୍ରଶଂସାସୂଚକ ଓ ଆଶୀର୍ବାଦମୂଳକ ହ୍ୱାଟ୍ସଆପ୍ ବାର୍ତ୍ତା ଦେଲେ। ମୁଁ ସେଇ ଲୋକ ନୁହେଁ ବୋଲି ଗୋଟିଏ ଧାଡ଼ିରେ ଉତ୍ତର ଲେଖିଦେଇଥିଲେ ଚଳିଥାନ୍ତା। ବରଂ ପରେ ସମୟ ବାହାର କରି ତାଙ୍କ ସହ ଅଧିକ ଆଲୋଚନା କରିବି ଭାବି କଥାଟିକୁ ପଛକୁ ବାକି ରଖିଲି। ହଠାତ୍ ଖବର ପାଇଲି ନନ୍ଦ ସାର୍ ଚାଲିଗଲେ। ସେବେଠୁ ଗୋଟିଏ କଥା ମନରୁ ଯାଉନାହିଁ। ଯଦି ଅମର ଆତ୍ମା କଥା ସତ୍ୟ, ଯଦି ମୃତ୍ୟୁ ପରେ ସତରେ ସ୍ୱର୍ଗବାସ କଥା ଅଛି, ଅରବିନ୍ଦ ମିଛ ଶ୍ରେୟ ନେବାକୁ ଏତେ ବ୍ୟାକୁଳ କାହିଁକି ବୋଲି ଅକ୍ଷୟ ସାର୍ ସ୍ୱର୍ଗରେ ଥାଇ ଭାବୁଥିବେ।

ଦେବେନ୍ଦ୍ର ଭାଇନା ଓ ଅକ୍ଷୟ ନନ୍ଦ ସାରଙ୍କ ବିୟୋଗ ଗୋଟିଏ ବିରାଟ ଶିକ୍ଷା ଦେଇଛି। ଆତ୍ମୀୟସ୍ୱଜନ ବନ୍ଧୁପରିଜନଙ୍କ ପ୍ରତି ଯାହା ଦାୟିତ୍ୱ ଓ କର୍ତ୍ତବ୍ୟ ତାହା ଆଜି ହିଁ କର। କାଲିକୁ ବାକି ରଖିଲେ କିଏ ଜାଣେ.. ? ଆଉ ଏମିତିରେ ତ କରୋନା ପରବର୍ତ୍ତୀ ଦୁନିଆରେ ଏଇ କଥାଟି ଆହୁରି ପ୍ରାସଙ୍ଗିକ ହୋଇଉଠିଛି।

*ସମ୍ବାଦ, ଭୁବନେଶ୍ୱର*

## ପ୍ରଦୀପ କୁମାର ପଣ୍ଡା

# ଦେବେନ୍ଦ୍ର ଦାଦା

ତାଙ୍କର ଅବର୍ତ୍ତମାନରେ ତାଙ୍କ ଉଦ୍ଦେଶ୍ୟରେ ଏ ପତ୍ରାଲେଖ ଲେଖିବାକୁ ହେବ ବୋଲି କେବେ କଳ୍ପନା କରିନଥିଲି। ମେନପଡୁଛି, ୧୯୭୩ ମସିହାରେ ବି.ଏ. ପ୍ରଥମ ବର୍ଷରେ ମୁଁ ପ୍ରବେଶ କରିଥାଏ। ଦେବେନ୍ଦ୍ର କୁମାର ଦାଶ ଥିଲେ ଶେଷବର୍ଷର ଛାତ୍ର। ଆମର ପାରମ୍ପରିକ ସମ୍ବଲପୁରିଆ ଆଦରାଭ୍ୟାସରେ ତାଙ୍କୁ ଆମେ ସମ୍ବୋଧନ କରୁଥିଲୁ 'ଦାଦା'। ସମ୍ବଲପୁର ବସ୍‌ଷ୍ଟାଣ୍ଡର ପତ୍ରିକା ଷ୍ଟଲ ପାଖରେ ସନ୍ଧ୍ୟାରେ ଦଦାମାନେ କେବେ କେମିତି କରନ୍ତି ଖଟି। ଆମେ ଛୋଟ ପିଲାମାନେ ସାମାନ୍ୟ ଦୂରତାରେ ତାଙ୍କୁ ଶୁଣୁ। ଦିନେ କହୁ କହୁ ମୁଁ କହିପକାଇଲି ଗଙ୍ଗାଧରଙ୍କ ତୁଳନାରେ ରାଧାନାଥଙ୍କୁ ପଢ଼ିବାକୁ ମତେ ଭଲ ଲାଗେନାହିଁ। ଆଖି ଯୋଡ଼ାକ ସ୍ୱଭାବ ସୁଲଭ ଢଙ୍ଗରେ ବଡ଼ ବଡ଼ କରି ସେ ଉଚ୍ଚାରଣ କଲେ ଗୋଟିଏ ଶବ୍ଦ 'କାହିଁକି'? ଭୟ ମିଶ୍ରିତ ବିସ୍ମୟରେ ମୁଁ ନିରୁତ୍ତର ରହିବା ଦେଖି ଆଦରରେ ସେ କହିଲେ, "ହେଲା, ଆଜି ନୁହେଁ ଦଶଦିନ ପରେ ଦଶଟି ବାକ୍ୟରେ ଏ କାହିଁକିର ଉତ୍ତର ତୁମେ ଲେଖିକରି ଦେବ।" ଦଶଦିନ ଧରି ବହୁ ଶ୍ରମ ଓ ମାନସିକ ବ୍ୟାୟାମ କରି ଲେଖାଟିଏ ମୁଁ ତାଙ୍କୁ ଦେଲି। ମୋର ଲେଖାର କେତେମାସ ପରେ ସପ୍ତର୍ଷିରେ ପଢ଼ିଲି ତାଙ୍କର ଏକ ରାଧାନାଥ ସଂପର୍କିତ ପ୍ରବନ୍ଧଟିଏ। ମୋର ସଂଶୟପୂର୍ଣ୍ଣ ଅବବୋଧ ପାଇଁ ସେ ଲେଖା ଥିଲା ଏକ ପ୍ରେରଣାଦାୟୀ ସନ୍ଦେଶ।

ଦାଦା ଦେବେନ୍ଦ୍ରଙ୍କ ମାନସରେ ସଦାବେଳେ ଖଜବଜ ହେଉଥାଏ ଗୋଟିଏ ଶବ୍ଦ, 'କାହିଁକି' ଓ ତା'ର ଉତ୍ତର ସନ୍ଧାନରେ ହୁଏତ କଟି ଯାଇଥିବ ତାଙ୍କର କେତେ କେତେ ବିନିଦ୍ର ରଜନୀ। ଏ ପ୍ରଶ୍ନାକୁଳ ମଣିଷଟି ଯଦି ସାହିତ୍ୟ ଜଗତରେ ପ୍ରବେଶ କରି ନଥାନ୍ତେ, କେତେ କେତେ ଲୁପ୍ତ, ଲୁକ୍କାୟିତ ଦିଗ ରହିଯାଇଥାନ୍ତା ଅସମାହିତ ଓଡ଼ିଆ ସାହିତ୍ୟାକାଶରେ।

ଅର୍ଦ୍ଧଶତାବ୍ଦୀ ଧରି ସହସ୍ରାଧିକ ଛାତ୍ର, ଗବେଷକ, ସମାଲୋଚକଙ୍କ ସେ ଥିଲେ ଜଣେ ଅତ୍ୟନ୍ତ ଶ୍ରଦ୍ଧାଶୀଳ, ବିନୟୀ ଓ ଉଦାର ପ୍ରେରଣାଦାୟୀ ଦିଗଦର୍ଶକ। ଆମର ସାହିତ୍ୟ ଗବେଷଣା ଜଗତ ତାଙ୍କ ଅନ୍ତେ ବସ୍ତୁତଃ ଦିଗହରା।

ମିଷ୍ଟଭାଷୀ, ସ୍ନେହପ୍ରବଣ ଓ ଗଭୀର ଅନ୍ୱେଷୀ ପ୍ରାଣ ସେହି ଦକ୍ଷ ସାରସ୍ୱତ ସାଧକଙ୍କୁ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି।

*ସମ୍ବଲପୁର*



ପ୍ରମୋଦ କୁମାର ବିଶ୍ୱାଳ

# ଦେବ ଭାଇଙ୍କୁ ମନେପକାଇ

"ମାନବ ଜୀବନ ନୁହଁଇ କେବଳ ବର୍ଷମାସ ଦିନଦଣ୍ଡ
କର୍ମେ ଜିଏଁ ନର କର୍ମ ଏକା ତାର ଜୀବନର ମାନଦଣ୍ଡ
ଏ ସଂସାର ସାରା କର୍ମମୟ ପରା କରମେ ବନ୍ଧା ଏ ପ୍ରାଣ
ବିଭୁଙ୍କ ଅଭୟ ଚରଣରେ ଲୟ ଦେଇ କର ଶୁଭ କର୍ମ।"

ଜନ୍ମମୃତ୍ୟୁ ସହିତ ମଣିଷ ଜୀବନ ଅଙ୍ଗାଙ୍ଗୀ ଭାବେ ଜଡ଼ିତ। ମଣିଷ ଜନ୍ମ ହେଲେ ମୃତ୍ୟୁ ସୁନିଶ୍ଚିତ; କିନ୍ତୁ ସେଇମାନଙ୍କ ଜୀବନ ଧନ୍ୟ, ଯେଉଁମାନଙ୍କ ଜୀବନ ଅନ୍ୟମାନଙ୍କର କଲ୍ୟାଣରେ ସହାୟକ ହୋଇଥାଏ। ସେଇମାନେ ଧନ୍ୟ ଯେଉଁମାନଙ୍କପାଇଁ ଅଜାଣତରେ ଅନ୍ୟମାନଙ୍କ ଆଖିରୁ ଅଶ୍ରୁ ବୋହିଯାଏ। ଜ୍ଞାନର ପାରାବାରରେ ପାରିଜାତ ପୁଷ୍ପ ଭଳି ଆଲୋଡ଼ନ ସୃଷ୍ଟି କରି ପାରୁଥିବା ଦେବଭାଇଙ୍କ ଆକସ୍ମିକ ବିୟୋଗ ସମସ୍ତଙ୍କୁ ସ୍ତମ୍ଭୀଭୂତ କରିଅଛି- ସ୍ୱଜନ, ପରିଜନ, ବନ୍ଧୁବାନ୍ଧବ ଓ ସାହିତ୍ୟପ୍ରେମୀ ସମସ୍ତଙ୍କୁ। ନୀରୋଗ ମଣିଷଟିଏ; ସବୁକ୍ଷେତ୍ରରେ ଏକ ଦୀପ୍ତିମାନ ଅଗ୍ନିଶିଖା ଏମିତି ହଠାତ୍ ନିର୍ବାପିତ ହୋଇଯିବେ ବୋଲି କେହି ଆଶା କରିନଥିଲେ। ଗବେଷଣା କ୍ଷେତ୍ରରେ ତାଙ୍କ ବିୟୋଗ ଏକ ଅପୂରଣୀୟ କ୍ଷତି ଏବଂ ବିଶେଷ କରି ଆଞ୍ଚଳିକ ସ୍ତରରେ ବାଲିକୁଦା-ଏରସମାବାସିନ୍ଦାଙ୍କପାଇଁ ବଡ଼ ଦୁଃଖର ଖବର। ସେ ସମସ୍ତଙ୍କ ମନ କିଣିନେଉଥିଲେ କାରଣ ସେ ଥିଲେ ଏକାଧାରରେ ସରଳ, ମେଳାପୀ, ବନ୍ଧୁବତ୍ସଳ, ସ୍ନେହୀ, ପରୋପକାରୀ ଓ ନିରହଙ୍କାର ମଣିଷ।

ଆଜିର ଏହି ଅବସରରେ ଆମର କାମନା ତାଙ୍କର ଜୀବନ ଓ ଅବଦାନ ସମସ୍ତଙ୍କପାଇଁ ଚିରଦିନ ପ୍ରେରଣାର ଉତ୍ସ ପ୍ରମାଣିତ ହେଉ !

ଭୁବନେଶ୍ୱର

## ଶ୍ୟାମ ଭୋଇ

# ଗବେଷକ ଦେବେନ୍ଦ୍ର

ସେଦିନ ଥିଲା ଅଗଷ୍ଟ ୨୫ ତାରିଖ । ସମ୍ବଲପୁର ଜିଲ୍ଲାର ରେଙ୍ଗାଲିସ୍ଥିତ ସୂରଜମଲ ମହାବିଦ୍ୟାଳୟ ପରିସରରେ ଗଙ୍ଗାଧର ମେହେର ଜୟନ୍ତୀ ଉତ୍ସବରେ ବକ୍ତାଭାବେ ଯୋଗ ଦେଇଥାଏ । ହଠାତ୍ କୃଷ୍ଣସାର୍‌ଙ୍କ ପାଖରୁ ଖବର ଆସିଲା ଦେବେନ୍ଦ୍ର ଦାଶ ଚାଲିଗଲେ । ଏ ସମ୍ବାଦରେ ମୋର ପ୍ରାଣ ବିଳପୀ ଉଠିଲା । ଅଧକ୍ଷ ମନୋଜ ପଣ୍ଡାଙ୍କୁ ଅନୁରୋଧ କଲି ଏକମିନିଟ୍ ନିରବପ୍ରାର୍ଥନାପାଇଁ ।

ଦେବେନ୍ଦ୍ରସାର୍‌ଙ୍କ ଆକସ୍ମିକ ତିରୋଧାନ ସହଜରେ ବିଶ୍ୱାସକରି ହେଉନି । ରେଭେନ୍ସା ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ଅଖିଳଭାରତୀୟ ଓଡ଼ିଆ ଅଧ୍ୟାପକ ସମ୍ମିଳନୀର ଅଧିବେଶନରେ ତାଙ୍କର ପରାମର୍ଶ ମୋ'ପାଇଁ ଅଭୁଲା ହୋଇ ରହିବ । ସମ୍ବଲପୁରରେ ପ୍ରଫେସର ଗୋବିନ୍ଦଚନ୍ଦ୍ର ଉଦଗାତାଙ୍କ ଜନ୍ମଶତବାର୍ଷିକୀ ଉତ୍ସବରେ ତାଙ୍କ ବକ୍ତବ୍ୟ ଶୁଣିବା ମୋ'ପାଇଁ ଥିଲା ଶେଷ । ଅଗଷ୍ଟ ମାସ ୧୧ ତାରିଖରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଆନୁକୂଲ୍ୟରେ ଆୟୋଜିତ ଗଙ୍ଗାଧରମେହେର ଜୟନ୍ତୀ ଉତ୍ସବରେ ମୋ' ଅନୁରୋଧ କ୍ରମେ ତାଙ୍କୁ ମୁଖ୍ୟବକ୍ତାଭାବେ ଯୋଗ ଦେବାକୁ ଅନୁରୋଧ କରାଯାଇଥିଲା । ପ୍ରଫେସର ଦେବେନ୍ଦ୍ର କୁମାର ଦାଶଙ୍କୁ ଦେଖିବାପୂର୍ବରୁ ମୁଁ 'ଗଙ୍ଗାଧର: କବିତା ଓ କବିରତ୍ନ' ପୁସ୍ତକରୁ ତାଙ୍କର ପରିଚୟ ପାଇଥିଲି । ଜଣେ ନିଷ୍ଠାପର ଗବେଷକ ଯତ୍ନବାନ୍ ସଂଗ୍ରାହକ ଓ ସଂପାଦକ, ବାହୁପାଠୀ ସୁଧି ସାହିତ୍ୟ ସମାଲୋଚକ, ବିଦ୍ୱାନ ପ୍ରଫେସର, ବନ୍ଧୁବତ୍ସଳ, ନିରହଂକାରୀ, ମିଷ୍ଟଭାଷୀ ପବିତ୍ର ହୃଦୟ ଦିଗଦର୍ଶକଙ୍କୁ ଆମେ ସବୁଦିନପାଇଁ ହରାଇଲୁ । ତାଙ୍କର ତିରୋଧାନ ଆମ ସାହିତ୍ୟଜଗତ ନିମନ୍ତେ ଅପୂରଣୀୟ କ୍ଷତି । ସାର୍‌ଙ୍କୁ ଭକ୍ତିପୂତ ଶେଷ ପ୍ରଣାମ । ତାଙ୍କର ଆତ୍ମାର ସଦଗତି କାମନା ସହିତ ହୃଦୟରୁ ଭକ୍ତିକୁସୁମାଞ୍ଜଳି ଅର୍ପଣ କରୁଛି ।

*ସମ୍ବଲପୁର*

ଶିଶିର ବେହେରା

# ପ୍ରିୟ ମଣିଷଙ୍କୁ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି

ଓଡ଼ିଆ ସାହିତ୍ୟର ସମୀକ୍ଷା, ସଂପାଦନା ଓ ଗବେଷଣା କ୍ଷେତ୍ରରେ ପ୍ରତିଷ୍ଠିତ ନାମ ଦେବେନ୍ଦ୍ର କୁମାର ଦାଶ। ସାହିତ୍ୟର ଅନାଲୋଚିତ ବହୁପ୍ରସଙ୍ଗ ଏବଂ ଗ୍ରନ୍ଥର ଶୁଦ୍ଧପାଠ ନିର୍ଣ୍ଣୟ, କାଳକଳନା ସର୍ବୋପରି ସେସବୁର ପ୍ରମାଣସିଦ୍ଧ ତାର୍କିକବ୍ୟାଖ୍ୟା କରିବାରେ ଗବେଷକ ଦେବେନ୍ଦ୍ର ଦାଶଙ୍କ ପାଣ୍ଡିତ୍ୟ ଓ ପରାକାଷ୍ଠାକୁ ସମସ୍ତେ ସ୍ୱୀକାର କରିଥାନ୍ତି। ବିଂଶ ଶତାବ୍ଦୀର ସପ୍ତମ ଦଶକରୁ ପ୍ରାୟ ଅର୍ଦ୍ଧଶତାବ୍ଦୀ ଯାଏଁ ତାଙ୍କର ନିରନ୍ତର ଗବେଷଣା, ପତ୍ରପତ୍ରିକା ସଂପାଦନା, ମୌଳିକ ପ୍ରବନ୍ଧରଚନା, ଗ୍ରନ୍ଥ ସଂପାଦନା ଆଦି ବହୁବିଧ କାର୍ଯ୍ୟ ହିଁ ତାଙ୍କ ସାରସ୍ୱତ ସିଦ୍ଧି-ସାଧନାକୁ ପ୍ରମାଣିତ କରିଛି। ଆଧୁନିକ ଓଡ଼ିଆସାହିତ୍ୟ, ପତ୍ରପତ୍ରିକା, ଲେଖା ଓ ଲେଖକମାନଙ୍କର ଅଭ୍ରାନ୍ତ ବିଶ୍ଳେଷକ ଭାବରେ ସେ ଯେତିକି ପରିଚିତ; ତହିଁ ଅପେକ୍ଷା ଜଣେ ମିଷ୍ଟଭାଷୀ ବାଗ୍ମୀଭାବରେ ଉଭୟ ଗବେଷକ ଓ ଛାତ୍ରମହଲରେ ତାଙ୍କ ଆଦର ତତୋଧିକ।

ରେଭେନ୍‌ସା ବିଶ୍ୱବିଦ୍ୟାଳୟରେ ଗବେଷଣା କରୁଥିବାବେଳେ ଦେବେନ୍ଦ୍ର ସାର୍‌ଙ୍କ ସହିତ ମୋର ସାକ୍ଷାତ ହୋଇଥିଲା। ମୋର ସୌଭାଗ୍ୟ ଯେ ଅନେକସମୟ ତାଙ୍କ ସାନ୍ନିଧ୍ୟଲାଭ କରିବାସହ ଓଡ଼ିଆସାହିତ୍ୟ, ଭାରତୀୟସାହିତ୍ୟ ଏବଂ ବିଶ୍ୱସାହିତ୍ୟର ବିବିଧ ପ୍ରସଙ୍ଗ ଉପରେ ତାଙ୍କର ଆଲୋଚନାମାନ ଶୁଣିଅଛି। ମୋପରି ବହୁ ଛାତ୍ରଙ୍କ ସେ ପ୍ରେରଣାଦାତା। ବ୍ୟକ୍ତିଗତ ଭାବରେ ତାଙ୍କର ଶ୍ରଦ୍ଧାଭାଜନ ହେବା ଏବଂ ସମୟାନୁସାରୀ ପରାମର୍ଶ ଲାଭକରିବାରେ ଦେବେନ୍ଦ୍ର ସାର୍‌ଙ୍କ ଉଦାର ବ୍ୟକ୍ତିତ୍ୱକୁ ଅତିପାଖରୁ ଦେଖିପାରିଛି ମୁଁ। ମୋର ଅନୁବାଦ କାର୍ଯ୍ୟ ପଛରେ ତାଙ୍କର ପ୍ରଚ୍ଛନ୍ନ ପ୍ରେରଣାକୁ ସମ୍ମାନର ସହ ମୁଁ ସ୍ୱୀକାର କରିଅଛି। ବିଶିଷ୍ଟ ଦାର୍ଶନିକ ତଥା ବଙ୍ଗଳା ଭାଷାର ବିଖ୍ୟାତ ଗବେଷକ ସୁରେନ୍ଦନାଥ ଦାଶଗୁପ୍ତଙ୍କ 'କାବ୍ୟବିଚାର' ପୁସ୍ତକର ଓଡ଼ିଆ ଅନୁବାଦ ପାଇଁ ତାଙ୍କ ନିକଟରୁ ପାଇଥିବା

ସହଯୋଗକୁ ଆଜି ବି ସ୍ମରଣ କରୁଛି । ଏହି ଦୁଃଷ୍ପ୍ରାପ୍ୟ ବଙ୍ଗଳା ଗ୍ରନ୍ଥଟିକୁ ସେ ମୋତେ ଯୋଗାଇଦେଇଥିଲେ ଏବଂ ଓଡ଼ିଶା ସାହିତ୍ୟ ଏକାଡ଼େମୀଙ୍କୁ ଏହାର ପ୍ରକାଶନ ନିମନ୍ତେ ଲିଖିତ ଅନୁରୋଧ କରିବାପାଇଁ ସେ ହିଁ ମୋତେ ଉତ୍ସାହିତ କରିଥିଲେ । ତାଙ୍କର ଏହି ସଦିଚ୍ଛା ଓ ସହଯୋଗ ପାଇଁ ଉକ୍ତ ପୁସ୍ତକର ଅନୁବାଦ କାର୍ଯ୍ୟ ସଂପାଦନ କରିପାରିଥିଲି, ଯାହାର ପ୍ରକାଶିତ ରୂପଦେଖି ସେ ଅତ୍ୟନ୍ତ ଖୁସିହୋଇ ମୋତେ ଆଶୀର୍ବାଦ କରିଥିଲେ । ତାଙ୍କର ସ୍ନେହବୋଳା କଥା, ସଦୁପଦେଶ କଦାପି ଭୁଲିବାର ନୁହେଁ । ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନରେ ତାଙ୍କସହ କାମ କରିବାର ଦୁର୍ଲ୍ଲଭ ସୁଯୋଗ ସେ ମୋତେ ପ୍ରଦାନ କରିଥିଲେ । ଦୂରରେ ରହୁଥିବାରୁ ପ୍ରତ୍ୟକ୍ଷ ଯୋଗାଯୋଗ ରଖିପାରୁନଥିଲି ଦେବେନ୍ଦ୍ର ସାର୍‌ଙ୍କ ସହିତ । କିନ୍ତୁ, ଅନେକଥର ଫୋନ୍‌ଯୋଗେ ତାଙ୍କ ତରଫରୁ ମୋତେ ଯୋଗାଯୋଗ କରି ନର୍ଥ ଜୋନ୍‌ର ସଂପାଦକ ଭାବରେ ଅନୁଷ୍ଠାନକୁ କେନ୍ଦୁଝର, ମୟୂରଭଞ୍ଜ ଅଞ୍ଚଳରେ ଅଧିକ ସକ୍ରିୟ କରାଇବାଲାଗି ସେ ସ୍ନେହପୂର୍ଣ୍ଣ ଉପଦେଶ ଦେଉଥିଲେ ।

ଦେବେନ୍ଦ୍ର ସାର୍ ଅକାଳରେ ବାହୁଡ଼ିଯିବା ଆମ ସାହିତ୍ୟଜଗତ ପାଇଁ ଏକ ଅପୂରଣୀୟ କ୍ଷତି । ତାଙ୍କଭଳି ନିଷ୍ଠାପର ଗବେଷକ, ସତ୍ୟଦର୍ଶୀ ସମାଲୋଚକ ଏବଂ ମାର୍ଜିତ ସଂପାଦକ ଆମପାଇଁ କେବଳ ଇତିହାସ ହୋଇ ରହିଥିବେ । ହେ ପ୍ରିୟ ମଣିଷ ! ଦିବ୍ୟଧାମରେ ଥାଇ ଆପଣ ଆମମାନଙ୍କୁ ଆଶୀର୍ବାଦ କରୁଥାନ୍ତୁ । ମୋର ଭକ୍ତିପୂତ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଆପଣଙ୍କ ନିମନ୍ତେ ଅର୍ପଣ କରୁଅଛି ।

*କେନ୍ଦୁଝର*

## ଦୀପ୍ତିରଂଜନ ଶେଠ

# ସେ ଏକ ସାରସ୍ୱତ ସଂପର୍କ କଲିକତା ସେତୁ

ଓଡ଼ିଆ ସାହିତ୍ୟର ଇତିହାସରେ ଜଣେ ନିଷ୍ଠାପର ଗବେଷକ ଭାବରେ ଦେବେନ୍ଦ୍ର କୁମାର ଦାଶଙ୍କ ନାମ ସର୍ବାଗ୍ରେ ଚିର ସ୍ମରଣୀୟ । ପାଠ-ସମ୍ପାଦନା କ୍ଷେତ୍ରରେ ତାଙ୍କର ମୌଳିକ ଅଭିବ୍ୟକ୍ତି ତଥା ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ସ୍ପଷ୍ଟ ଜଣାପଡ଼େ । ସେହିଭଳି ସାହିତ୍ୟ-ସମାଲୋଚନା କ୍ଷେତ୍ରରେ ତାଙ୍କ ପ୍ରତିଭା ଥିଲା ବହୁ ଆୟତନ ବିଶିଷ୍ଟ । ତୁଳନାହୀନ ।

୧୯୯୯-୨୦୦୦ମସିହା ଆଡ଼କୁ ସାହଚର୍ଯ୍ୟ ଲାଭ କରିଥିଲି । ଏହା ଥିଲା ମୋ ପାଇଁ ସୁବର୍ଣ୍ଣ ସୁଯୋଗ । ତାଙ୍କ ସାନ୍ନିଧ ଲାଭ କରି ନଥିଲେ, ହୁଏତ ମୁଁ ଓଡ଼ିଆ ସାହିତ୍ୟର ଇତିହାସ ସମ୍ପର୍କରେ ବିଶେଷ କିଛି ଜାଣିପାରି ନଥା'ନ୍ତି । ଯେଉଁଦିନଠାରୁ ଦେବେନ୍ଦ୍ର କୁମାର ଦାଶଙ୍କ ସହିତ ମୋର ସାରସ୍ୱତ ସମ୍ପର୍କ ସ୍ଥାପିତ ହେଲା, ସେହିଦିନଠାରୁ ସପ୍ତାହକୁ ପ୍ରାୟ ଦୁଇ ତିନିଥର ଟେଲିଫୋନ୍ କରି ତାଙ୍କୁ ବିଭିନ୍ନ ବିଷୟରେ ପଚାରି ବୁଝି ସବୁ କଥା ଟିପି ରଖୁଥିଲି । ସେତେବେଳେ ମୋ ଭଳି ଜଣେ ସମ୍ପୂର୍ଣ୍ଣ ଅପରିଚିତ, ଅନାମଧେୟ ତରୁଣର ଓଡ଼ିଆ ସାହିତ୍ୟ ପାଠକ ପ୍ରତି ଥିବା ଆଗ୍ରହ ଦେଖି ଦେବେନ୍ଦ୍ରବାବୁ ମୋ ପ୍ରତି ମଧ ଆକୃଷ୍ଟ ହୋଇପଡ଼ିଥିଲେ । ମୋର ସୁନ୍ଦର ହସ୍ତାକ୍ଷର ଦେଖି ସର୍ବଦା ମତେ ପ୍ରଶଂସା କରୁଥିଲେ । ତାଙ୍କପାଇଁ ମୋ ହସ୍ତଲିପି ଥିଲା ସତେଯେପରି ସୁଗୋଲ ଓ ମୁଦ୍ରିତ । ସେ ମତେ ସର୍ବଦା ପୁତ୍ରବତ୍ ସ୍ନେହ କରୁଥିଲେ । ମୁଁ ଯେତେବେଳେ ଯେଉଁ ବହି କିମ୍ବା ପତ୍ରିକା କଥା କହିଛି, ସେ ଯଥାସାଧ ଚେଷ୍ଟାକରି କିଛି କିଛି ଯୋଗାଇ ଦେଇଥିଲେ । ତାଙ୍କର ଭୁବନେଶ୍ୱରସ୍ଥିତ ବାସଭବନରେ ଥିବା ବିରାଟ ଲାଇବ୍ରେରୀ ଭିତରକୁ ମୁଁ ବହୁବାର ଯାଇ ବହିପତ୍ର, ହାତଲେଖା ନୋଟ୍, ଡାଏରୀ, ଚିଠିପତ୍ରର କେତେକାଂଶ ଦେଖିବାର ସୁଯୋଗ ପାଇଛି । ସେ ହିଁ ମତେ ପ୍ରଥମେ ଉତ୍ସାହିତ କରିଥିଲେ, କଟକସ୍ଥିତ 'ଉତ୍କଳ ସାହିତ୍ୟ ସମାଜ'ର 'ଉତ୍କଳ ଗୌରବ ମଧୁସୂଦନ ପାଠାଗାର'ରେ ସଂରକ୍ଷିତ ମୂଲ୍ୟବାନ୍ ବହି ଓ ପତ୍ରିକାଗୁଡ଼ିକ ଦେଖି ନିଜର ଆବଶ୍ୟକ ତଥ୍ୟ ଟିପି ରଖିବା

ପାଇଁ ତାଙ୍କ ସମ୍ପର୍କରେ ଏଭଳି ବହୁ କଥା ଅଛି । ପରବର୍ତ୍ତୀ ସମୟରେ ଦେବେନ୍ଦ୍ର କୁମାର ଦାଶଙ୍କ ମାଧ୍ୟମରେ ତାଙ୍କର ସତୀର୍ଥ ଗବେଷକ ବନ୍ଧୁ ଗୌରାଙ୍ଗ ଚରଣ ଦାଶ, ଫଣୀନ୍ଦ୍ର ଭୂଷଣ ନନ୍ଦ, ଶ୍ରୀଚରଣ ମହାନ୍ତି, ଅଶ୍ୱିନୀ କୁମାର ମିଶ୍ର, ଶ୍ରୀ କମଳାକାନ୍ତ ମହାପାତ୍ର (କଲିକତା), ଦୀପ୍ତିରଞ୍ଜନ ପଟ୍ଟନାୟକ, ବସନ୍ତ କୁମାର ତ୍ରିପାଠୀ, ଯତୀନ୍ଦ୍ର କୁମାର ନାୟକ, ହିମାଂଶୁ ଶେଖର ମହାପାତ୍ର ଏବଂ ଲଲାଟେନ୍ଦୁ ଦାସମହାପାତ୍ର ପ୍ରଭୃତିଙ୍କ ସହିତ ମଧ୍ୟ ମୁଁ ପରିଚିତ ହୋଇ ସେଇମାନଙ୍କର ସାନ୍ନିଧ୍ୟ ଲାଭ କରିବାର ବିଶେଷ ସୁଯୋଗ ପାଇଥିଲି । ସେହିଭଳି ତାଙ୍କର ପୂଜ୍ୟ ଗୁରୁଦେବ ଓ ଶୁଭାକାଂକ୍ଷୀ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ମଧୁସୂଦନ ପତି, ସୁଦର୍ଶନ ଆଚାର୍ଯ୍ୟ, ଦାଶରଥି ଦାସ ପ୍ରଭୃତିଙ୍କ ସ୍ନେହ ଓ ଆଦର୍ଶ ଲାଭ କରିଥିଲି । ଦେବେନ୍ଦ୍ର ବାବୁ ମୋ ପାଇଁ ଥିଲେ ଜଣେ ଅକୁତୋଭୟ ସ୍ୱଷ୍ଟବକ୍ତା, ପ୍ରତିଭା ଓ ସାଧନାର ଜଣେ ମୁଗ୍ଧ ପ୍ରଶଂସକ, ଜଣେ ଯଥାର୍ଥ ସାରସ୍ୱତ ସାଧକ । ତାଙ୍କ ଅନବଦ୍ୟ ଦାନ ପାଇଁ ଆଜି ଓଡ଼ିଆ ସାହିତ୍ୟର ଗବେଷଣାକ୍ଷେତ୍ର ପୁଷ୍ପିତ, ଫଳାନ୍ୱିତ ଓ ଚନ୍ଦନାକ୍ତ ହୋଇଛି । ତାଙ୍କର ପବିତ୍ର ସାଧୁ ଆତ୍ମା ପ୍ରତି ମୁଁ ନମସ୍କାର ଜଣାଉଛି ।

*ଲରମ୍ପ/*

କେଦାର ମିଶ୍ର

# ଜଣେ କାହାଣୀର ଚରିତ୍ର

ଦେବେନ୍ଦ୍ର ମଉସାଙ୍କର ବହି ଓ ତାଙ୍କ ଗଭୀର ଗବେଷଣା ବିଷୟରେ କିଛି ଲେଖିବି ବୋଲି ଅନେକ ଥର ଭାବିଛି, ହେଲେ ଘର ଲୋକଙ୍କୁ ଅଣଦେଖା କରିବାର ଯେଉଁ ସହଜାତ ଓଡ଼ିଆ ଗୁଣ, ତାହା ମୋତେ ବାରମ୍ବାର ଅଟକାଇ ଦେଇଛି। ପରିଶେଷରେ ମୋତେ ଯେ ତାଙ୍କ ପାଇଁ ଗୋଟେ ଶୋକ ଆଲେଖ୍ୟ ଲେଖିବାକୁ ହେବ, ଏହା ଏକ ଦାରୁଣ ବାସ୍ତବତା । ଏକଥା ସତ ଯେ, ମୁଁ ତାଙ୍କ ପରିବାରର ଲୋକ। ମାନ୍ୟରେ ସେ ମୋର ଶ୍ୱଶୁର, ହେଲେ ମାନ୍ୟତାରେ ସେ ମୋର ଅଭିଭାବକ। ଜୀବନରେ ଗବେଷଣା ବୋଲି ଯାହା ଅଳ୍ପ ବହୁତ ଜାଣିଛି, ସେହି ହିଁ ତାର ମୂଳ ପ୍ରେରଣା । ୧୯୯୮ରେ ହାଇଡେଲବର୍ଗ ବିଶ୍ୱବିଦ୍ୟାଳୟ ତରଫରୁ ମହିମାଧର୍ମ ସମ୍ପର୍କରେ ଚାଲିଥିବା ଗବେଷଣା ସହିତ ଆକସ୍ମିକ ଭାବରେ ମୁଁ ଯୋଡ଼ି ହୋଇଥିଲି। ସେହି ପ୍ରକଳ୍ପର ପ୍ରାଥମିକ ସ୍ତରରେ ଆମେ ଯେତେବେଳେ ବିଷୟ ପ୍ରବେଶ ଲାଗି ବାଟ ପାଉନଥିଲୁ, ସେତେବେଳେ ଆମ ହାତରେ ପଡିଥିଲା 'ଏଷଣା'ରେ ପ୍ରକାଶିତ ଦେବେନ୍ଦ୍ର କୁମାର ଦାଶଙ୍କର ମହିମାଧର୍ମ ସମ୍ପର୍କିତ ଏକ ତଥ୍ୟନିଷ୍ଠ ଆଲୋଚନା। ସମ୍ପୃକ୍ତ ଆଲୋଚନାର ପରିଶିଷ୍ଟରେ କେତୋଟି ଐତିହାସିକ ନଥି ସାମିଲ ଥିଲା। ସେହି ଆଲୋଚନା ଆମ ଲାଗି ଏକ ପ୍ରକାର ଦ୍ୱାରଫିଟା ଥିଲା।

ବ୍ୟକ୍ତିଗତ ଭାବରେ ତାଙ୍କୁ ଜାଣିବା ପୂର୍ବରୁ ସେ ଥିଲେ ମୋ ପାଇଁ ଏକପ୍ରକାର କାହାଣୀର ମଣିଷ। ତାଙ୍କ ବିଷୟରେ ପ୍ରଥମ ସୂଚନା ମୁଁ ପାଇଥିଲି ତାଙ୍କର ଶିକ୍ଷକ ପବିତ୍ର ମୋହନ ନାୟକଙ୍କ ଠାରୁ। ପବିତ୍ର ସାର୍ ନିଜ ଛାତ୍ର ଦେବେନ୍ଦ୍ର ବିଷୟରେ ଏତେ ମୁଖର ଭାବରେ ଗପିବା ମୋତେ ଆଶ୍ଚର୍ଯ୍ୟ କରିଥିଲା। ପରବର୍ତ୍ତୀ ସମୟରେ ତାଙ୍କ କଥା ଶୁଣିଲି ଗୌରାଙ୍ଗ ଭାଇଙ୍କ ପାଖରୁ। ଏତେ ଶୁଣାଶୁଣି ଭିତରେ ତାଙ୍କ ସହ ପ୍ରଥମ ଦେଖା ହେଲା ଭୁବନେଶ୍ୱରରେ। ଦେଖା ହେଉହେଉ ଜଣାପଡିଲା ଯେ ମାଉସୀ, ମୋ ଶାଶୁଙ୍କ 'ମକର'।

ସେହି ସୂତ୍ରରୁ ମୁଁ ସେ ଘରର ଜୋଇଁ ଭାବରେ ଗୋଟେ ପାରିବାରିକ ମାନ୍ୟତା ପାଇଥିଲି। ବ୍ୟକ୍ତିଗତ ଭାବରେ ତାଙ୍କର ସ୍ନେହ ଓ ଆଶୀର୍ବାଦ ମୋତେ ମିଳିଛି। ହେଲେ ବୌଦ୍ଧିକ ଜୀବନରେ ସେ ସବୁବେଳେ ମୋର ଅଭିଭାବକ। ଯେ କୌଣସି ତଥ୍ୟ ବା ପ୍ରସଙ୍ଗପାଇଁ ସେ ହିଁ ଥିଲେ ସବୁଠୁ ଭରସାଯୋଗ୍ୟ ପରାମର୍ଶଦାତା। ସାହିତ୍ୟର ଇତିହାସକୁ ସେ କେବଳ ତଥ୍ୟ ଓ ତତ୍ତ୍ୱର ଆଧାରରେ ଆଲୋଚନା କରି ନାହାନ୍ତି, ଇତିହାସ ଭିତରେ ସମୟର ସ୍ପନ୍ଦନ ଏବଂ ଲୋକ ଜୀବନର ପ୍ରବାହକୁ ସେ ଚିହ୍ନିଛନ୍ତି। ତଥ୍ୟ ଭିତରେ ସମୟର ପ୍ରାଣଶକ୍ତିକୁ ଆବିଷ୍କାର କରିବାର କଳାବକ କୌଶଳ ତାଙ୍କ ସମାଲୋଚନା ଧାରାକୁ ଏକ ବିକଳ୍ପ ଭାବରେ ପ୍ରତିଷ୍ଠା ଦେଇଥିଲା। ମଉସାଙ୍କର କୌଣସି କାମ ସହଜରେ ସରେ ନାହିଁ। ପୂର୍ଣତା ଆଡ଼କୁ ନିରନ୍ତର ଯାତ୍ରା କଲାବେଳେ ସେ ପ୍ରାୟତଃ ଅସନ୍ତୁଷ୍ଟ। ସେଥିପାଇଁ ତାଙ୍କର ଶତାଧିକ ଆଲୋଚନା ଏଯାଏଁ ଅସଙ୍କଳିତ। ସେସବୁ ଆଜି ସଙ୍କଳିତ ହେବା ଜରୁରୀ। ତାଙ୍କର ବୌଦ୍ଧିକ ଯାତ୍ରା ସରି ନାହିଁ। ଜୀବନରେ ମରଣ ଏକ ସ୍ୱାଭାବିକ ପୂର୍ଣ୍ଣଚ୍ଛେଦ, ହେଲେ ଦେବେନ୍ଦ୍ର କୁମାର ଦାଶଙ୍କ ବୌଦ୍ଧିକ ଜୀବନ ଏକ ନିରନ୍ତର ପ୍ରବହମାନତା।

*ସୋନପୁର*

ମୀନକେତନ ପଶାୟତ

# ପ୍ରିୟ ଦେବେନ୍ଦ୍ର ସାର୍

ଓଡ଼ିଆ ଭାଷା ସାହିତ୍ୟର ଅନନ୍ୟ ଅସ୍ମିତା ପାଇଁ ଏ ପବିତ୍ର ନାମ ହିଁ ଯଥେଷ୍ଟ ।ଦେବେନ୍ଦ୍ର ବାବୁ ଓଡ଼ିଆ ଭାଷା ସାହିତ୍ୟର ଏକ ଚଳନ୍ତି ସାହିତ୍ୟ ଭାଷା କୋଷ । ଜଣେ ଛାତ୍ରବତ୍ସଳ ଦକ୍ଷ ଅଧ୍ୟାପକ, ବହୁ ଦୃଷ୍ଟିସମ୍ପନ୍ନ ଗବେଷକ, ପ୍ରତିଭାଦୀପ୍ତ ସମାଲୋଚକ, ସୁସଂଗଠକ, ପ୍ରାବନ୍ଧିକ, ସ୍ତମ୍ଭକାର ଏବଂ ଜଣେ ପ୍ରଚଣ୍ଡ ପାଠକ ଭାବରେ ସେ ଅବିସ୍ମରଣୀୟ । ତାଙ୍କ ନିର୍ଭୀକ ତଥା ସୁଚିନ୍ତିତ ତାଙ୍କ ବକ୍ତବ୍ୟ ଶ୍ରୋତା ମଣ୍ଡଳୀଙ୍କୁ ବିମୁଗ୍ଧ ତାଙ୍କ ଆକସ୍ମିକ ବିୟୋଗ ଏ ଜାତି, ଏ ମାଟି ପାଇଁ ଅପୁରଣୀୟ କ୍ଷତି । ସମସ୍ତଙ୍କ ପ୍ରିୟ ଓ ପ୍ରଣମ୍ୟ ଦେବେନ୍ଦ୍ରଙ୍କ ଅବର୍ତ୍ତମାନ ରାଉରକେଲା ଠାରୁ ରାଜଧାନୀ ପର୍ଯ୍ୟନ୍ତ ଏକ ଶୋକାକୁଳ ପରିବେଶ ସୃଷ୍ଟି କରିଛି । ଏହା ତାଙ୍କ ଲୋକପ୍ରିୟତାର ଅନନ୍ୟ ଉଦାହରଣ ।

ପ୍ରିୟ ସାରଙ୍କ ସହିତ  କାମ କରିଛି, କିଛି ଆଳାପ, କିଛି ସାନିଧ୍ୟ ପାଇଛି- ଏହା ମୋର ସୌଭାଗ୍ୟ । ଏମିତି ଏକ ଦୁଃଖଦ ସମୟରେ ଆମେ ମ୍ୟୁନିସିପାଲ ମହାବିଦ୍ୟାଳୟ, ରାଉରକେଲା, ରସାୟନ ବିଜ୍ଞାନ ବିଭାଗ,ପରିବାରର ସଦସ୍ୟ ଗଣ ତାଙ୍କୁ ବିନମ୍ର ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ । ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କରୁଛୁ ତାଙ୍କ ଅମର ଆତ୍ମାର ସଦ୍‌ଗତି ହେଉ । ପ୍ରଭୁ ଜଗନ୍ନାଥ ତାଙ୍କ ପରିବାର ବର୍ଗଙ୍କୁ ଶକ୍ତି, ସାହସ ଓ ଧୈର୍ଯ୍ୟ ପ୍ରଦାନ କରନ୍ତୁ ।

*ରାଉରକେଲା*

ରମେଶ ଚନ୍ଦ୍ର ବେହେରା

# ସେଇ ଡେଙ୍ଗା ମଣିଷ

ଶ୍ରଦ୍ଧା ଓ ସମ୍ମାନର ଉତ୍ତୁଙ୍ଗ ଆସ୍ପଦ ସେଇ ବରେଣ୍ୟଙ୍କୁ ଏତେଶୀଘ୍ର ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ ହେବ, ଏକଥା ଆଦୌ ବିଶ୍ୱାସ କରିହେଉନି। ଚିନ୍ତନ, କଥନ, ସର୍ଜନ ଓ ସଙ୍ଗଠନର ଏକ ମଧୁର ସମନ୍ୱୟ ହେଉଛନ୍ତି ଜ୍ଞାନତପସ୍ୱୀ ଦେବେନ୍ଦ୍ର। ତାଙ୍କ ଅବର୍ତ୍ତମାନରେ ଓଡ଼ିଆ ସାରସ୍ୱତ ଜଗତର ଯେଉଁ କ୍ଷତି ହେଲା, ତାହା କଳ୍ପନାତୀତ। ଭାଷା ସାହିତ୍ୟର ଏହି ଅଧ୍ୟାପକ ନିଜର ଅଧ୍ୟୟନ ଓ ଅଧ୍ୟବସାୟ ବଳରେ ସଫଳତାର ଶୀର୍ଷକୁ ଉଠି ସମସ୍ତଙ୍କୁ ଚକିତ କରିଥିଲେ। ସେ ବାତ୍ସଲ୍ୟ ଓ ବାଗ୍ମିତାରେ ଛାତ୍ରଛାତ୍ରୀମାନଙ୍କୁ ଯେମିତି ବଶ କରିଥିଲେ, ସଦାଚାର ଓ ସୁହୃଦପଣରେ ସମସାମୟିକମାନଙ୍କୁ ସେମିତି ସମ୍ମୋହିତ କରିଥିଲେ।

କପଟଶୂନ୍ୟ ଚେହେରା। ବ୍ୟବହାରରେ ଆପଣାର କରିନେବାର ସକଳ ସାମର୍ଥ୍ୟ ତାଙ୍କଠାରେ ଠୁଳ। ସେଥିପାଇଁ ସେ ସଭିଙ୍କର ଆଦରଣୀୟ। ତାଙ୍କ ପରିଚୟର କାଳଜୟୀ କ୍ଷେତ୍ରଟି ହେଉଛି ଗବେଷଣା। ଓଡ଼ିଆ ସାହିତ୍ୟର ଯେଉଁସବୁ ଦିଗ ଉପରେ ସେ ଲେଖନୀ ଚାଳନା କରିଛନ୍ତି, ତାହାର ନିର୍ଣ୍ଣାୟକ ନିଆରାପଣ ଅପ୍ରତିଦ୍ୱନ୍ଦ୍ୱୀ ଦସ୍ତାବିଜ ଭାବରେ ଉଭାହୋଇ ରହିଛି। ଚର୍ଚ୍ଚା-ଆଲୋଚନା-ସମ୍ପାଦନା- ପ୍ରତ୍ୟେକ କ୍ଷେତ୍ରରେ ଗବେଷକର ଗଭୀର ଅନ୍ୱେଷା। 'ପ୍ରଫେସର ଦେବେନ୍ଦ୍ର କୁମାର ଦାସ' ବୋଲି ସଶ୍ରଦ୍ଧ ସମ୍ବୋଧନ ତାଙ୍କ ପ୍ରଜ୍ଞା ଓ ପାଣ୍ଡିତ୍ୟ ପ୍ରତି ସମ୍ମାନର ପ୍ରତୀକ ମାତ୍ର। କାରଣ ଏମିତିରେ ଦେଖିଲେ, ସେ ଆନୁଷ୍ଠାନିକ ଭାବରେ 'ପ୍ରଫେସର' ପଦବୀ ଅଳଙ୍କୃତ କରିନଥିଲେ। ତାଙ୍କ ବ୍ୟକ୍ତିତ୍ୱର ସାନ୍ନିଧ ପାଇବା ଏକ ସୌଭାଗ୍ୟ। ମୁଁ ଗତ ଚାରିବର୍ଷ ହେଲା ତାଙ୍କ ସହ ପ୍ରତ୍ୟକ୍ଷ ଭାବରେ ଜଡ଼ିତ ହୋଇ ବହୁକଥା ଶିଖିଛି ଓ ଅଙ୍ଗେ ନିଭେଇଛି। ସେ ତ ସଙ୍ଗଠନ ମଣିଷ। ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନ (ନି.ଭା.ଓ.ଅ.ସ)ର ସଭାପତି ଭାବରେ ତାଙ୍କର କାର୍ଯ୍ୟଶୈଳୀ ଥିଲା ଅତୁଳନୀୟ। ଛେଳି ଓ ବାଘକୁ ଗୋଟିଏ ତୁଠରେ ପାଣି ପିଆଇବାର ଯାଦୁ ସେ ଜାଣିଥିଲେ। ସକଳ ମତ

ମତାନ୍ତରକୁ ଏଡ଼େଇଯାଇ ସମ୍ମେଳନ କାର୍ଯ୍ୟକୁ ସେ ଖୁବ୍ ଆଗକୁ ବଢ଼େଇ ପାରିଥିଲେ। ସଙ୍ଗଠନ ଚଳେଇବାପାଇଁ ଅନେକ ସମୟରେ ଅର୍ଥର ଆବଶ୍ୟକତା ପଡ଼େ। ସେ ବିନା ଦ୍ୱିଧାରେ ବହୁସ୍ଥଳରେ ନିଜ ହାତରୁ ଖର୍ଚ୍ଚ ମେଣ୍ଟେଇ ଦେଇଥିଲେ।

ଆଉ ଗୋଟେ ଦିଗ ଜଳଜଳ ଦିଶେ। ସେ କାହା ବିରୋଧରେ ଅଭିଯୋଗ-ଅପନିନ୍ଦା କରିବାର ମୁଁ ଦେଖିନି। ଯେତେ ଅସୁବିଧା ଯିଏ ସୃଷ୍ଟି କରୁ, ତାହାକୁ ଏକ ସକରାତ୍ମକ ଢଙ୍ଗରେ ସେ ଏଡ଼େଇଯାଇ ସମାଧାନର ରାସ୍ତା ବାହାର କରିଦେଉଥିଲେ। ସେଇ ଜ୍ଞାନଗର୍ଭା ଓ ଉଚ୍ଚମନା ଡେଙ୍ଗା ମଣିଷର ଅଭାବ ଅତ୍ୟନ୍ତ ପୀଡ଼ାଦାୟକ।

ଭୁବନେଶ୍ୱର



ଶ୍ୟାମସୁନ୍ଦର ଧର

# ପ୍ରିୟତମ ବନ୍ଧୁକୁ ହରାଇଲି

ତା୨୫.୮.୨୦୨୨ଦିନ ମୁଁ ଜମନକିରା କଲେଜର ଗଙ୍ଗାଧର ଜୟନ୍ତୀକୁ ଯାଇଥାଏ। ବକ୍ତବ୍ୟ ଦେଉଥିବା ସମୟରେ ମୋର ମୋବାଇଲଟି ରିଂ ହେଲା । ସାଙ୍ଗେ ସାଙ୍ଗେ କାଟିଦେଲି। ବକ୍ତବ୍ୟ ସରିଲା ପରେ କଲବ୍ୟାକ୍ କଲି। ଦେବେନ୍ଦ୍ର ଦାଶ ଚାଲିଗଲେ ବୋଲି ଦାରୁଣ ଖବରଟି ଦେଲେ କବି ପ୍ରଦୀପ ପଣ୍ଡା। ଖବରଟି ଶୁଣି ପାଦତଳୁ ମାଟି ଖସିପଡ଼ିଲା, ଆପେ ଆପେ ଲୁହରେ ଆଖି ଜକେଇଗଲା। ସଭା ସରିବା ପରେ ଖାଇବାର ବ୍ୟବସ୍ଥା ହୋଇଥାଏ, ଖାଇବାକୁ ଇଚ୍ଛା ହେଲାନାହିଁ। ସମ୍ବଲପୁର ଫେରିବା ବାଟରେ ମୋବାଇଲ ବାହାରକରି ଦେବେନ୍ଦ୍ର ଓ ମୁଁ ବସିଥିବା ଫଟୋଟିକୁ ଦେଖି କାନ୍ଦିକାନ୍ଦି ଫେରିଲି। ଘରକୁ ଆସି ମୋ ସ୍ତ୍ରୀଙ୍କୁ ଖବରଟି କହିବାରୁ ସେ ମଧ୍ୟ ଗଭୀର ଦୁଃଖ ପ୍ରକାଶକଲେ।

ଦେବେନ୍ଦ୍ର ଥିଲେ ମୋର ସହପାଠୀ। ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ୧୯୭୫ରେ ଆମେ ଏକାସାଙ୍ଗରେ ଏମ୍.ଏ. ପାଶ୍ କରିଥିଲୁ। ମୁଁ ସମ୍ବଲପୁର ଗୋପାଳଜୀ ମଠରେ ରହି ପଢୁଥାଏ। ଦେବେନ୍ଦ୍ର ରହୁଥିଲେ ସମ୍ବଲପୁରର ଜଣେ ପ୍ରତିଷ୍ଠିତ ବ୍ୟକ୍ତି, ଦୁର୍ଗାନନ୍ଦଙ୍କ ଘରେ। ତାଙ୍କ ସହିତ ମୋର ବନ୍ଧୁତ୍ୱ କ୍ରମେ ନିବିଡ଼ ହେଲା ଆମ ବିଭାଗର ପାଠଚକ୍ରରୁ। ମୁଁ ଆମ ପାଠଚକ୍ରର ସମ୍ପାଦକ ଥାଏ। ସାର୍‌ମାନଙ୍କ ପରାମର୍ଶକ୍ରମେ ଆମ ବିଭାଗରେ ଉଚ୍ଚମାନର ପାଠଚକ୍ରଗୁଡ଼ିକ ଅନୁଷ୍ଠିତ ହେଉଥିଲା। ଦେବେନ୍ଦ୍ର ଥିଲେ ଜଣେ ପ୍ରଚଣ୍ଡ ପ୍ରତିଭାଧର ଛାତ୍ର। ପାଠଚକ୍ରରେ ଆଲୋଚ୍ୟ ବିଷୟ ଉପରେ ଅକାଟ୍ୟ ଯୁକ୍ତି ବାଢୁଥିଲେ ଓ ସାର୍‌ମାନଙ୍କ ପ୍ରିୟପାତ୍ର ହୋଇପାରିଥିଲେ। ଛାତ୍ର ଥିବା ସମୟରୁ ସମାଲୋଚନା ସାହିତ୍ୟ ଦିଗ ଉପରେ ନିଜର ଦକ୍ଷତା ପ୍ରତିପାଦନ କରିପାରିଥିଲେ। ୧୯୭୫ରେ ସେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇଥିଲେ। କ୍ରମେ ନିଷ୍ଠାପର ସାହିତ୍ୟସାଧନା ଓ ନିଜର ଅଧ୍ୟବସାୟ ବଳରେ ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିଲେ।

ଦେବେନ୍ଦ୍ରଙ୍କୁ ମୁଁ 'ଦେବେନ୍' ବୋଲି ଡାକୁଥିଲି। କେବେ ମୋ ମୁହଁରୁ ଦେବେନ୍ଦ୍ର ବୋଲି ଶୁଣିଦେଲେ- କହୁଥିଲେ ବାରୁ, ତୁମ ମୁହଁରୁ ଦେବେନ୍ ଡାକଟି ମୋତେ ବହୁତ ଭଲଲାଗେ। ଦେବେନ୍ଦ୍ର ସାଙ୍ଗରେ ମୋର ଶେଷ ସାକ୍ଷାତ ତା୨୯.୫.୨୦୨୨ଦିନ, ଓଡ଼ିଶା ସାଂସ୍କୃତିକ ସମାଜକୁ ସାହିତ୍ୟ ଏକାଡ଼େମୀ ତରଫରୁ ହୋଇଥିବା ଗୋବିନ୍ଦଚନ୍ଦ୍ର ଉଦ୍‌ଗାତାଙ୍କ ଶତବାର୍ଷିକୀ ଜୟନ୍ତୀରେ ସେ ମୁଖ୍ୟବକ୍ତା ହୋଇ ଆସିଥିଲେ। ସଭା ହେବା ପୂର୍ବରୁ ଆମେ ଦୁଇବନ୍ଧୁ ବସି କଥା ହେବା ସମୟରେ କହିଥିଲେ, ଭାଇ, ଦେହ ଭଲ ରହୁନାହିଁ। ପେଟର ସମସ୍ୟା ଅଛି, ଝାଡ଼ା ନିୟନ୍ତ୍ରଣ ହେଉନାହିଁ। ଏବେ କିଛିଦିନ ହେଲା ଟିକିଏ ନିୟନ୍ତ୍ରଣକୁ ଆସିଛି, ଆଉ ସ୍ତ୍ରୀଙ୍କ ଦୁଇଆଣ୍ଠୁ ରିପ୍ଲେସ୍ ହେବ। ଆମେ ଦୁଇବନ୍ଧୁ ଦୁଃଖସୁଖ ହେବା ସମୟରେ ଦୀପ୍ତିରଞ୍ଜନ ସେଠ କହିଲେ- ଆଜ୍ଞା, ଆପଣ ଦୁଇବନ୍ଧୁ ବସିଛନ୍ତି, ଫଟୋଟିଏ ନେବି। ସେ ତାଙ୍କ ମୋବାଇଲରେ ଆମ ଦୁଇଜଣଙ୍କ ଫଟୋ ନେଲେ। ସଭା ସରିବା ପରେ ମୋ ଘରକୁ ଆସିବା ପାଇଁ ନିମନ୍ତ୍ରଣ କଲି । ସେ କହିଲେ, ଭାଇ, ଏଥର ମୁଁ ତୁମ ଘରକୁ ଯାଇପାରିବି ନାହିଁ। ମୁଁ ଏବେ ଭୁବନେଶ୍ୱର ଫେରିବି।

ଦେବେନ୍ଦ୍ର ଯେବେ ସମ୍ବଲପୁର ଆସୁଥିଲେ । ମୋତେ ଆଗରୁ ଫୋନ୍‌ରେ ଜଣାଉ ଦେଉଥିଲେ। ଥରେ ଗୋଟିଏ ସଭାକୁ ଆସିଥିଲେ । ମୁଁ ତାଙ୍କୁ ମୋ ଘରକୁ ନେଇଆସିଲି। ରାତିରେ ତାଙ୍କୁ ଜ୍ୱର ଧରିଲା, ତାଙ୍କ ମୁଣ୍ଡରେ ଓଦାକନା ଦେଉଥାଏ। ଶରୀରର ଉତ୍ତାପ କମିଲା। ରାତିସାରା ଗୋଡ଼ହାତ ଘଷୁଥାଏ। ସକାଳୁ ଯେମିତି ଟିକିଏ ସୁସ୍ଥ ଅନୁଭବ କଲେ, ନିତ୍ୟକର୍ମ ସାରି କହିଲେ, ଚାଲ ସମଲେଶ୍ୱରୀଙ୍କୁ ଦର୍ଶନ କରି ଯିବା। ଦୁହେଁ ମନ୍ଦିର ଗଲୁ। ଦର୍ଶନ ସାରି ଘରକୁ ଫେରି ଜଳଖିଆ କଲାପରେ ମୋତେ କହିଲେ, ଚାଲ ମୋତେ ୟୁନିଭର୍ସିଟିରେ ଛାଡ଼ିଦେବ। ମୋର କାମ ସାରି ମୁଁ ଚାଲିଯିବି। ଦେବେନ୍ଦ୍ର ସହିତ ମୋର ବହୁ ମଧୁର ସ୍ମୃତି ଜଡ଼ିତ। ଏବେ ସବୁ ଗୋଟିଗୋଟି ହୋଇ ମନେପଡୁଛି। ତାଙ୍କ ବିୟୋଗରେ ମୁଁ ଗଭୀର ଭାବରେ ମର୍ମାହତ। ତାଙ୍କର ଅମର ଆତ୍ମାପ୍ରତି ମୁଁ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ସହିତ ଶୋକସନ୍ତପ୍ତ ପରିବାର ପ୍ରତି ସମବେଦନା ଜ୍ଞାପନ କରୁଛି।

*ବଡ଼ବଜାର, ସମ୍ବଲପୁର*

## ଦୀପ୍ତିରଞ୍ଜନ ପଟ୍ଟନାୟକ

# ଛାଇ

ଇଂରାଜୀ ଅଧ୍ୟାପକ ଓ ଫକୀରମୋହନ କଲେଜର ଭୂତପୂର୍ବ ଅଧ୍ୟକ୍ଷ ଶ୍ରୀଯୁକ୍ତ ସୁବାସ ପାତ୍ରଙ୍କୁ ଫୋନ୍ କରି ତାଙ୍କ ବନ୍ଧୁ ଶ୍ରୀଯୁକ୍ତ ରବିନାରାୟଣ ଦାସ କହିଲେ, 'ଫକୀରମୋହନଙ୍କ ସାହିତ୍ୟର ଦୁଇ ପ୍ରମୁଖ ଗବେଷକ ଶ୍ରୀଯୁକ୍ତ ଦୀପ୍ତିରଞ୍ଜନ ପଟ୍ଟନାୟକ ଓ ତାଙ୍କ ଗୁରୁ ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶ ବାଲେଶ୍ୱରରେ ଭାଷଣ ଦେବାର ଅଛି, ତୁମେ ନିଶ୍ଚୟ ଯିବ ଓ ବକ୍ତବ୍ୟର ସାରାଂଶ ମୋତେ ଜଣେଇବ।' ଏକ ଦୁରାରୋଗ୍ୟ ବ୍ୟାଧିରେ କିଛିବର୍ଷ ହେଲା ଆକ୍ରାନ୍ତ ହୋଇପଡ଼ିବାରୁ ପୂର୍ବତନ ଇଂରାଜୀ ଅଧ୍ୟାପକ ଶ୍ରୀଯୁକ୍ତ ରବିନାରାୟଣ ଦାସଙ୍କୁ ଅନେକ ସମୟରେ ଭାରତର ବିଭିନ୍ନ ହସ୍ପିଟାଲରେ ଚିକିତ୍ସିତ ହେବାକୁ ପଡ଼େ। ସେତେବେଳକୁ ସିଏ ଭୁବନେଶ୍ୱରରେ ରହି ଚିକିତ୍ସିତ ହେଉଥା'ନ୍ତି। ତେଣୁ ନିଜେ ସମ୍ମାନରେ ଉପସ୍ଥିତ ରହିବାର ସମ୍ଭାବନା ନଥିଲା। ଏମିତିରେ ଶ୍ରୀଯୁକ୍ତ ପାତ୍ର ବୌଦ୍ଧିକ ଉତ୍ସବଗୁଡ଼ିକ ପ୍ରତି ଉନ୍ମୁଖ। ଆଉ ଫକୀରମୋହନ ସମ୍ମାନରେ ନିଶ୍ଚୟ ଯୋଗ ଦେଇଥାନ୍ତେ। କିନ୍ତୁ ବନ୍ଧୁଙ୍କର ଆଗ୍ରହ ତାଙ୍କୁ ସମଗ୍ର ଆଲୋଚନାକୁ ସଂକ୍ଷେପରେ ଲିପିବଦ୍ଧ କରିବାକୁ ପ୍ରରୋଚିତ କରିଥିଲା।

ଯେଉଁ ସମ୍ମାନ କଥା କୁହାଯାଉଛି, ତାହା ହେଲା ଅଗଷ୍ଟ ୧୩, ୨୦୨୨ରିଖରେ କେନ୍ଦ୍ର ସାହିତ୍ୟ ଅକାଦେମି ଓ ଫକୀରମୋହନ ସାହିତ୍ୟ ପରିଷଦର ମିଳିତ ଆନୁକୂଲ୍ୟରେ ଆୟୋଜିତ ଫକୀରମୋହନଙ୍କ ସାହିତ୍ୟରେ ଇତିହାସ ସଚେତନତା ସମ୍ପର୍କିତ ଆଲୋଚନାଚକ୍ର। କେତେକ କାରଣରୁ ଉପର୍ଯ୍ୟୁକ୍ତ ଦୁଇ ସାହିତ୍ୟପ୍ରେମୀ ବନ୍ଧୁଙ୍କ କଥୋପକଥନ ଢେର୍ ଗୁରୁତ୍ୱପୂର୍ଣ୍ଣ। ପ୍ରଥମ କଥା ହେଲା, ଦୁରାରୋଗ୍ୟ ବ୍ୟାଧି ପୀଡ଼ିତ ଜଣେ ସାହିତ୍ୟପ୍ରେମୀଙ୍କ ଜ୍ଞାନପିପାସା ଆଉ ତାକୁ ସମ୍ମାନ ଜଣାଇ ବନ୍ଧୁଙ୍କର କୃଚ୍ଛ୍ରସାଧନା। ଢୋଲ ପିଟି, ସମ୍ବାଦପତ୍ରଗୁଡ଼ିକର ରାହାଧରି ନିଜକୁ ଚିନ୍ତକ, ଗବେଷକ ବୋଲି ଜାହିର କରି ପୁରସ୍କାର ବଣ୍ଟା ବିପଣୀମାନଙ୍କରେ ଆଗଧାଡ଼ିରେ ବିଜ୍ଞପିତ କରିବାକୁ ଆତୁର ତାଠୁ ଢେର୍ ଅଲଗା ଏ ଅନୁରକ୍ତି। ଏଇ ଅଲଗା

ଅନୁରକ୍ତିପାଇଁ ଶ୍ରୀଯୁକ୍ତ ଦେବେନ୍ଦ୍ର କୁମାର ଦାଶଙ୍କୁ ମୁଁ ଗୁରୁ ଭାବରେ ଏକତରଫା ଭାବରେ ଗ୍ରହଣ କରିଥିଲି, ଯଦିଓ ସିଏ ମୋତେ 'ବାବୁ' ଓ 'ଆପଣ' ସମ୍ବୋଧନ କରୁଥିଲେ ଓ ଜଣେ ବନ୍ଧୁ ହିସାବରେ ଗଣୁଥିଲେ। ଘରେ ତାଙ୍କର ଏକକୋଟି ଟଙ୍କାରୁ ଊର୍ଦ୍ଧ୍ୱ ମୂଲ୍ୟର ବହି ମୋ ପାଇଁ ଉପଲବ୍ଧ ଥିଲା। ପ୍ରଚାର ନକରି ପୁରସ୍କାର ବୈକଲ୍ୟ ପ୍ରଦର୍ଶନ ନ କରି ନିରୋଳାରେ ଆତ୍ମସୁଖପାଇଁ ଜ୍ଞାନ ଓ ସାହିତ୍ୟ ସାଧନା କରାଯାଇପାରେ, ଶ୍ରୀଯୁକ୍ତ ଦାଶଙ୍କ ଜୀବନ ଓ ଆଚରଣ ତାହାର ଦୃଷ୍ଟାନ୍ତ।

ତେବେ ଦୁଇଟି ବିଷୟରେ ମୋର ଓ ତାଙ୍କର ମତାନୈକ୍ୟ ରହିଆସିଥିଲା। ପ୍ରଥମଟି ହେଲା, ସିଏ ତଥାପି ଶ୍ରୁତି-ସଂସ୍କୃତିରେ ବିଶ୍ୱାସ କରୁଥିଲେ। ନିଜର ଜ୍ଞାନ ଓ ଚେତନା-ନିଷ୍କର୍ଷଗୁଡ଼ିକୁ ସିଏ ବନ୍ଧୁମହଲରେ ଓ ସଭାଗୁଡ଼ିକରେ ବାଣ୍ଟିଦେବାକୁ ଉଚିତ ମନେକରୁଥିଲେ। ମୁଁ ତାଙ୍କର ବିଦ୍‌ବତ୍ତାକୁ ଲିଖନ-ସଂସ୍କୃତିର ପରମ୍ପରାରେ ଅନ୍ତର୍ଭୂତ କରିବାକୁ ତାଙ୍କୁ ବାଧ କରୁଥିଲି। Orality ରୁ Literacy Culture କୁ ତାଙ୍କୁ ଆଣିବାକୁ ମୁଁ ପୂରାପୂରି ସଫଳ ହୋଇପାରିଲିନାହିଁ। ଦ୍ୱିତୀୟ ମତାନୈକ୍ୟ ହେଲା, ସ୍ୱାସ୍ଥ୍ୟ ସମ୍ପର୍କିତ। ମୋର ଯୋଗ, ଆସନ, ପ୍ରାଣାୟାମ ଓ ସୂର୍ଯ୍ୟୋଦୟ ପୂର୍ବରୁ ଶଯ୍ୟାତ୍ୟାଗ ଇତ୍ୟାଦିକୁ ସିଏ ଉପହାସ କରୁଥିଲେ। କହୁଥିଲେ, ଅଧିକ ଭୋଗ କରିବାପାଇଁ ଆପଣମାନଙ୍କର ଇଏ କୃଚ୍ଛ୍ରସାଧନା। ମୋ ଜୀବନର ବିଭିନ୍ନ ପରସ୍ପରବିରୋଧୀ ଅଭ୍ୟାସ ତାଙ୍କ ଉପହାସ ପାଇଁ ଖୋରାକ ଯୋଗାଉଥିଲା। ସିଏ କିନ୍ତୁ ସାଧାରଣ ସ୍ୱାସ୍ଥ୍ୟରକ୍ଷାର କୌଣସି ନିୟମ ମାନୁନଥିଲେ। ଉପରବର୍ଣ୍ଣିତ ସମ୍ମାନ ଆଗରୁ ଅଗଷ୍ଟ ୧୦ ଓ ୧୧ରେ ଦେବେନ୍ଦ୍ର ଭାଇନା ପାଇଥିଲେ ସମ୍ବଲପୁର, ଗଙ୍ଗାଧରଙ୍କ ସାହିତ୍ୟ ଉପରେ ଭାଷଣ ଦେବାକୁ। ପୁଣି ୧୨ତାରିଖରେ ବାଲେଶ୍ୱର ଯିବାକୁ ଥିବାରୁ ମୁଁ କହିଲି, ନା ଆପଣ ଏକୁଟିଆ ଯିବା ଉଚିତ୍ ହବନି। ସମୟର ଏତେ ଅଳ୍ପ ବ୍ୟବଧାନ ଭିତରେ ଆପଣ ଏତେଗୁଡ଼ାଏ ମଞ୍ଚରେ ଭାଷଣ ଦବା ଅପେକ୍ଷା ଆପଣଙ୍କର ବକ୍ତବ୍ୟକୁ ଡାକିଦିଅନ୍ତୁ, ମୁଁ ଲେଖିନଉଚି। ଏହାର ସ୍ଥାୟିତ୍ୱ ଦୀର୍ଘ ହେବ। କିନ୍ତୁ ଭାଇନା ତାଙ୍କ ଜିଦ୍‌ରେ ଅଟଳ ଥିଲେ। ତେଣୁ ମୁଁ କହିଲି, ମୁଁ ବି ଯିବି ଆପଣଙ୍କ ସାଙ୍ଗେ, ନିମନ୍ତ୍ରିତ ନ ହେଲେ ବି। ଭାଇନା ବାଧହୋଇ ଏକଥା ଡକ୍ଟର ବିଜୟାନନ୍ଦ ସିଂ, କେନ୍ଦ୍ର ସାହିତ୍ୟ ଅକାଦେମୀର ଓଡ଼ିଆ ବୋର୍ଡ଼ର ଆବାହକଙ୍କୁ ଜଣେଇଲେ। ଡକ୍ଟର ସିଂ ଶେଷ ମୁହୂର୍ତ୍ତରେ ମୋତେ ଅତିଥି ଭାବରେ ନିମନ୍ତ୍ରଣ କଲେ। ଆମେ ୧୨ତାରିଖ ଦିନବେଳା ଭୁବନେଶ୍ୱରରୁ ବାହାରି ସଞ୍ଜ ୬ଟାରେ ବାଲେଶ୍ୱରରେ ପହଞ୍ଚିଲୁ। ଗଙ୍ଗାଧର ଜୟନ୍ତୀ ପାଳନ ଉତ୍ସବରେ ସଞ୍ଜ ୭ଟାରେ ଯୋଗଦେଇ ରାତି ୯.୩୦ ସୁଦ୍ଧା ହୋଟେଲକୁ ଫେରିଲୁ। ପରଦିନ ସକାଳୁ ସେ ଭାଇନା ନିଜ ଭାଷଣ ପାଇଁ ପଏଣ୍ଟ ସବୁ ନୋଟ୍ କରୁଥା'ନ୍ତି। ରାତିରେ ଜ୍ୱର ଆସିଥିବା ଯୋଗୁଁ ମୁଁ ଘୋଡ଼େଇହୋଇ ବିଛଣାରେ ପଡ଼ିଥାଏ। ପାରାସିଟାମଲ୍ ଖାଇ କୌଣସିମତେ ସମ୍ମାନରେ ନିଜର ବକ୍ତବ୍ୟ ଦେଲି। ଆମେ ସନ୍ଧ୍ୟାବେଳେ

ବାହାରି ରାତି ୯.୩୦ସୁଦ୍ଧା ଭୁବନେଶ୍ୱର ଫେରିଆସିଲୁ । ଦୁଇଦିନ ପରେ ଯେତେବେଳେ ମୁଁ ସୁସ୍ଥ ଅନୁଭବ କଲି, ତାଙ୍କୁ ଫୋନ୍ କଲି । ଆମେ ଏକାଠି ଫକୀରମୋହନଙ୍କ ସମ୍ପର୍କରେ ଗୋଟିଏ ଗବେଷଣାତ୍ମକ ପୁସ୍ତକ ଲେଖୁଥିଲୁ ଗତ କେତେଦିନ ଧରି । ସେ ମୋତେ ଆସିବାକୁ ମନାକଲେ । କହିଲେ, ଦେହ ଭଲ ଲାଗୁନାହିଁ । ଦେହ ଟିକେ ଭଲ ଲାଗିଲେ, କାମ ଆରମ୍ଭକରିବା । ମୋ ଅଧୀନରେ ଗବେଷଣା କରୁଥିବା ଜଣେ ଛାତ୍ରର ଥେସିସ୍ ଜମାହେବାର ଥିବାରୁ ମୁଁ ବାଧହୋଇ କାମ ଅଧାରୁ ଚାଲିଆସିଲି ବନାରସ । ବନାରସ ପହଞ୍ଚିବାର ପରଦିନ ଜାଣିଲି, ଦେବେନ୍ଦ୍ର ଭାଇନାଙ୍କ ସହ ମିଶି ଗବେଷଣାତ୍ମକ କାମ କରିବାର ଦିନସବୁ ସରିଯାଇଛି ।

ଖବର ପାଇବା ପରେ ଯେଉଁ ସୂଚନା ମୋତେ ଘାରିଥିଲା, ସେଥିରୁ ମୁକ୍ତି ପାଇବାକୁ ମୁଁ ବନ୍ଧୁ ସୁବାସ ପାତ୍ରଙ୍କ ହ୍ୱାଟ୍‌ସଆପ୍ ମେସେଜ୍ ଦେଖୁଥିଲି । ରବିବାବୁଙ୍କ ଅନୁରୋଧରେ ସମ୍ମାନରେ ପ୍ରଦତ୍ତ ଭାଷଣଗୁଡ଼ିକର ସାରାଂଶ ସଂଗ୍ରହକରି ସିଏ ତାଙ୍କର ବନ୍ଧୁ କଥାକାର ଶ୍ୟାମାପ୍ରସାଦ ଚୌଧୁରୀଙ୍କ ପାଖକୁ ପଠେଇଥିଲେ । କେତେକ ମନ୍ତବ୍ୟ ମଧ୍ୟରେ ଯାହା ପ୍ରଣିଧାନଯୋଗ୍ୟ ଦେବେନ୍ଦ୍ରବାବୁ ଅନେକ କଥା କହିବାକୁ ଚାହୁଁଥିଲେ; କିନ୍ତୁ ତାଙ୍କ ସମୟ ଏତେ ସଙ୍କୁଚିତ କରିଦିଆଗଲା ଯେ, ଆମେ ତାଙ୍କ ଜ୍ଞାନଭଣ୍ଡାରରୁ କାଣିଚାଏ ମାତ୍ର ଉପଭୋଗ କରିପାରିଲୁ । ଭାଗ୍ୟକୁ ପରେ ପରେ ଦୀପ୍ତିରଞ୍ଜନଙ୍କ ଭାଷଣ ଥିଲା । ମଣିଷ ଦେବେନ୍ଦ୍ର ଭାଇନାଙ୍କ ଛାଇ ଭଳି ଦୀପ୍ତିରଞ୍ଜନ ତାଙ୍କ ଜ୍ଞାନର କିଛିକିଛି ପ୍ରତିଧ୍ୱନି ଭରଣା କରିପାରିଥିବା ଭଳି ମନେହେଲା ।

ଶ୍ରୀଯୁକ୍ତ ପାତ୍ରଙ୍କ ମନ୍ତବ୍ୟଗୁଡ଼ିକ ଅନେକ ଆହ୍ୱାନରେ ପରିପୂର୍ଣ୍ଣ । ଦେବେନ୍ଦ୍ର କୁମାର ଦାଶଙ୍କୁ ବିଧି ଏକ ସଙ୍କୁଚିତ ସମୟ ଦେଇଥିଲା । ସେହି ସୀମିତ ସମୟ ମଧ୍ୟରେ ତାଙ୍କର ସମଗ୍ର ତପସ୍ୟାକୁ ସିଏ ଜନକଲ୍ୟାଣ ଉଦ୍ଦେଶ୍ୟରେ ଉତ୍ସର୍ଗ କରିପାରିଲେନି ବୋଧହୁଏ । ତାଙ୍କର ଛାଇମାନେ ଏ ଅସମ୍ପୂର୍ଣ୍ଣ କାମକୁ ସମ୍ପନ୍ନ କରିପାରନ୍ତେ କି !

*ବନାରସ*

### ମନୋଜ ମେହେର

# ଅମଡ଼ାବାଟର ପଥିକ

ସାମ୍ପ୍ରତିକ କାଳର ଓଡ଼ିଆ ସାହିତ୍ୟ ସମାଲୋଚନା, ବିଶେଷକରି ଗବେଷଣା-ସମ୍ପାଦନା କ୍ଷେତ୍ରରେ ଶ୍ରୀ ଦେବେନ୍ଦ୍ର କୁମାର ଦାଶଙ୍କୁ ମୁଁ ତୀର୍ଥ ଜ୍ଞାନକରେ। ଫକୀର ମୋହନ ସେନାପତିଙ୍କ ଗଳ୍ପ ଓ ରଚନା ସମୂହର ନିର୍ଭୁଲ ସମ୍ପାଦନା, ଉତ୍କଳ ସମ୍ମିଳନୀ ସମ୍ପର୍କିତ ତଥ୍ୟ ପ୍ରଦାନ, ରାଧାନାଥ ରାୟ-ନଗେନ୍ଦ୍ରବାଳା ପ୍ରସଙ୍ଗକୁ ପ୍ରାମାଣିକ କରିବାକୁ ଯାଇ ଯେପରି ଶ୍ରମ ସ୍ୱୀକାର କରିବା ସହ ନିଜର ଅନ୍ୱେଷାବୋଧ ଓ ଧୀ-ଧୀଷଣାର ପରିଚୟ ଦେଇ ଐତିହାସିକ ତ୍ରୁଟିକୁ ସଂଶୋଧନ କରିବାରେ ସମର୍ଥ ହୋଇଛନ୍ତି, ସେଥିପାଇଁ ସେ ସର୍ବଦା ଓଡ଼ିଆ ଜାତି ପାଖରେ ନମସ୍ୟ ହୋଇରହିବେ।

ଶ୍ରୀ ଦାଶଙ୍କ ସହିତ ମୋର ପ୍ରଥମ ସାକ୍ଷାତ ହୋଇଥିଲା କଟକସ୍ଥିତ ଶ୍ରୀରାମଚନ୍ଦ୍ର ଭବନରେ ଗବେଷଣାମୂଳକ ପତ୍ରିକା 'ଏଷଣା'ର ଏକ ସନ୍ଦର୍ଭ ପାଠ ସମ୍ମାନରେ। ସେତେବେଳେ ମୁଁ ଛାତ୍ର ଥିଲି। ଉତ୍କଳ ସମ୍ମିଳନୀ ସମ୍ପର୍କିତ ଭିତ୍ତିପ୍ରବନ୍ଧ ପାଠ କରିଥିଲେ। ସେଥିରେ ସେ ଯେପରି ଭାବେ ତଥ୍ୟ ଉପସ୍ଥାପନ କରିବା ସହ ପ୍ରତ୍ୟେକ ଘଟଣାକୁ ପୁଙ୍ଖାନୁପୁଙ୍ଖ ଓ ବୈଜ୍ଞାନିକ ପଦ୍ଧତିରେ ବିଶ୍ଳେଷଣ କରି ଚାଲିଥିଲେ, ମୋତେ ଅଭିଭୂତ କରିଥିଲା। ସଭା ସାଙ୍ଗ ହେବା ପରେ ସ୍ୱତଃ ତାଙ୍କ ଆଡ଼କୁ ଟାଣିହୋଇ ନିଜର ପରିଚୟ ଦେଇଥିଲି। ସେ ଆଗ୍ରହର ସହିତ ମୋତେ ସ୍ନେହାନୁରାଗରେ ସ୍ୱାଗତ କଲେ। ହେଲେ ଏକ କବିତା ପାଠୋତ୍ସବରେ ସେ ମୋର 'ପକ୍ଷୀ' କବିତା ଶୁଣିବା ପରଠୁ ତାଙ୍କ ସହିତ ସାରସ୍ୱତ ବନ୍ଧନରେ ବାନ୍ଧି ହୋଇଗଲି, ତାହା ତାଙ୍କ ଜୀବଦ୍ଦଶା ପର୍ଯ୍ୟନ୍ତ ବଳବତ୍ତର ରହିଥିଲା। ଜଣେ ଉଦୀୟମାନ କବି ଭାବେ ମୋତେ ସେ ଖୁବ୍ ଶ୍ରଦ୍ଧା କରୁଥିଲେ। କବିତାରେ ନିଜପଣ ଓ ନୂଆପଣକୁ ପ୍ରତିପାଦନ ସହ ସାମାଜିକ ଅଙ୍ଗୀକାରବଦ୍ଧତାକୁ ପାଥେୟ କରି ଦର୍ପଣାନୁଭୂତିରେ ଆଲୁଅର ଅଭିଯାତ୍ରୀ ହେବାକୁ ଆହ୍ୱାନ ଦେଉଥିଲେ। ସର୍ଜନଶୀଳତାରେ ଚମତ୍କାର ରସ ପାଇଁ ଆବାହନ କରୁଥିଲେ।

'ପ୍ରଜାତନ୍ତ୍ର' ଓ 'ସମାଜ'ରେ କାମ କରିବା ପରେ ବିଭିନ୍ନ ଭାବେ ତାଙ୍କ ସହିତ ଯୋଡ଼ି ହୋଇଗଲି । ସମାଜର ବାର୍ଷିକ ସଂଖ୍ୟା 'ଶ୍ରାଦ୍ଧସଂଖ୍ୟା'ର ସଂଯୋଜନା ଦାୟିତ୍ୱ ମୋତେ କିଛିବର୍ଷ ପାଇଁ ମିଳିଥିଲା । ସେହି ସମୟରେ ତାଙ୍କ ସହିତ ଅଧିକ ଘନିଷ୍ଠ ହୋଇଥିଲି ଏବଂ ପ୍ରତିବର୍ଷ ଲେଖା ଦେଉଥିଲେ । ୨୦୨୦ ମସିହାରେ ମୋର ସ୍ୱତନ୍ତ୍ର ଅନୁରାଗକ୍ରମେ ସେ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଏବଂ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ମଧ୍ୟରେ ହୋଇଥିବା ପତ୍ରାଳାପର ଅନୁବାଦ କରିବା ସହ ତର୍ଜମା କରିଥିଲେ । ମୋ ଜାଣିବାରେ ନେତାଜୀ-ଗୋପବନ୍ଧୁ ପତ୍ରାଳାପର ତର୍ଜମା କରିବାରେ ଦେବେନ୍ଦ୍ରବାବୁ ହେଉଛନ୍ତି ପ୍ରଥମ ବ୍ୟକ୍ତି । ଏପରି ସତ୍‌ସାହସ ଦେବେନ୍ଦ୍ରବାବୁଙ୍କ ପରି ଅମଡ଼ାବାଟର ପଥିକମାନେ ହିଁ କରିପାରିବେ । ସେ ଛୋଟଛୋଟ ଘଟଣାକୁ ଗୁରୁତ୍ୱର ସହିତ ବିଚାର କରୁଥିଲେ । ତଥ୍ୟଗତ ତ୍ରୁଟି ଯେପରି ନ ରହିବ, ସେ ଅସାଧାରଣ ଭାବେ ଯତ୍ନଶୀଳ ଥିଲେ । ଯେତେ ଜଟିଳ ଓ ଅଡୁଆସୂତାରେ ଛନ୍ଦି ହୋଇଥିବା ପ୍ରସଙ୍ଗ ହେଉନା କାହିଁକି ତାହାର ନିଷ୍କର୍ଷ ବା ସମାଧାନର ସୂତ୍ର ନ ବାହାରିବା ପର୍ଯ୍ୟନ୍ତ କ୍ଷାନ୍ତ ହେଉ ନଥିଲେ, ଅସୀମ ଧୈର୍ଯ୍ୟ ରଖି କାମ କରୁଥିଲେ । ସମୟ ସଚେତନତା ଓ ପ୍ରତିବଦ୍ଧତା ଥିଲା ତାଙ୍କର ଧ୍ୟେୟ । କୌଣସି ପରିସ୍ଥିତିରେ ମିଛ ପ୍ରତିଶ୍ରୁତି ଦେଉନଥିଲେ । ଏଠାରେ ତାଙ୍କ ବଚନର ଅବତାରଣା ନକରି ରହିପାରୁନାହିଁ । ତାହା ହେଲା, ନେତାଜୀ-ଗୋପବନ୍ଧୁ ଚିଠିର ଅନୁବାଦ ଏକ ନିର୍ଦ୍ଦିଷ୍ଟ ତାରିଖରେ ଦେବା ପାଇଁ ମୋତେ ପ୍ରତିଶ୍ରୁତି ଦେଇଥିଲେ । ଦୁର୍ଯୋଗକୁ ସେ ଭିତରେ ତାଙ୍କ ଭାଇଙ୍କ ଦେହାନ୍ତ ହେଲା । ହେଲେ ବଚନବଦ୍ଧ ଦେବେନ୍ଦ୍ରବାବୁ ଭାଇଙ୍କ ଶବସତ୍କାର କରି ଆସିବା ପରେ ସେହିଦିନ ହିଁ ପାଠ ପଠାଇ ଯେପରି ନିର୍ଭୁଲ ଛପା ହେବ, ଫୋନ୍ ଯୋଗେ ପ୍ରାୟ ଏକ ଘଣ୍ଟାରୁ ଊର୍ଦ୍ଧ୍ୱକାଳ ମୋତେ ମାର୍ଗଦର୍ଶନ କରିଥିଲେ ।

ଦେବେନ୍ଦ୍ରବାବୁଙ୍କ ଅନ୍ୱେଷାବୋଧର ପଟାନ୍ତର ନାହିଁ । ସେ ବିରଳ ପ୍ରସଙ୍ଗ ଉପରେ ହାତ ଦେଉଥିଲେ ଏବଂ ଅତ୍ୟନ୍ତ ନିଷ୍ଠାପର ଓ ଅଙ୍ଗୀକାରବଦ୍ଧ ହୋଇ କାମ କରୁଥିଲେ । ସମୟ ସହିତ ଆଦୌ ବୁଝାମଣା କରୁନଥିଲେ । ପୂର୍ଣ୍ଣାଙ୍ଗ ରୂପ ଦେବାରେ କୃଚ୍ଛ୍ରସାଧନା କରିବାକୁ ପଡ଼ିଲେ ପଶ୍ଚାତପଦ ହେଉନଥିଲେ । ତାଙ୍କ ପରି ବିରଳ ଗବେଷକଙ୍କ ସାନ୍ନିଧ୍ୟ ଏବଂ ସ୍ନେହାଶିଷ ଲାଭ କରିବା ମୋପାଇଁ ଅମୃତଫଳ ସଦୃଶ । ତାଙ୍କର ଉପସ୍ଥିତି, ପ୍ରେରଣା, ସଦିଚ୍ଛା ମୋର ସାରସ୍ୱତ ଜୀବନକୁ ବହୁ ଭାବେ ପ୍ରଭାବିତ, ଶୁଦ୍ଧପୂତ ଓ ପୁଷ୍କଳ କରିଛି ।

*'ସମାଜ', କଟକ*

## ସନ୍ତୋଷ ରଥ

# ସେ ଏକ ବତିଘର

ଓଡ଼ିଆ ସମାଲୋଚନା ସାହିତ୍ୟରେ ଦେବେନ୍ଦ୍ର ସାର୍ ମୋପାଇଁ ଏକ ଦିଗ୍‌ଦର୍ଶକ ବତୀଘର। ଶ୍ରେଣୀଗୃହରେ ସେ କେବେ ମୋର ଶିକ୍ଷକ ନ ଥିଲେ, କିନ୍ତୁ ଗତ ୪୩ବର୍ଷ (୧୯୭୯-୨୦୨୨)ର ତାଙ୍କ ସହ ପ୍ରତିଟି ସାକ୍ଷାତ ଓ ଫୋନ୍ ବାର୍ତ୍ତାଳାପ ମୋ ପାଇଁ ଅଧିକ ଶିକ୍ଷାପ୍ରଦ ଥିଲା। ୧୯୭୯ ଜୁଲାଇ ମାସର ଶେଷ ରବିବାର ଦିନ ଶାନ୍ତିନିକେତନର ବିଦ୍ୟାଭବନ ହଷ୍ଟେଲରେ ତାଙ୍କ ସହ ଘଟିଥିଲା ମୋର ପ୍ରଥମ ସାକ୍ଷାତ। ବଲାଙ୍ଗୀରରୁ ଯାଇ ଅପରିଚିତ ସ୍ଥାନରେ ତ୍ରସ୍ତ ଏକ ତରୁଣଙ୍କୁ ସେଦିନ ସେ ହାତଧରି ତାଙ୍କ କୋଠରିକୁ ଡାକି ନେଇଥିଲେ। ପଶ୍ଚିମ ଓଡ଼ିଶା ପ୍ରତି ଦେବେନ୍ଦ୍ର ସାର୍‌ଙ୍କର ଥିଲା ଶ୍ରଦ୍ଧା, ସଦିଚ୍ଛା ଓ ସମ୍ମାନ। ସେ ନିଜକୁ ସବୁବେଳେ ଚିହ୍ନିତ କରୁଥିଲେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ଛାତ୍ରରୂପେ। ପ୍ରଫେସର ମଧୁସୂଦନ ପତି, ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା, ବାଳକୃଷ୍ଣ ଶତପଥୀ, ତାପସ ଚକ୍ରବର୍ତ୍ତୀ, ରବି ମିଶ୍ର ପରି ଅଗଣିତ ପଶ୍ଚିମ ଓଡ଼ିଶାର ଶିକ୍ଷକ ସମାଜକୁ ସେ ପ୍ରାଣଭରି ଭଲପାଉଥିଲେ। ଶୁଣିଛି, ତାଙ୍କ ଛାତ୍ରଦିନର ସଂଘର୍ଷ କାହାଣୀରୁ ସେ ଗୋଟେ କଥା ଶିଖିଥିଲେ "ଜଣେ ଉଦ୍ୟମୀ ଛାତ୍ରକୁ ସାହାଯ୍ୟ ଓ ସହଯୋଗ କରିବା ଜଣେ ଶିକ୍ଷକର ପବିତ୍ରତମ କାର୍ଯ୍ୟ।" ସେଦିନ ବିଦ୍ୟାଭବନର କୋଠରିରେ ମତେ ମନ୍ତ୍ର ପରି କହିଥିବା କେତୋଟି ଶବ୍ଦ ଏବେ ବି ମନେଅଛି। ତମେ ନିଶ୍ଚୟ ଭଲକରିବ ମୋର ବିଶ୍ୱାସ ହେଉଛି। କିନ୍ତୁ ଗୋଟେ କାମରେ କ୍ଲାସ୍ ଆରମ୍ଭ ହେବା ପୂର୍ବରୁ ଏଇ ଦଶ-ପନ୍ଦରଦିନ ଭିତରେ ବଙ୍ଗଳା ଶିଖିନିଅ। ରବୀନ୍ଦ୍ର ନାଥଙ୍କ ବ୍ରିଷ୍ଟିପଡ଼େ ଟାପୁର ଟାପୁର ଓ ନନ୍ଦକିଶୋର ବଳଙ୍କ ନବବର୍ଷା ଭାବନା କବିତାର ତୁଳନା କରି ଦେଖ। ମୋ ହାତକୁ ବଢ଼େଇ ଦେଇଥିଲେ ଗୋଟେ ବର୍ଣ୍ଣପରିଚୟ ଓ ରବୀନ୍ଦ୍ର ନାଥଙ୍କ କଡ଼ି ଓ କୋମଳ ବହି। ତାହା ହିଁ ଥିଲା ମୋର ପ୍ରଥମ ସେମିଷ୍ଟାରର ପାଠଚକ୍ର ପ୍ରବନ୍ଧ ଓ ପ୍ରଥମ ଗବେଷଣା।

ଦେବେନ୍ଦ୍ର ସାର୍ ସେ ଦିନରୁ ଆଜିଯାଏଁ ମୋର ପ୍ରତିଟି ଦ୍ୱିଧା ଓ ଶଙ୍କାର ସମାଧାନର ଉତ୍ସ। ବଲାଙ୍ଗୀରରେ କେବଳ ମୁଁ ସୀମିତ ରହିଗଲି, ଏଇ ଅବସୋସ ସବୁବେଳେ ତାଙ୍କର ଥିଲା। ମୋର ଯୋଗ୍ୟତା କଥା ପଛରେ ଥାଉ, ତାଙ୍କର ଶ୍ରଦ୍ଧା ଓ ପରାମର୍ଶରେ ମତେ ଓଡ଼ିଶାର ବିଭିନ୍ନ ପାଠଚକ୍ର ଓ ସାହିତ୍ୟିକ ସଙ୍ଗଠନରେ ଯୋଗଦେବାପାଇଁ ସେ ଉତ୍ସାହିତ କରୁଥିଲେ। ମୁଁ ଯେତେବେଳେ ଅସ୍ୱୀକୃତ ପରମ୍ପରା (୨୦୦୭) ଲେଖିଲି, ହସିହସି କହିଥିଲେ 'ବହୁତ ସ୍ୱୀକୃତି ପାଇଲଣି, କାହିଁକି ନିଜକୁ ଅସ୍ୱୀକୃତ ମନେକରୁଛ ?'

ବୃତ୍ତିଗତ ସାକ୍ଷାତକାରରେ ବିଫଳ ହେବା ମୋର ଏକ ବିଡ଼ମ୍ବନା। ସମ୍ବଲପୁର ବିଶ୍ୱବିଦ୍ୟାଳୟର ପ୍ରାଧ୍ୟାପକ ସାକ୍ଷାତକାରରେ ବିଫଳ ହେବା ପରେ ମୁଁ କ୍ରୋଧ ଓ ହତାଶାରେ ଓଡ଼ିଆ ସାହିତ୍ୟ ଚର୍ଚ୍ଚାଠାରୁ ଦୂରେଇ ଯିବାପାଇଁ ଦୃଢ଼ପ୍ରତିଜ୍ଞ ଥିଲି। ଦିନେ ରାତିରେ ଦେବେନ୍ଦ୍ର ସାର୍ ଫୋନ୍ କଲେ, ଗୋଦାବରୀଶ ମହାପାତ୍ରଙ୍କ ଗଳ୍ପ ସମ୍ପର୍କରେ କଲଚରାଲ ଏକାଡ଼େମୀ, ରାଉରକେଲାରେ କହିବା ପାଇଁ କାଲି ତମକୁ ଫୋନ୍ କରିବେ, ମନାକରିବ ନାହିଁ।' ସେଥର ରାଉରକେଲାରେ ମୋ ଥେସିସ୍ ସେ ଦେଖିଲେ। ବାକଟିନ ଉପରେ ଦୁଇଖଣ୍ଡ ବହିର ଫଟୋକପି ଦେଲେ ଓ କହିଲେ ତମ ଥେସିସ୍‌କୁ ଏଇ ଥିଓରି ଅନୁସାରେ ଆଉଥରେ ଲେଖିପାର। ମୋ ପିଲାମାନଙ୍କୁ ଇଂରାଜୀ ମାଧ୍ୟମ ବିଦ୍ୟାଳୟରେ ପଢ଼େଇବାପାଇଁ ପରୋକ୍ଷରେ ଇଙ୍ଗିତ କରିଥିଲେ ଏବଂ କହିଥିଲେ 'ନିକଟ ଭବିଷ୍ୟତରେ ଜାତି, ଲିଙ୍ଗ, ଅଞ୍ଚଳ, ଅର୍ଥ, ପ୍ରତିପତ୍ତିଦ୍ୱାରା ଆସକ୍ତ ନ ହୋଇ ଓଡ଼ିଆ ବିଷୟ ବିଶାରଦମାନେ ଯୋଗ୍ୟପ୍ରାର୍ଥୀଙ୍କୁ ନିର୍ବାଚିତ କରିବେ ଏ ବିଶ୍ୱାସ ମୋର ନାହିଁ।' ଏ ଉକ୍ତି ଭିତରେ ତାଙ୍କ ତିକ୍ତ ଜୀବନାନୁଭୂତି ସଂଗୋପିତ ଥିଲା। ସେଦିନ ତାଙ୍କ କଣ୍ଠସ୍ୱରରୁ ମୁଁ ବାସ୍ତବତା ଠଉରେଇ ନେଇଥିଲି।

ଯେତେବେଳେ ମୁଁ ଗଙ୍ଗାଧର ମେହେର ବିଶ୍ୱବିଦ୍ୟାଳୟରେ ଭୀମଭୋଇ ଚେୟାର ପ୍ରଫେସର ଭାବରେ ମନୋନୀତ ହେଲି, ମୋ ଛଡ଼ା ଆଉ ଦୁଇଜଣ ଅଧିକ ଖୁସି ହୋଇଥିଲେ ଦେବେନ୍ଦ୍ର ସାର୍ ଓ ଗୌରାଙ୍ଗ ଭାଇ। ପ୍ରାୟ ଅଠରମାସ ସେଠି ରହିବା ପରେ କରୋନାକାଳୀନ କର୍ମଶୂନ୍ୟତା ଓ ଗବେଷଣାତ୍ମକ ପରିମଣ୍ଡଳ ଅଭାବରୁ ମୁଁ ଯେତେବେଳେ ତାହା ପରିତ୍ୟାଗ କରିବା ପାଇଁ ସ୍ଥିର କଲି, ଦେବେନ୍ଦ୍ର ସାର୍ କହିଲେ- "ଆଉ କିଛିଦିନ ଅପେକ୍ଷା କରିପାରିବ ନାହିଁ ? ଯଦି ତମକୁ ଭଲ ଲାଗୁନାହିଁ, ଭୁବନେଶ୍ୱର ଚାଲିଆସ। ଏଠି କରିବାପାଇଁ ଅନେକ କାମ ବାକିଅଛି। ନିଜ ସ୍ୱାଭିମାନକୁ ବନ୍ଧାପକେଇ ଅର୍ଥପାଇଁ ତ ତମେ ସେଠିକି ଯାଇନାହିଁ ?"

ଗତ ୧୬ତାରିଖ ଦିନ ୧୧.୩୦ବେଳେ ଶେଷଥର ପାଇଁ ତାଙ୍କୁ ଭେଟିଥିଲ, ଲେକ୍ ଭ୍ୟୁ ବାସଭବନରେ। ଈଷତ୍ ଜର, କାଶ ଓ ତଳିପେଟରେ ଯନ୍ତ୍ରଣାପାଇଁ ବେଳେବେଳେ ସେ ଚୁପ୍ ରହିଯାଉଥିଲେ ଅଳ୍ପସମୟ ପାଇଁ। ତଥାପି ଦୁଇଘଣ୍ଟାରୁ ଊର୍ଦ୍ଧ୍ୱକାଳ ଶୋଇରହି ସେ ମୋ ସହ କଥାବାର୍ତ୍ତା କରିଥିଲେ ଓଡ଼ିଆ ସମାଲୋଚନା ସାହିତ୍ୟର ଭାଗ୍ୟ ସମ୍ପର୍କରେ, ନିଖିଳ

ଓଡ଼ିଆ ଅଧ୍ୟାପକ ସମ୍ମିଳନୀ ସମ୍ପର୍କରେ, ସର୍ବୋପରି ତାଙ୍କ ସ୍ୱପ୍ନର ଦୁଇଟି ପ୍ରକଳ୍ପ ସମ୍ପର୍କରେ। ପ୍ରଥମଟି ହେଲା, ଓଡ଼ିଆରେ ଅନୁବାଦତତ୍ତ୍ୱ ସମ୍ପର୍କରେ ଏକ ତାତ୍ତ୍ୱିକ ପୁସ୍ତକ ରଚନା। ସେ ସମ୍ପର୍କରେ ଡକ୍ଟର କୃଷ୍ଣଚନ୍ଦ୍ର ପ୍ରଧାନ ସହ ସେ ଅଳ୍ପ କିଛି ଆଲୋଚନା କରିଛନ୍ତି। ପୁଣି ମତେ ପଚାରିଥିଲେ 'ଚର୍ଯ୍ୟାରୁ ଓଡ଼ିଆ ଭାଷାର ଉତ୍ସ ଖୋଜିବା ତମର କେତେଦୂର ଗଲା ? ମୁଁ ଚାହୁଁଛି ଓଡ଼ିଆରେ ସାହିତ୍ୟିକ ଗବେଷଣା ସମ୍ପର୍କୀୟ ଏକ ପଦ୍ଧତିବଦ୍ଧ ଗବେଷଣା ଗ୍ରନ୍ଥ ଆମେ ମିଶି ଲେଖିବା। ତମେ ଏମିତି ଅଳସୁଆ ହେଲେ ଆଉ ଚଳିବନାହିଁ।'

ମୁଁ ହସିଦେଇଥିଲି ଓ କଥାକୁ ବାଆଁରେଇବାପାଇଁ ତାଙ୍କ ସତୁରିବର୍ଷ ପୂର୍ତ୍ତି ଉପଲକ୍ଷେ କ୍ଷୀରୋଦ ଓ ମୁଁ ଯୋଜନା କରିଥିବା ଅଭିନନ୍ଦନ ଗ୍ରନ୍ଥ ସମ୍ପର୍କରେ ଆଲୋଚନା କରିବା ଆରମ୍ଭ କଲି। ସେ ଅଳ୍ପ ହସିଦେଇ କହିଲେ, ଏବେ ତ ଏକଥା ଥାଉ, ମୁଁ ଆଗ ଭଲହୁଏ। ତା'ପରେ ମୁଁ ଦୁଇଥର ଫୋନ୍‌ରେ କଥା ହୋଇଛି। ପ୍ରତିଥର କଣ୍ଠସ୍ୱର କ୍ଷୀଣରୁ କ୍ଷୀଣତର ମନେହୋଇଛି। ୨୫ତାରିଖ ସକାଳେ ବାଙ୍ଗାଲୋରରୁ ଗୀତା ମାଡ଼ାମ କାନ୍ଦି କାନ୍ଦି ଯେତେବେଳେ କହିଲେ- ସନ୍ତୋଷ ବାବୁ ସାର୍‌ଙ୍କୁ ଆଇସିୟୁକୁ ନେଇଗଲେ କାହିଁକି ? ଟିକିଏ ଆଗରୁ ଜ୍ୱାଇଁ ଆପୋଲୋ ହସ୍ପିଟାଲର ଡକ୍ଟରଙ୍କ ସହ କଥାହୋଇ ବୁଝିଥିଲେ, ସାର୍‌ଙ୍କ ଅବସ୍ଥା ସଙ୍କଟାପନ୍ନ। ଆଜି ଆହୁରି ରକ୍ତ ଦରକାର ପଡ଼ିପାରେ। ଔଷଧ କିପରି ପ୍ରତିକ୍ରିୟା କରୁଛି ଆଜି ଅପରାହ୍ନ ପର୍ଯ୍ୟନ୍ତ ଜଣାପଡ଼ିଯିବ। ମୁଁ ତାଙ୍କ ବଡ଼ପୁଅ ଚିନୁଙ୍କୁ ଅପରାହ୍ନରେ ଗଲେ ସାର୍‌ଙ୍କୁ ସାକ୍ଷାତ କରିହେବକି ବୋଲି ପଚାରିଲି। ୧୨.୧୫ ବେଳକୁ ଅଶ୍ରୁଳ କଣ୍ଠରେ ପ୍ରଦୀପ୍ତ ପଣ୍ଡା ଫୋନ୍ କରି କହିଲେ 'ଦେବେନ୍ଦ୍ର ଭାଇ ଚାଲିଗଲେ ?'

ଦେବେନ୍ଦ୍ର ସାର୍ ଚିର ଅବିନୀତ, ବେସାଲିସ ସଂଗ୍ରାମୀ। ଏମିତି ଜୀବନ ସଂଗ୍ରାମରେ ସହଜରେ ହାରିଯିବେ, ସେ ବି ଜାଣିନଥିଲେ। ଆମେ କେହି ବୁଝିନଥିଲୁ, ଏତେ ଗ୍ରନ୍ଥର ଅଧ୍ୟୟନରୁ, ମଣିଷ କାଳ ହାତରେ ଏକ କ୍ରୀଡ଼ନକ ମାତ୍ର। ମୁଁ ଏବେ ବି ବୁଝିପାରେନି, ଏତେ ଜୀବନ୍ତ ଆବର୍ଜନାମାନଙ୍କୁ ନିଜ କୋଳରେ ରଖିଥିବା ଏ ମମତାମୟୀ ପୃଥିବୀ, କେମିତି ବିଦାୟ ଦେଲା, ସଦା ହିତକାମୀ ଜଣେ ସତ୍‌ହୃଦୟବାନ୍ ମଣିଷଙ୍କୁ।

*ବଲାଙ୍ଗୀର*

ଲଲାଟେନ୍ଦୁ ଦାସ ମହାପାତ୍ର

# ମୁଁ ଦିଗହରା ହୋଇଯାଇଛି

ମୋର ଅତି ପ୍ରିୟ ବନ୍ଧୁ ତଥା ଅଗ୍ରଜ ତୂଲ୍ୟ ଦେବେନ୍ଦ୍ର କୁମାର ଦାଶ ଯେ ହଠାତ ଏପରି ଭାବରେ ଚାଲିଯିବେ, ଏ କଥା କିଏ ବା ଚିନ୍ତା କରିଥିଲା। ମୋ ଜାଣିବାରେ ତାଙ୍କର କୌଣସି ବେମାରି ନଥିଲା। ଯାହା ବା ଥିଲା, ତାହା କେବଳ ସାମାନ୍ୟ ବାର୍ଦ୍ଧକ୍ୟ ଜନିତ। ସେ ବହୁତ ପରିଶ୍ରମ କରିପାରୁଥିଲେ। ମୋ ଠାରୁ ପ୍ରାୟ ୭/୮ ବର୍ଷ ବଡ଼। କିନ୍ତୁ ମୋ ଅପେକ୍ଷା ଯଥେଷ୍ଟ ଅଧିକ ପରିଶ୍ରମ କରିପାରୁଥିଲେ। ପରିଶ୍ରମ ମାନେ କେବଳ ଯେ ଅଧ୍ୟୟନ ଓ ଗବେଷଣା ତାହା ନୁହେଁ, ପରିବାର ପ୍ରତି କର୍ତ୍ତବ୍ୟ ଓ ସାମାଜିକ ପ୍ରତିବଦ୍ଧତା, କେଉଁଥିରେ ଊଣା ନ ଥିଲା। ସବୁବେଳେ ହସ ହସ ମୁହଁରେ ରହୁଥାନ୍ତି। ମନ ମଧ୍ୟରେ କେବେ କ୍ଷୋଭ ବା ଅନୁଶୋଚନା ଆସିଲେ, କାହାରି ଆଗରେ ସହଜରେ ପ୍ରକାଶ କରନ୍ତି ନାହିଁ।

ତାଙ୍କ ସହିତ ମୋର ଘନିଷ୍ଠତା ବଢ଼ିଥିଲା ୨୦୦୧ ମସିହାରେ। ସେସମୟରେ ଝଙ୍କାରରେ ଫକୀରମୋହନଙ୍କୁ ନେଇ ବିର୍ତକ ଆରମ୍ଭ ହୋଇଥିଲା। ମୁଁ ଫକୀରମୋହନଙ୍କ ସମ୍ବନ୍ଧରେ ଅଭିଲେଖାଗାରରୁ ତଥ୍ୟ ସଂଗ୍ରହ କରିଥିଲେ ମଧ୍ୟ ସମସାମୟିକ ପତ୍ରିକା ଓ ସମ୍ବାଦପତ୍ରରୁ ତଥ୍ୟସଂଗ୍ରହର ସୂତ୍ର ଜାଣି ନଥିଲି। ମଝିରେ ରାଉରକେଲା ଯାଇଥିବା ବେଳେ ତାଙ୍କ ପାଖରେ ଗଚ୍ଛିତ ସମସ୍ତ ତଥ୍ୟର ଫଟୋକପି ସେ ମୋତେ ଯୋଗାଇଦେଲେ। ପ୍ରବନ୍ଧ ଲେଖିବାରେ ସେଗୁଡ଼ିକ ମୋର ବହୁତ କାମରେ ଆସିଲା। ସେ ବିତର୍କ ସରିଗଲା। କିନ୍ତୁ ତାଗିଦ ତାଙ୍କ ଠାରୁ ସରିଲା ନାହିଁ। ସେ ଯେତେବେଳେ ମୋତେ ତଥ୍ୟ ଯୋଗାଇଥିଲେ, ସେତେବେଳେ ସେ ଗୋଟଏ ସର୍ତ୍ତ ରଖିଥିଲେ ଯେ, ମୁଁ ଯେପରି ମୋର କାମ ଆଗକୁ ବଢାଏ। ସେତେବେଳେ ଝଙ୍କାରରେ ପ୍ରକାଶିତ ମୋର ଦୁଇଟି ପ୍ରବନ୍ଧକୁ ସେ ପ୍ରଶଂସା କରିଥିଲେ। କିନ୍ତୁ ବିତର୍କ ଶେଷହେବା ପରେ ଫକୀରମୋହନଙ୍କ ଉପରେ ମୋର କାର୍ଯ୍ୟ ଯେମିତି ଶେଷ ନ ହୁଏ ତାହାହିଁ ସେ ଚାହୁଁଥିଲେ। ସେତେବେଳେ ସେ ମଧ୍ୟ ଫକୀରମୋହନଙ୍କ ଆତ୍ମଜୀବନୀ ଉପରେ କାମ କରୁଥାନ୍ତି ଓ ସେଥିପାଇଁ ଅଭିଲେଖାଗାରରୁ ମୁଁ ମଧ୍ୟ ସାମାନ୍ୟ

ତଥ୍ୟ ତାଙ୍କୁ ଯୋଗାଇଥିଲି । ତେଣୁ ଆଗକୁ ଫକୀରମୋହନ ସମ୍ବନ୍ଧୀୟ ଆହୁରି ଅନେକ କାମ ଯେମିତି ମୁଁ କରେ ତାହାହିଁ ତାଙ୍କର ଇଚ୍ଛା । ସେଥିପାଇଁ ସେ ମୋତେ ତାଗିଦ କରୁଥାନ୍ତି ।

କେଇମାସ ପରେ ଦିନେ ସେ ମୋତେ କହିଲେ, ଜନ ବିମ୍ସଙ୍କ ଓଡ଼ିଶା ପ୍ରତି ଯାହା ଅବଦାନ ରହିଛି ତାର ଉଚିତ ମୂଲ୍ୟାୟନ ଏ ପର୍ଯ୍ୟନ୍ତ ହୋଇନାହିଁ । ସେ କାମ ମୋତେ କରିବାକୁ ସେ ଏକ ପ୍ରକାର ଆଦେଶ ଦେଲେ । ସେ କାମ କେମିତି ହେବ ତାହାର ମଧ୍ୟ ସମ୍ୟକ ସୂଚନା ଦେଇ ପ୍ରଗତି ଉତ୍କଳ ସଂଘକୁ ପ୍ରକାଶନ କରିବା ପାଇଁ ଅନୁରୋଧ କଲାରୁ ସେମାନେ ସଂଗେ ସଂଗେ ରାଜି ହୋଇଗଲେ । କିଛି ତଥ୍ୟ ସେ ମୋତେ ଯୋଗାଇଦେଲେ, ବାକି ତଥ୍ୟ ମୁଁ ରାଜ୍ୟ ଅଭିଲେଖାଗାର, ଉତ୍କଳ ସାହିତ୍ୟ ସମାଜ, ନେସନାଲ ଲାଇବ୍ରେରୀ, କଲିକତା ଓ ଏସିଆଟିକ ସୋସାଇଟୀରୁ ସଂଗ୍ରହ କରିଥିଲି । ପ୍ରାୟ ଦୁଇବର୍ଷ ପରିଶ୍ରମ କଲା ପରେ John Beames and Orissa ବହିଟି ୧୯୦୭ ମସିହାରେ ପ୍ରକାଶିତ ହେଲା । ଏହି ବହି ମୋତେ ସାରସ୍ୱତ ଜଗତରେ ବେଶ ପ୍ରତିଷ୍ଠା କରାଇଥିଲା, ଯାହାର ଶ୍ରେୟ ମୁଁ ଦେବେନ୍ଦ୍ର ବାବୁଙ୍କୁ ଦେବି । ଏହା ପରଠାରୁ ମଧ୍ୟ ତାଙ୍କ ସହିତ ମୋର ସାରସ୍ୱତ ସମ୍ପର୍କ ବରାବର ରହିଥିଲା । ସେ ରାଉରକେଲାର ପ୍ରାୟ ସମସ୍ତ ଅନୁଷ୍ଠାନ ସହିତ ଜଡ଼ିତ ଥାନ୍ତି । କେବେ କୌଣସି ସେମିନାର ଆୟୋଜନ କଲେ ମୋତେ ଅବଶ୍ୟ ଆମନ୍ତ୍ରଣ କରନ୍ତି । ତାଙ୍କ ସହିତ ସାରସ୍ୱତ ସଂପର୍କରେ ଯେଉଁ ଆନନ୍ଦ ଥିଲା, ତାହା ଆଉ କେବେ ମୋ ପକ୍ଷରେ ଆସିବ ନାହିଁ ।

ପରିଶେଷରେ ସେ ଯେବେ ରାଉରକେଲା ଛାଡ଼ି ଭୁବନେଶ୍ୱର ଚାଲିଆସିଲେ, ଏଠାରେ ତାଙ୍କ ବାକି କାମ ଶୀଘ୍ର ଓ ସୁରୁଖୁରୁରେ ହୋଇଯିବ ବୋଲି ସମସ୍ତେ ମନେ କରୁଥିଲେ । କିନ୍ତୁ କାହିଁକି କେଜାଣି ସେ ଏକପ୍ରକାର ଖୁସି ହୋଇପାରୁ ନଥିଲେ । ସେଥିପାଇଁ ସେ ସ୍ୱେଚ୍ଛାକୃତ ଅବସର ନେଲେ ଓ ରେଭେନ୍ସା ବିଶ୍ୱବିଦ୍ୟାଳୟରେ ଭିଜିଟିଂ ପ୍ରଫେସର ହିସାବରେ ଦାଇତ୍ୱ ତୁଲାଇ କିଛିଟା ଆତ୍ମସନ୍ତୋଷ ଲାଭ କରୁଥିଲେ । ପ୍ରାୟ ପାଂଚ ବର୍ଷତଳେ ଫକୀରମୋହନ ସ୍ମୃତି ସଂସଦର ସଭାପତି ଗୋପୀନାଥ ମହାନ୍ତି ତାଙ୍କୁ ଫକୀରମୋହନ ସଂବଧରେ ଗୋଟାଏ ଗବେଷଣାତ୍ମକ ପୁସ୍ତକ ରଚନା କରିବାକୁ ଅନୁରୋଧ କରିବାରୁ ସେ ତାକୁ ମୋ ସହଯୋଗିତାରେ ଏ କାମ କରିବାକୁ ପ୍ରସ୍ତାବ ଦେଲେ । ଗୋପୀବାବୁ ମଧ୍ୟ ଏଥିରେ ରାଜି ହେଲେ ଓ ପ୍ରାୟ ବର୍ଷେ କାମ କରି ଆମ ଦୁଇ ଜଣଙ୍କ ସଂପାଦନାରେ ପ୍ରକାଶ ପାଇଲା 'କୀରମୋହନ ଚର୍ଚ୍ଚା-ଆଦିପର୍ବ' ର ପ୍ରଥମ ଖଣ୍ଡ । ଏହାର ଦ୍ୱିତୀୟ ଓ ତୃତୀୟ ଖଣ୍ଡ ପାଇଁ ମଧ୍ୟ ଏକପ୍ରକାର ବ୍ଲୁ-ପ୍ରିଣ୍ଟ ପ୍ରସ୍ତୁତ ହୋଇସାରିଥିଲା । କିନ୍ତୁ ତାଙ୍କ ଦିଗ୍‌ଦର୍ଶନ ବିନା ଏ କାମ କିପରି ହୋଇପାରିବ ତାହା ମୁଁ ବୁଝିପାରୁ ନାହିଁ । ସେ ଗଲେନି, ମୋତେ ଦିଗହରା କରିଦେଇଛନ୍ତି । ମୋର ଯାତ୍ରା, ମୋ ପାଇଁ ଏହା ଏକ ପ୍ରଶ୍ନ ।

ଭୁବନେଶ୍ୱର

ପ୍ରଦୀପ କୁମାର ହୋତା

# ଦେବେନ୍ଦ୍ର: ଏକ ଜୀବନ୍ତ ସ୍ମୃତି

ଦେବେନ୍ଦ୍ର ସାର୍‌ଙ୍କ ସହ ଦେଖା ହେବା ପୂର୍ବରୁ ଚେତନାସ୍ତରରେ ବେଶ୍ ଘନିଷ୍ଠ ହୋଇସାରିଥିଲି ତାଙ୍କ ଅନନ୍ୟ ସାରସ୍ୱତ କୃତିସମୂହ ମାଧ୍ୟମରେ । ଉତ୍କଳ ଗୌରବ ମଧୁସୂଦନଙ୍କ ଅମ୍ଳାନ ପ୍ରତିଭାକୁ ସଂକଳିତ କରି ପ୍ରଚାର ଓ ପ୍ରସାର କରିବାରେ ତାଙ୍କର ଏକନିଷ୍ଠ ଉଦ୍ୟମ ତାଙ୍କୁ ପ୍ରଶଂସା କରିବା ପାଇଁ ଯଥେଷ୍ଟ । ତାଙ୍କ ସାଙ୍ଗରେ ସାକ୍ଷାତ ଅଳ୍ପ, କିନ୍ତୁ ପ୍ରଭାବ ଅନେକ। ପ୍ରଥମ ଥର ସାକ୍ଷାତ ହୁଏ ରାଉରକେଲା ପ୍ରଗତି ଉତ୍କଳ ସଂଘର ସଭାରେ । କର୍ମକର୍ତ୍ତାମାନେ ଓଡିଶାରେ ପାଠାଗାର ଆନ୍ଦୋଳନକୁ ସଫଳ କରି ଏକ ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥା ଗ୍ରହଣ କରିବା ନିମନ୍ତେ ଆଲୋଚକ ଭାବରେ ମୋତେ ନିମନ୍ତ୍ରଣ କରିଥିଲେ । କାରଣ ସେତେବେଳେ ଅଣପଂଜିକୃତ 'ଓଡିଶା ପବ୍ଲିକ ଲାଇବ୍ରେରୀ ଫୋରମ'ର ଥିଲି ରାଜ୍ୟ ସଭାପତି ଏବଂ । ଓଡିଶାର ଅନ୍ୟତମ ପ୍ରତିଷ୍ଠିତ ସାଂସ୍କୃତିକ ଅନୁଷ୍ଠାନ ଗାନ୍ଧୀ ସ୍ମୃତି ପାଠାଗାରର ସଭାପତି । ରାଉରକେଲା ସଭାରେ ବିଶେଷ ଆଲୋଚନାର ସମୟ ତାଙ୍କ ପାଖରେ ନ ଥିଲା । ଆୟୋଜକ ଭାବରେ ସେ ବେଶ ବ୍ୟସ୍ତ ଥିଲେ । ଗାନ୍ଧୀ ଓ ମଧୁସୂଦନଙ୍କ ସମ୍ପର୍କକୁ ନଇେ ତାଙ୍କ ପୁସ୍ତକ ଦ୍ୱାରା ସେତେବେଳକୁ ମୁଁ ବେଶ ପ୍ରଭାବିତ ।

ଦ୍ୱିତୀୟ ସାକ୍ଷାତ ଥିଲା ବେଶ ସ୍ମରଣୀୟ । ଗାନ୍ଧୀ ସ୍ମୃତି ପାଠାଗାରର ଗାନ୍ଧୀ ଜୟନ୍ତୀ ଅବସରରେ ସେ ଯୋଗ ଦେଇଥାନ୍ତି । ଅନିଚ୍ଛୁକ ଥିଲେ ମଧ୍ୟ ଅନୁରୋଧକୁ ଏଡେଇ ନ ପାରି ଯେଉଁ ମୌଳିକ ବକ୍ତବ୍ୟ ରଖିଥିଲେ ତାହା ଶ୍ରୋତାମଣ୍ଡଳୀକୁ ବେଶ୍ ଛୁଇଁ ପାରିଥିଲା । ବକ୍ତବ୍ୟ ପରେ ହୋଟେଲ ରୁମକୁ ଫେରି ପ୍ରାୟ ଅଧରାତି ଯାଏଁ ଗାନ୍ଧୀ ଓ ମଧୁସୂଦନଙ୍କ ସମ୍ପର୍କ ତଥା ରାଉରକେଲା ଅନୁଭୂତି ମୋତ ଅଭିଭୂତ କରିଦେଇଥିଲା । ନିଷ୍କପଟ ସ୍ୱୀକାରୋକ୍ତି ତଥା ବସ୍ତୁନିଷ୍ଠ ସମୀକ୍ଷା ଦେବେନ୍ଦ୍ର ସାରଙ୍କ ବିଶେଷତ୍ୱ ।

ଗାନ୍ଧୀବାଦ ସମ୍ପର୍କରେ ଅନ୍ୟତମ ମୌଳିକ ବକ୍ତା ଭାବରେ ସୁନାମ ଅର୍ଜନ କରିଥିବା ଶ୍ରୀ ସତ୍ୟନାରାୟଣ ସାହୁ ଏକ ଲେଖା ପଠେଇଥାନ୍ତି ଦେଖିବାକୁ । ଲେଖାଟି ନାରୀ ସଶକ୍ତୀକରଣରେ ମଧୁବାବୁଙ୍କ ଅବଦାନ ସମ୍ପର୍କରେ ପର୍ଯ୍ୟାବେସିତ ଥିଲା । କିନ୍ତୁ ଯେଉଁ ଅବଦାନଟି ସବୁଠାରୁ ବଳିଷ୍ଠ ଏବଂ ପ୍ରଭାବଶାଳୀ, ତାର ଉଲ୍ଲେଖ ନ ଥିଲା । ମଧୁବାବୁଙ୍କ ଯୋଗୁଁ ହିଁ ଆଜି ନାରୀମାନେ ଓକିଲାତି କରିବା ଅଧିକାର ପ୍ରାପ୍ତ ହୋଇଛନ୍ତି । ଏହି ପ୍ରସଙ୍ଗଟି ସେ ଦୃଷ୍ଟିକୁ ଆଣିବାରୁ ସେ ମଧ୍ୟ ଆଶ୍ଚର୍ଯ୍ୟ ହେଲେ ଏବଂ ତାହା ପ୍ରମାଣସ୍ୱରୂପ ବହିଟିକୁ ଦେଖିବାକୁ ଚାହିଁଲେ । ଦେବେନ୍ଦ୍ର ସାର୍‌ଙ୍କ ପୁସ୍ତକର ପୃଷ୍ଠାଗୁଡିକ ହିଁ ତାଙ୍କୁ ପ୍ରେରଣା ଯୋଗାଇଥିଲା । ଶ୍ରୀ ସାହୁଙ୍କ ଲେଖାଟି ଓଙ୍କକ୍ତ୍ରକ୍ସଭଶ୍ୱ ରେ ବାହାରିବା ପରେ ବେଶ ଚାଞ୍ଚଲ୍ୟ ଖେଳିଯାଇଥିଲା ।

ତୃତୀୟ ଥର ଦେଖାଲା ହେଲା ଭୁବନେଶ୍ୱର ପୁସ୍ତକମେଳା ପରିସରରେ । ବହି ଭର୍ତ୍ତି ଦୁଇଟି ବ୍ୟାଗ ସହିତ ତାଙ୍କୁ ଦେଖିଲା ପରେ ସ୍ୱତଃ ମନକୁ ଭାବନାଟିଏ ଆସିଲା, ପ୍ରକୃତରେ ସେ ଜଣେ ଜ୍ଞାନପିପାସୁ ମଣିଷ । ଓଡିଶାର ଜଣେ ଆଗଧାଡିର ବୁଦ୍ଧିଜୀବୀ । ତାଙ୍କ ବିୟୋଗ ଫଳରେ ରାଜ୍ୟର ବୌଦ୍ଧିକ ଜଗତରେ ଏକ ଶୂନ୍ୟସ୍ଥାନ ସୃଷ୍ଟି କରିଛି ।

*ବରଗଡ*

ଜ୍ଞାନୀ ଦେବାଶିଷ ମିଶ୍ର

# ଜଣେ ଅସାଧାରଣ ବିନ୍ଧାଣୀ

୨୫ ଅଗଷ୍ଟ ୨୦୨୨ରେ ଦେବେନ୍ଦ୍ର କୁମାର ଦାଶଙ୍କ ଆକସ୍ମିକ ବିଦାୟ ଓଡିଆ ସମାଲୋଚନା । ସାହିତ୍ୟ ପରମ୍ପରାପାଇଁ ଗୋଟିଏ ଦୁଃଖଦ କୃଷ୍ଣପକ୍ଷ ।

ଓଡିଆ ସାହିତ୍ୟରେ ଗବେଷଣା ଓ ସମ୍ପାଦନାର ପରିଧିକୁ ସତ୍ୟ ଓ ତଥ୍ୟନିଷ୍ଠ କରି ଅନେକ ପୂର୍ବ ପ୍ରଚଳିତ ଭ୍ରାନ୍ତିକୁ ଦୂରାଇବାରେ ଦେବେନ୍ଦ୍ର କୁମାର ଦାଶଙ୍କର ଭୂମିକା ଏକାନ୍ତ ପ୍ରଣିଧାନଯୋଗ୍ୟ । ସେ ଥିଲେ ଓଡିଆ ନବଜାଗରଣ ସମୟଖଣ୍ଡର ଜଣେ ନିଷ୍ଠାପର ଗବେଷକ ଓ ଚଳନ୍ତି ଜ୍ଞାନକୋଷ । ଓଡିଆ ସାହିତ୍ୟର ବିବିଧ ପ୍ରସଙ୍ଗକୁ ଉଭୟ ଓଡିଆ ଓ ଇଂରାଜୀ ଭାଷାରେ ବ୍ୟକ୍ତ କରି ଆମ ସାହିତ୍ୟର ପରିସରକୁ ବ୍ୟାପ୍ତି ଓ ବିସ୍ତୃତି ଦେବାରେ ତାଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଅଧ୍ୟାପନା ଜୀବନ ଭିତରେ ଜୀବନ କହିଲେ ସେ ବୁଝୁଥିଲେ ସମାଲୋଚନା, ସମ୍ପାଦନା, ଗବେଷଣା ଓ ସାହିତ୍ୟ ସଂଗଠନ । ଅନେକ ସାହିତ୍ୟ ସଂଗଠନ ଗଢଣର ସେ ମୂଳଦୁଆ ଓ ପ୍ରଚ୍ଛଦ ବିନ୍ଧାଣୀ ।

ଆମ ବିଭାଗରେ ପରିଦର୍ଶୀ ଅଧ୍ୟାପକ ଭାବେ କାର୍ଯ୍ୟପୂର୍ବକ ଆମ ଶିକ୍ଷାକ୍ଷେତ୍ରର ଗବେଷଣାଭିତ୍ତିକ ଦିଗ୍‌ବଳୟକୁ ପରିବ୍ୟାପ୍ତ କରିବାରେ ଦେବେନ୍ଦ୍ର ସାର ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଆସୁଥିଲେ । ବିଭାଗ ସହିତ ଜଡିତ ହୋଇ ସେ ନିଖିଳ ଭାରତ ଓଡିଆ ଅଧ୍ୟାପକ ସମ୍ମେଳନର ସଭାପତି ଭାବେ ଓଡିଆ ଭାଷା ସାହିତ୍ୟ ଗବେଷଣା ଓ ଅଧ୍ୟାପନାରେ ପ୍ରଯୁକ୍ତିବିଦ୍ୟାର ଭୂମିକା ଶୀର୍ଷକ ଆଲୋଚନାଚକ୍ରର ଆୟୋଜନ କରିଥିଲେ ।

ବିଭାଗର ଅଧ୍ୟାପକମାନଙ୍କ ସହିତ ସୌହାର୍ଦ୍ଦ୍ୟ ଓ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ସ୍ଥାପନପୂର୍ବକ କାର୍ଯ୍ୟ କରିବାରେ ବିଶ୍ୱାସୀ ଏହି ଗବେଷକ ବିଭାଗର ଅଧ୍ୟାୟୀମାନଙ୍କ ପାଇଁ ମଧ୍ୟ ପ୍ରେରଣାର ଉତ୍ସ ହୋଇରହିଥିଲେ ।

ପାର୍ଥିବ ଶରୀରରେ ନଥିଲେ ମଧ୍ୟ ଗବେଷଣା ଓ ସମ୍ପାଦନାର ଅକ୍ଷରଗୁଡ଼ିକ ମଧ୍ୟରେ ଦେବେନ୍ଦ୍ର ସାର୍ ଉଜ୍ଜଳ ତାରକା ଓ ନୂଆ ଚେତନାର ଚଷମା ହେଇରହିବେ ।

ତାଙ୍କର ଅବର୍ତ୍ତମାନରେ ଈଶ୍ୱର ତାଙ୍କ ପରିବାର ଓ ଆତ୍ମୀୟସ୍ୱଜନମାନଙ୍କୁ ଶକ୍ତି ଓ ସାହାସ ଦିଅନ୍ତୁ ।

ସାର୍‌ଙ୍କର ଅମର ଆତ୍ମାର ସଦ୍‌ଗତି କାମନାପୂର୍ବକ ଏତିକି ପ୍ରାର୍ଥନା କେବଳ ।

*କଟକ*



## ସୁକାନ୍ତ ଚନ୍ଦ୍ର ଖୁଣ୍ଟିଆ

# ଆଦର୍ଶ ସ୍ମୃତି

ଶ୍ରୀ ଦେବେନ୍ଦ୍ରଙ୍କ ଦାଶଙ୍କର ଦେହାନ୍ତ ଖବର ପାଇବା ପରେ ଆଦର୍ଶ ପାଠାଗାରର ସଭ୍ୟମାନଙ୍କ ମଧ୍ୟରେ ଶୋକର ଛାୟା ଖେଳିଯାଇଥିଲା । ଦେବେନ୍ଦ୍ର କୁମାର ଦାଶ ଏକାଧାରାରେ ଜଣେ କବି, ଲେଖକ ଓ ଶିକ୍ଷାବିତ୍ ଭାବରେ ସୁନାମ ଅର୍ଜନ କରିଥିଲେ । ଓଡ଼ିଆ ଭାଷା ଓ ସାହିତ୍ୟରେ ଉଲ୍ଲେଖନୀୟ ଅବଦାନ ପାଇଁ ଆଦର୍ଶ ପାଠାଗାର ତରଫରୁ ସ୍ୱର୍ଗତ ଦାଶଙ୍କୁ ବିଶିଷ୍ଟ ସାହିତ୍ୟିକ ସ୍ୱର୍ଗତ ଲକ୍ଷ୍ମୀ ନାୟକ ସାରସ୍ୱତ ସମ୍ମାନ ରାଉରକେଲା ପୁସ୍ତକମେଳା ୨୦୧୩ ଅବସରରେ ସମ୍ବର୍ଦ୍ଧିତ କରାଯାଇଥିଲା। ଆଦର୍ଶ ପାଠାଗାର ତରଫରୁ ଦିବଂଗତ ଆତ୍ମାର ସଦଗତି କାମନା କରୁଛୁ ଓ ତାଙ୍କର ଶୋକସନ୍ତପ୍ତ ପରିବାରକୁ ସମବେଦନା ଜ୍ଞାପନ କରୁଛୁ ।

*ଆଦର୍ଶ ପାଠାଗାର, ରାଉରକେଲା*

## ଆର୍ତ୍ତତ୍ରାଣ ମହାପାତ୍ର

# ବାଗ୍ମୀ ଦେବେନ୍ଦ୍ର

କେହି ରହି ନାହିଁ ରହିବେ ନାହିଁଟି ଭବରଙ୍ଗ ଭୂମି ତଳେ, ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ । ସମସ୍ତେ ଯିବେ, ରହିଯିବ ତାଙ୍କର ପଦଚିହ୍ନ । ଯାହାର ପଦଚିହ୍ନ ଯେତେ ଗଭୀର ସେ ସେତେ ଉଦାର । ତାଙ୍କ ପାଦଚିହ୍ନକୁ ସେ ନୂତନ ପିଢି ଅନୁସରଣ କରନ୍ତି । ଅପୂରଣୀୟ କାର୍ଯ୍ୟକୁ ଖୋଜନ୍ତି । ଦେବେନ୍ଦ୍ର କୁମାର ଦାଶ ନାହାନ୍ତି ଶରୀରରେ ସତ, କିନ୍ତୁ ସେ ଆମ ଗହଣରେ ଜୀବିତ ଅଛନ୍ତି ବୋଲି ଅନୁଭବ କରୁଛୁ । ଦିନେ ସନ୍ଧ୍ୟା ସମୟରେ ଦେବେନ୍ଦ୍ର ସାର୍ କେତେଖଣ୍ଡ ବହି ଧରି ପହଞ୍ଚିଲେ ମୋର ଛୋଟ ପତ୍ରିକା ଦୋକାନରେ । ବହିଟି ଥିଲା ଗୋଟିଏ ଫୁଲ ଫୁଟିବାର କାହାଣୀ । ମତେ ବହିଟି ଦେଇ କହିଲେ, ଆର୍ତ୍ତ ବହିରେ ବହୁତ ଭୁଲ ରହିଗଲା । ପ୍ରକାଶକ ଭଲ କରି ପ୍ରୁଫ ଦେଖିନାହାନ୍ତି । ରଖ, ମୋତେ ଟଙ୍କା ଦେବା ଦରକାର ନାହିଁ । ସାହିତ୍ୟ ପିପାସୁ କିଏ ଜୁଟିଲେ ଦେଇଦେବ । କିଛିଦିନ ପୂର୍ବରୁ ତାଙ୍କ ସହିତ ମୋର ପରିଚୟ ହୋଇଥାଏ । ସେ ସେତେବେଳେ ବାସନ୍ତୀ କଲୋନୀର ଥାଆନ୍ତି । ମ୍ୟୁନିସିପାଲ କଲେଜରେ ଅଧ୍ୟାପକ । ମୁଁ ସେତେବେଳେ ତାଙ୍କ ଘରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟିର ମୁଖପତ୍ର, ଇଂରାଜୀରେ ପ୍ରକାଶ ପାଉଥିବା ନ୍ୟୁ ଏଜ, ପତ୍ରିକା ଦେଉଥିଲି । ପରବର୍ତ୍ତୀ ଅବସ୍ଥାରେ ସାର ଏକ ଆଲୋଚନା ପୁସ୍ତକ ରଚନା କଲେ ଗଙ୍ଗାଧର: କବିତା ଓ କବିଆତ୍ମା । କବି ଗଙ୍ଗାଧରଙ୍କ ଉପରେ ଏତେ ସୁନ୍ଦର ପୁସ୍ତକ ମୁଁ ଦେଖି ନଥିଲି । ସେ ପୁସ୍ତକ ମୁଁ ଆଣି ଦୋକାନରେ ବିକ୍ରି କରିଛି । ପରେ ଆମେ ଗଣତାନ୍ତ୍ରିକ ସାଂସ୍କୃତିକ ଅନୁଷ୍ଠାନରେ ତାଙ୍କ ବକ୍ତବ୍ୟରୁ ଅନୁଭବ କଲୁ, ସେ ଜଣେ ପ୍ରକୃତରେ ଜ୍ଞାନୀ, ଗୁଣି, ଗବେଷକ । ତୀକ୍ଷଣ ତରବାରିଠାରୁ ତାଙ୍କର ସମାଲୋଚନାର କଲମ ମୁନ ଥିଲା ଖୁବ ବଳଶାଳୀ । ସେ ଶୁଖିଲାରେ କାହାରି ପ୍ରଶଂସା କରୁ ନଥିଲେ । କିମ୍ବା କାହାରି ଭୁଲ ଦେଖିଲେ ଛାଡୁ ନଥିଲେ । ତଥ୍ୟ ଭିତ୍ତିରେ ସେ ନିଜର ବକ୍ତବ୍ୟକୁ ଉପସ୍ଥାପନ କରୁଥିଲେ ।

ସତ୍ୟ ଉଦଘାଟନ ଥିଲା ତାଙ୍କର ପରମ ବ୍ରତ । ଆମେ ଅନୁଭବ କଲୁ, ସେ ଜଣେ ବାଗ୍ମୀ କୃତବିଦ୍ୟ ଗବେଷକ । ତାଙ୍କର ସମ୍ପାଦନାରେ ରାଧାନାଥ, ଫକୀରମୋହନ, ଗୋପବନ୍ଧୁ, ମଧୁସୂଦନ ରାମକୃଷ୍ଣ ଏବଂ ରଜନୀକାନ୍ତ ଦାଶଙ୍କଦ୍ୱାରା ପ୍ରକାଶିତ ରାଉରକେଲା ଟାଇମ ପାକ୍ଷିକ ପତ୍ରିକାରେ ଛୋଟ ଛୋଟ ପ୍ରବନ୍ଧମାନ ରଚନା କରଛନ୍ତି । ସାର ରାଉରକେଲାରେ ଥିଲାବେଳେ ବୌଦ୍ଧିକ ବାତାବରଣକୁ ଉତ୍ତପ୍ତ କରି ରଖିଥିଲେ । ସବୁଠାରୁ ବଡ କଥା ହେଉଛି, ତାଙ୍କଦ୍ୱାରା ଏକ ବଡ କାର୍ଯ୍ୟ ଉତ୍କଳ ସମ୍ମିଳନୀ ୧୯୦୩ରୁ ୧୯୩୬ପୁସ୍ତକ । ଉତ୍କଳ ସମ୍ମିଳନୀର ସମସ୍ତ ଚିଠା, ଏଜେଣ୍ଡା, କାର୍ଯ୍ୟନିଷ୍ପତ୍ତି ସଭାପତି ଓ ସମ୍ପାଦକ ଏବଂ ସ୍ଥାନର ଇତିହାସକୁ ଏହି ପୁସ୍ତକରେ ଯଥାଯଥ ଭାବେ ଉପସ୍ଥାପନ କରାଯାଇଛି । ବିଭିନ୍ନ ପତ୍ରପତ୍ରିକାରୁ ଏଥିପାଇଁ ସେ ତଥ୍ୟ ସଂଗ୍ରହ କରିଛନ୍ତି । ଓଡିଆ ଭାଷା ସାହିତ୍ୟ ସଂସ୍କୃତି ପାଇଁ ଯେତେ ଗବେଷଣାଧର୍ମୀ ପୁସ୍ତକ ସେ ରଚନା କରିଛନ୍ତି, ତାହା ଅମୂଲ୍ୟ ସମ୍ପଦ । ଇସ୍ପାତ ସହରରେ ଦେବେନ୍ଦ୍ର ସାର୍‌ଙ୍କୁ ଛାଡି କୌଣସି ସଭା ସଫଳ ହୋଇନାହିଁ । ଆଦର୍ଶଗତ ମତପାର୍ଥକ୍ୟ ସତ୍ତ୍ୱେ ରାଉରକେଲାର ବୁଦ୍ଧିଜୀବୀ ଗୋଷ୍ଠୀ ତାଙ୍କୁ ଜଣେ ଅନବଦ୍ୟ ଗବେଷକ ଭାବରେ ସମ୍ମାନ ଦେଇଥିଲେ । ୧୯୮୫ ମସିହାରୁ ତାଙ୍କ ସହିତ ମୋର ଘନିଷ୍ଠ ସମ୍ପର୍କ ଥିଲା ଏବଂ ମୁଁ ତାଙ୍କୁ ସାର୍ ବୋଲି ଡାକୁଥିଲି । ସେ ଦିନ ରାଉରକେଲାରୁ ଆମେ ତାଙ୍କୁ ବିଦାୟ ଦେଲାବେଳେ ମୋର ଆଖି ଛଳଛଳ ହୋଇଯାଇଥିଲା । ସେ କହିଥିଲେ, ମୁଁ ତୁମର ସମସ୍ତ ସତ୍ କାର୍ଯ୍ୟ ସହିତ ଅଛି । ଡାକିଲେ ନିଶ୍ଚୟ ଆସିବି । ତାଙ୍କର ବିୟୋଗରେ ଓଡିଆ ଭାଷା ବିକାଶ ମଞ୍ଚ ଗଭୀର ଦୁଃଖ ପ୍ରକାଶ କରୁଛି ।

*ରାଉରକେଲା*

ସୁରେନ୍ଦ୍ରନାଥ ଦାଶ

# ଅଧ୍ୟାପକ ଦେବେନ୍ଦ୍ରः ସସ୍ନେହ ଦୃଷ୍ଟି

ଅଧ୍ୟାପକ ଦେବେନ୍ଦ୍ର ଦାଶ ଥିଲେ ଜଣେ ଭଲମଣିଷ, ଦରଦୀବନ୍ଧୁ, ଆଦର୍ଶ ଶିକ୍ଷକ ଓ ଉଚ୍ଚକୋଟୀର ଗବେଷକ। ତାଙ୍କର ଜୀବନ ଥିଲା ଏକ ବିଦ୍ୟାଳୟ। ଜୀବନସାରା ପାଠ ପଢ଼ିବା, ପାଠ ପଢ଼ାଇବା ଓ ସତ୍‌କର୍ମରେ ମନୋନିବେଶ କରିବା ଥିଲା ତାଙ୍କ ଜୀବନର ବ୍ରତ। ସେ ଥିଲେ ଅତ୍ୟନ୍ତ ଶାନ୍ତ, ଭଦ୍ର, ଛତ୍ରବତ୍ସଳ, କର୍ତ୍ତବ୍ୟନିଷ୍ଠ ତଥା ଜଣେ ଦକ୍ଷ ସୁସଙ୍ଗଠକ।

ସେ ଜୀବନର କଠୋର ଅନୁଶାସନ ଭିତରେ ଶୃଙ୍ଖଳା, ଉନ୍ନତ ଆଚରଣ ବିଧି, ଆଦର୍ଶବାଦିତା, କର୍ତ୍ତବ୍ୟନିଷ୍ଠା ସ୍ୱର୍ଗତ ଦେବେନ୍ଦ୍ର ଦାଶଙ୍କ ଚରିତ୍ରର ଚିତ୍ରଲିପି। ସେ ଥିଲେ ମିଷ୍ଟଭାଷୀ ଓ ମୃଦୁ ମଧୁରଭାଷୀ। ଅନ୍ୟକୁ ସାହାଯ୍ୟ କରିବା ପାଇଁ ସଦାସର୍ବଦା ଚେଷ୍ଟିତ। ଶେଷପର୍ଯ୍ୟନ୍ତ ତାଙ୍କର ଜୀବନ ଥିଲା ଆଦର୍ଶବାଦର ଏକ ଖୋଲା ଚିତ୍ରପୋଥି। ସରଳ, ସୁନ୍ଦର, ସାବଲୀଳ ବ୍ୟବହାର ତାଙ୍କର ଜୀବନଶୈଳୀ।

ଓଡ଼ିଶା ସରକାରୀ ଶିକ୍ଷକ ସଂଘର ସଭାପତି ରୂପେ ଅଧ୍ୟାପକ ମହଲରେ ବେଶ୍ ପରିଚିତ ଥିଲେ। ଗୁଣାତ୍ମକ ଶିକ୍ଷାର ପ୍ରଚାର ଓ ପ୍ରସାରରେ ତାଙ୍କର ଭୂମିକା ବେଶ୍ ପ୍ରଶଂସନୀୟ। ଶିକ୍ଷା, ଶିକ୍ଷକ ଓ ଶିକ୍ଷାର୍ଥୀମାନଙ୍କର ବହୁବିଧ ସମସ୍ୟାକୁ ସମାଧାନ କରିବା ଲାଗି ଶତଚେଷ୍ଟିତ ଥିଲେ। ଅସୁବିଧା ସମୟରେ ପାଖରେ ଆସି ଠିଆହେବା ଓ ସାହାଯ୍ୟ ସହଯୋଗର ହାତ ବଢ଼ାଇବା ଅଧ୍ୟାପକ ଦାଶଙ୍କର ସହଜାତ ପ୍ରବୃତ୍ତି।

ତାଙ୍କର ଅବର୍ତ୍ତମାନରେ ଶିକ୍ଷକ, ଛାତ୍ର, ଗବେଷକ ଓ ବୁଦ୍ଧିଜୀବୀ ମହଲରେ ଗଭୀର ଦୁଃଖ ସୃଷ୍ଟିକରିଛି। ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା କରୁଛୁ।

ଭୁବନେଶ୍ୱର

## ଲକ୍ଷ୍ମୀକାନ୍ତ ତ୍ରିପାଠୀ

# ଶେଷ ସାହିତ୍ୟ ଆସର

ଯେତେବେଳେ ଅଗଷ୍ଟମାସ ୧୩ତାରିଖରେ କେନ୍ଦ୍ର ସାହିତ୍ୟ ଏକାଡେମୀ ଓ ଫକୀରମୋହନ ସାହିତ୍ୟ ପରିଷଦ ମିଳିତ ଆନୁକୂଲ୍ୟରେ ଫକୀରମୋହନଙ୍କ ସାହିତ୍ୟରେ ସମକାଳୀନ ଇତିହାସ ଶୀର୍ଷକକୁ ନେଇ କର୍ମଶାଳାର ଆୟୋଜନ କରାଯିବାର କଥା ସ୍ଥିରକରାଗଲା, ସେଥିରେ ମୂଳଭାଷଣ ପ୍ରଦାନ କରିବାପାଇଁ ଡ. ବିଜୟାନନ୍ଦ ସିଂହଙ୍କୁ ମୁଁ ଦେବେନ୍ଦ୍ର କୁମାର ଦାଶଙ୍କର ନାମ ପ୍ରସ୍ତାବ ଦେଇଥିଲି। ସେ ସେଥିରେ ସମ୍ମତି ପ୍ରଦାନ କରିବା ସ୍ୱାଭାବିକ ଥିଲା। ତାପରେ ମୁଁ ଦେବେନ୍ଦ୍ର ବାବୁଙ୍କ ସହ ଯୋଗାଯୋଗ କଲି। ସେ କିଛିଦିନ ପୂର୍ବରୁ ବାଙ୍ଗାଲୋରରୁ ଆସି ଭୁବନେଶ୍ୱରରେ ପହଞ୍ଚିଥାଆନ୍ତି। ମୋତେ କହିଲେ, ଏଗାର ତାରିଖରେ ସମ୍ବଲପୁରରେ ଗଙ୍ଗାଧର ଜୟନ୍ତୀ ଅଛି। ବାର ତାରିଖ ବେଳକୁ ସେ ସମ୍ବଲପୁରରୁ ଫେରିଆସିବେ ଓ ସେଇ ବାର ତାରିଖରେ ନିଜେ କାର୍ ଡ୍ରାଇଭିଂ କରି ବାଲେଶ୍ୱର ଚାଲିଆସିବେ। ହଉ, ଠିକ୍ ଅଛି ବୋଲି କହି ତାଙ୍କ କଥାରେ ମୁଁ ସମ୍ମତି ପ୍ରଦାନ କଲି।

ପରବର୍ତ୍ତୀ ସମୟରେ କାର୍ଯ୍ୟକ୍ରମରେ ସାମାନ୍ୟ ପରିବର୍ତ୍ତନ ହେଲା। ତାଙ୍କ ସାଙ୍ଗରେ ଦୀପ୍ତିରଂଜନ ପଟ୍ଟନାୟକ ଆସିବାର ସ୍ଥିର ହେବାରୁ ସେ ନିଜେ ତାଙ୍କର ଗାଡ଼ି ଚଳାଇ ନଆସି ଭଡ଼ାଗାଡ଼ିରେ ଆସିବାକୁ ସ୍ଥିରକଲେ। ବାର ତାରିଖ ଫକୀରମୋହନ ସାହିତ୍ୟ ପରିଷଦ ତରଫରୁ ଆମେ ଗଙ୍ଗାଧରଙ୍କର ଜୟନ୍ତୀ ପାଳନ କରୁଥିଲୁ। ଦେବେନ୍ଦ୍ରବାବୁ ତ ଗଙ୍ଗାଧରଙ୍କ ଉପରେ କାମ କରିଛନ୍ତି। 'ଗଙ୍ଗାଧର : କବିତା ଓ କବି-ଆତ୍ମା' ତାଙ୍କ ରଚିତ। ତେଣୁ ୧୨ତାରିଖ ସଂଧ୍ୟାରେ ତାଙ୍କୁ ଓ ଦୀପ୍ତିବାବୁଙ୍କୁ ଶାନ୍ତିକାନନରେ ଅତିଥି ହେବାପାଇଁ ମୁଁ ଅନୁରୋଧ କଲି। ଉଭୟ ମୋ ଅନୁରୋଧକୁ ସ୍ୱୀକାର କଲେ

ଦେବେନ୍ଦ୍ରବାବୁ ଗଙ୍ଗାଧରଙ୍କ ସମ୍ପର୍କରେ ଯେଉଁ ନୂଆ କଥାମାନ କହିଲେ, ଦର୍ଶକମାନେ ତାହାକୁ ନୀରବରେ ଗ୍ରହଣ କଲେ। ସେ ସବୁବେଳେ ନୂଆନୂଆ କଥାମାନ କହିଥାଆନ୍ତି।

ତେଣୁ ତାଙ୍କ କଥା ଶୁଣିବାରେ ଆଗ୍ରହ ଆସିଥାଏ। ସାଢ଼େ ଆଠଟା ବେଳକୁ ଆମର କାର୍ଯ୍ୟକ୍ରମ ଶେଷ ହୋଇଗଲା। ହୋଟେଲରେ ତାଙ୍କର ଖାଇବାର ବ୍ୟବସ୍ଥା ହୋଇଥାଏ। ସେ କିନ୍ତୁ ହୋଟେଲ୍ ଶୀଘ୍ର ନଫେରି ଅରବିନ୍ଦ ଗିରିଙ୍କ ଘରକୁ ବୁଲିବାକୁ ଗଲେ। ପରଦିନ ସକାଳେ ତାଙ୍କୁ ଭେଟିବି ବୋଲି କହି ମୁଁ ବି ଘରକୁ ଫେରି ଆସିଲି।

୧୩ତାରିଖ ସକାଳେ ମୁଁ ଯାଇ ଅଙ୍କିତା ହୋଟେଲରେ ଚାରିଶହ ଏକ ନମ୍ବର ରୁମ୍‌ରେ ପହଞ୍ଚିଲି। 'ଫକୀରମୋହନଙ୍କ କଥା ସାହିତ୍ୟରେ ତତ୍‌କାଳୀନ ସମାଜ' 'ହୁଗୁଳିରେ ରାଧାନାଥ' ବୋଲି ମୋର ଖଣ୍ଡିଏ ଗ୍ରନ୍ଥ ପ୍ରକାଶ ପାଇଥିଲା। ସେ ଦେଖି ନଥିଲେ। ସେଥିରେ ରାଧାନାଥ ଏବଂ ନଗେନ୍ଦ୍ରବାଳାଙ୍କର କଥା ଉଲ୍ଲିଖିତ ହୋଇଛି। ତାଙ୍କ ପାଇ ମୁଁ ଏଇ ଦୁଇଖଣ୍ଡ ବହି ନେଇଯାଇଥିଲି। ସେ ମଧ୍ୟ ମନୁ ଦାଶଙ୍କଦ୍ୱାରା ସଙ୍କଳିତ 'ରେବତୀ' ବହିଖଣ୍ଡିଏ ମୋ ପାଇଁ ଆଣିଥିଲେ। ରେବତୀରେ ଦେବେନ୍ଦ୍ରବାବୁ ଓ ହିମାଂଶୁ ଶେଖର ମହାପାତ୍ର ମିଶି ମୁଖବନ୍ଧ ରଚନା କରିଛନ୍ତି।

ମୁଁ 'ରେବତୀ' ବହିଟିର ଖୁବ୍ ପ୍ରଶଂସା କରିଥିଲି। ଗୋଟିଏ ଗପକୁ ୩୭ଟି ଭାଷା ଓ ଲିପିରେ ପ୍ରକାଶ କରିବା ଏକ ଅସମ୍ଭବ କାର୍ଯ୍ୟ ହୋଇଥିଲେ ମଧ୍ୟ ମନୁ ଦାଶ ତାହାକୁ ସମ୍ଭବ କରାଇ ପାରିଛନ୍ତି ବୋଲି ଦେବେନ୍ଦ୍ର ବାବୁଙ୍କ ଆଗରେ କହିଥିଲି। କିନ୍ତୁ ମନୁ ଦାଶ ଫକୀରମୋହନ ସାହିତ୍ୟ ପରିଷଦ ପ୍ରତି ଅସନ୍ତୁଷ୍ଟ ଅଛନ୍ତି ବୋଲି ଦେବେନ୍ଦ୍ରବାବୁ ହସିହସି କହିଲେ। ମୁଁ ତାର କାରଣ ଜିଜ୍ଞାସା କଲି। କହିଲେ, ଜଣେ ଏତେବଡ଼ କାମ କଲା, ମାତ୍ର ଫକୀରମୋହନ ସାହିତ୍ୟ ପରିଷଦ ତରଫରୁ କୌଣସି ପ୍ରକାର ସ୍ୱୀକୃତି ପ୍ରଦାନ କରାଗଲା ନାହିଁ। କହିଲି- ଫକୀରମୋହନ ସାହିତ୍ୟ ପରିଷଦ ତାଙ୍କଠାରେ ଋଣୀ। ଭବିଷ୍ୟତରେ ତାଙ୍କୁ ଆମେ ଯଥାଯୋଗ୍ୟ ସମ୍ମାନ ପ୍ରଦାନ କରିବୁ।

ଦୀପ୍ତିବାବୁ, ମୁଁ ଓ ଦେବେନ୍ଦ୍ରବାବୁ ଆମେ ତିନିଜଣ ଥଟ୍ଟା ମଜାରେ ମଗ୍ନ ରହିଲୁ। ଦେବେନ୍ଦ୍ରବାବୁ କହିଲେ, ଲକ୍ଷ୍ମୀକାନ୍ତ ସହିତ ମୋର କେତେଦିନର ସମ୍ପର୍କ ଜାଣିଛ, ଦୀପ୍ତି। ସେ ମୋର ଅନୁଜ ହେଲେ ମଧ୍ୟ ଶାନ୍ତିନିକେତନରେ ଗବେଷଣା କରିବା ବେଳଠାରୁ ତାଙ୍କ ସହିତ ମୋର ସମ୍ପର୍କ। ସେତେବେଳେ ଆମେମାନେ କେତେ ନୀତି ଓ ଅନୀତି କାର୍ଯ୍ୟ କରିଛୁ।

ଦୀପ୍ତିବାବୁ ଦେବେନ୍ଦ୍ରବାବୁଙ୍କର କଥାକୁ ଧରିବସିଲେ। ଅନୀତି କାର୍ଯ୍ୟ କରିଛନ୍ତି ? କି କି ଅନୀତି କାର୍ଯ୍ୟ କରିଛନ୍ତି କୁହନ୍ତୁ। ଦେବେନ୍ଦ୍ର ବାବୁ ଏ ପ୍ରଶ୍ନର କିଛି ଉତ୍ତର ଦେଇନପାରି ହସିଦେଲେ। ଦୀପ୍ତିବାବୁ ପ୍ରଶ୍ନର ବାଣକୁ ପୁଣି ମୋ ଆଡ଼କୁ ଫିଙ୍ଗିବାକୁ ଲାଗିଲେ। ମୁଁ କହିଲି ନୀତି ହେଉ ବା ଅନୀତି ହେଉ, ତାହା ଏକ ଆପେକ୍ଷିକ ଶବ୍ଦ। ମୋ ପାଇଁ ଯାହା ନୀତି, ଅନ୍ୟଜଣଙ୍କର ପାଇଁ ତାହା ଅନୀତି ହୋଇପାରେ କିମ୍ବା ବିପରୀତ। ବୁଝିଲେ କି ନାହିଁ କେଜାଣି, ଦୀପ୍ତିବାବୁ ନୀରବ ରହିଲେ।

ଦଶଟା ବେଳକୁ ଶାନ୍ତିକାନନ କର୍ମଶାଳାରେ ଦେବେନ୍ଦ୍ରବାବୁ ଅଧଘଣ୍ଟାଏ ମୂଳଭାଷଣ ପ୍ରଦାନ କଲେ। ତାଙ୍କର ସ୍ୱଭାବ ସୁଲଭ ଭାଷଣ ଚାଲିଥିବା ଅବସ୍ଥାରେ ହିଁ ସେ ବିଦାୟ ନେଲେ । କିଏ ଜାଣିଥିଲା ଏହାହିଁ ହେବ ତାଙ୍କ ଜୀବନର ଶେଷ ସାହିତ୍ୟ ଆସର !

ପଚିଶ ତାରିଖ ମଧ୍ୟାହ୍ନର ପୂର୍ବରୁ ଶାନ୍ତିନିକେତନରୁ କଇଳାଶ ପଟ୍ଟନାୟକ ମୋତେ ଫୋନ୍ କରି ଦେବେନ୍ଦ୍ରବାବୁଙ୍କ ଦିବଂଗତ ହେବାକଥା ଜଣାଇ ତାହାର ସତ୍ୟାସତ୍ୟ ଜାଣିବାର ଇଚ୍ଛା ପ୍ରକାଶ କଲେ।

ସତ୍ୟାସତ୍ୟ ଜାଣିବି ଆଉ କ'ଣ ! ସେତେବେଳକୁ ଦେବେନ୍ଦ୍ରବାବୁ ଆମ ସମସ୍ତଙ୍କୁ ଛାଡ଼ି ଆଉ ଏକ ପୁରର ଯାତ୍ରୀ ହୋଇସାରିଥିଲେ।

*ବାଲେଶ୍ୱର*

ଜଗନମୋହନ ସାହୁ

# ଋଣ ସୁଝିପାରିଲିନି

୧୯୭୯ ମସିହାରୁ ଏଯାବତ୍ ଦେବେନ୍ଦ୍ର ଭାଇନାଙ୍କ ସହ ସମ୍ପର୍କ ମୋର ଘନିଷ୍ଠ ଥିଲା । ବିଦ୍ୟାଭବନ ହଷ୍ଟେଲରୁ ରାଉରକେଲା ମ୍ୟୁନିସିପାଲ କଲେଜ । ବାସନ୍ତୀ କଲୋନୀରେ ଏକାଠି ରହଣି, ସେଠୁ ପୁଣି ଭୁବନେଶ୍ୱର ଆସିବା ପର୍ଯ୍ୟନ୍ତ ଅନେକ ଅନେକ ଘଟଣାକୁ ନେଇ ନିବିଡ଼ତା ଲେଖିବସିଲେ ପୋଥିଟିଏ ହେବ ନିଶ୍ଚୟ । ତାଙ୍କ ସହ କୌଣସି ବୌଦ୍ଧିକ ବିତର୍କ ଅବାନ୍ତର ରୂପ ନେଲେ ସେ ଦୁର୍ଘଟଣାରେ ରୂପାନ୍ତର ହୋଇଯା'ନ୍ତି । ସତୁରି-ଅଶୀ ଦଶକର ଯେ କେହି ତାଙ୍କର ବନ୍ଧୁ ଏକଥା ସ୍ୱୀକାର କରିବେ ନିଶ୍ଚୟ । ତେଣୁ ସନ୍ତର୍ପଣରେ ତାଙ୍କ ସହ ଯୁକ୍ତି କରେ ମୁଁ । ବିଶେଷକରି ମ୍ୟୁନିସିପାଲ କଲେଜର ଅଧ୍ୟାପକ ଶରତ ନାୟକଙ୍କ ଅକାଳ ବିୟୋଗ ପରେ ଦେବେନ୍ଦ୍ର ଭାଇନା ମୋର ଅତ୍ୟନ୍ତ ଅନ୍ତରଙ୍ଗ ହୋଇଉଠିଲେ ଏବଂ ଏକାନ୍ତ ସାନଭାଇଟିଏ ଭଳି ତାଙ୍କ ପାଖରୁ ପ୍ରତି ମୁହୂର୍ତ୍ତରେ ଶ୍ରଦ୍ଧା ଓ ସ୍ନେହ ପାଇଆସିଛି । ଦୁର୍ଭାଗ୍ୟ ଯେ ଅତ୍ୟନ୍ତ ଆନ୍ତରିକତା ଭିତରେ ଗତ ଦୁଇବର୍ଷ ତଳେ ଦୁଇଟି ଘଟଣାକୁ ନେଇ (୧.ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମିଳନୀ, ୨.ନଟବର ସାମନ୍ତରାୟଙ୍କ ଜନ୍ମ ଶତବାର୍ଷିକୀ) ତାଙ୍କୁ କେଇଟି କର୍କଶ ବାକ୍ୟ ବ୍ୟବହାର କରି ଆଜିପର୍ଯ୍ୟନ୍ତ କଥା ହେଉନଥିଲି । ହଠାତ୍ ୬ମାସ ତଳେ ଦେଖାହୋଇଥିଲେ ଏବଂ ମୁଁ ପଚାରିଲି- ଭାଇନା ରାଗିଛ ? ସେ କିନ୍ତୁ ହସିଦେଇ କହିଲେ, ମୁଁ କେବେ ତୋ ଉପରେ ରାଗେନାହିଁ । ବାସ୍, ସେତିକି । ତା'ପରେ ମୁଁ ଗୋଟିଏ ଅପରାଧୀ ପରି ଘୂରି ବୁଲୁଥିଲି- କେତେବେଳେ ଏକାନ୍ତରେ ତାଙ୍କୁ ସାକ୍ଷାତକରି କ୍ଷମା ପ୍ରାର୍ଥନା କରିବି । ହେଲେ ସବୁଦିନ ପାଇଁ ତାଙ୍କ ପାଖରେ ଅପରାଧୀଟିଏ ହୋଇ ରହିଯିବି, କେବେ ଭାବିନଥିଲି ।

*ଭୁବନେଶ୍ୱର*

ସୁଧୀର ଚନ୍ଦ୍ର ବେହୁରା

# ପରିଷଦ ପାରିଷଦ

ପରେରେ ଯାଏଗା ପରେରେ ଜମିନ୍
ଘର ବନାୟା ରହେ
ଏ ଘର ଆମର ନୟ... – ଲାଲନ୍ ଫକୀର

କିଏ ସେଇ ନିଦାରୁଣ ଘରମାଲିକ ? ମାସକୁ ମାସ ନୁହଁ, ପ୍ରତିଦିନ ଯିଏ ତାର ପାଉଣା ପଇଠ କରୁଥିଲା କଡ଼ାଗଣ୍ଡା କରି; ତାକୁ କାହିଁକି ଘରୁ ତଡ଼ିଦେଲା ? ତାକୁ ପଚାରିବାକୁ ମନ କହେ । ସେ ତ ନିଦାବିଷ୍ଣୁ, କାଲଗରଡ଼ । ତା’ ପାଖରେ ଯେତେ ମଥାପିଟିଲେ ମନ ତରଳିବନି । ଆମେ ଯେତେ କାନ୍ଦିଲେ, ଆମ ନିରୀହ ସାଥୀଟା ବାସହରା, ବାସ୍ତୁହରା ହୋଇଗଲା ବୋଲି ଅଭିଯୋଗ କଲେ କିଛି ଫଳ ନାହିଁ । ଆଉ ଗୋଟିଏ ଦିଗରୁ ବିଚାରିଲେ, ସେ ମହାଶୟ ବୋଧେ ଆମ ସାଥୀଙ୍କ ପ୍ରତି ପରମ ସଦୟ । ତାଙ୍କୁ ବାସଚ୍ୟୁତ କରି ଆମ ହୃଦୟର ନିଭୃତ କୋଠରିରେ ପ୍ରବେଶାଧିକାର ଦେଲେ ।

ଦେବେନ୍ଦ୍ରବାବୁଙ୍କ ଦେହ ବିଦେହରେ ପରିଣତ ହେଲା । ମଣିଷ କେତେ ପୁଣ୍ୟ ଅର୍ଜିଲେ ଏଭଳି ରୂପ ଘେନେ ? ଚାଲନ୍ତୁ, ଏ ଘଟାନ୍ତର ପ୍ରକ୍ରିୟାର ଉତ୍ସବ ପାଳିବା । ଉତ୍ସବ ପାଳିବା ଜଣେ ସମାଲୋଚନା ସାହିତ୍ୟ ସାରଥିଙ୍କର, ଆମ ପରିଷଦର ଜଣେ ସଦସ୍ୟଙ୍କର । ମୋତେ ଦେବେନ୍ଦ୍ରବାବୁ ବିୟୋଗ କେତେ ବ୍ୟକ୍ତିଗତ ଶୂନ୍ୟତା ଦେଇଛି ତାହା କଳ୍ପନାତୀତ, ତା’ର ହିସାବ ଦେବାର ସମୟ ଏ ନୁହେଁ । ସାମାଜିକ, ସାମୂହିକ ଶୂନ୍ୟତା ସଂପର୍କରେ କେତୋଟି କଥା କହିବି ।

ଓଡ଼ିଆ ସମାଲୋଚନା ସାହିତ୍ୟକୁ ସେ ଯେତିକି ସମୃଦ୍ଧ କରିଯାଇଛନ୍ତି, ତାକୁ କଳିଲେ ବହୁକାଳ ଲାଗିବ । ତା’ର ବିଶାଳ ସ୍ୱରୂପ । ମୋର କ୍ଷୁଦ୍ର ପରିବାର ପରିସର, ଓଡ଼ିଆ ଗବେଷଣା ପରିଷଦ ନିଃଶବ୍ଦ, ଶୂନ୍ୟ । କରୋନା ମହାମାରି କବଳରେ ପରିଷଦର କ୍ରମକ୍ଷୟିଷ୍ଣୁ

କାର୍ଯ୍ୟଧାରାକୁ ଯଥା ସମ୍ଭବ କର୍ମବର୍ଦ୍ଧିଷ୍ଣୁ କରିବାକୁ ତାଙ୍କ ପ୍ରଚେଷ୍ଟା, ବିତ୍ତିୟ ବୌଦ୍ଧିକ ଯୋଗଦାନ, ମୋତେ ସମୟୋଚିତ ପରାମର୍ଶ ଭୁଲିବାର ନୁହେଁ । ପରିଷଦ ପରିବାରର ଅନେକ ନିଷ୍କ୍ରିୟତା ଦେଖାଇଥିଲାବେଳେ ତାଙ୍କ ଆଶ୍ୱାସଦାୟୀ ଆଚରଣ ମୋର ସାହସକୁ ଦ୍ୱିଗୁଣିତ କରିଥିଲା । ମୋ କ୍ଷୀଣ ସାମର୍ଥ୍ୟ ଶ୍ରୋତକୁ ସୁନାବ୍ୟା କଲା ।

ଏଇ ନିକଟ ଅତୀତ କଥାକହେ । 'ଏଷଣା'ର ବାପୁ ବିଶେଷାଙ୍କ ପ୍ରକାଶନ ଆଶା ମୋର ମଉଳି ଯାଇଥିଲା । ସେଇ ଦରମଉଳା ଆଶା-ତରୁରେ ସେ ଦରଦୀ ମାଳୀ ପରି ଅଯାଚିତ ଉପଚାର କଲେ । ଆଗଭର ହୋଇ କେବଳ ଅର୍ଥ ସାହାଯ୍ୟ କଲେନି, ପାରମାର୍ଥିକ ସାହଚର୍ଯ୍ୟ ପ୍ରଦାନ କଲେ । ଆକର - ଉପାଦାନର ଭଣ୍ଡାରକୁ ବାଟ କହିଦେଲେ । ଅନ୍ୟ ସଦସ୍ୟଙ୍କୁ, ବିଶେଷ କରି ବାପୁ - ବିଶେଷାଙ୍କ ସଂପାଦିକା ସାୟଂତନୀକୁ, ଉଦ୍‌ବୋଧିତ କଲେ । ଅସାଧ କାର୍ଯ୍ୟ ସଂପନ୍ନ ହେଲା । ପରିଷଦ ଇତିହାସରେ ବାହ୍ୟ କଳେବର ଓ ଆନ୍ତଃସାରବତ୍ତା ଦୃଷ୍ଟିରୁ ବିପୁଳତା ଯୋଗୁଁ ବିଶେଷାଙ୍କ ସ୍ମରଣୀୟ ହେଲା । ବହୁ ବନ୍ଧୁଙ୍କର ପ୍ରଶଂସାଭାଜନ ହେଲୁ । ଶ୍ରମ ସାର୍ଥକ ହେଲା ।

ଦେବେନ୍ଦ୍ରବାବୁ, ଆପଣଙ୍କ ବାଘ-ପାଟିରୁ ଆହାର ଛଡ଼ାଇ ଆଣିବା ବଡ଼ କଷ୍ଟକର । ଆପଣ ମଣ ହେଲେ । ବର୍ଷବର୍ଷ ଧରି ମାଗିମାଗି ପ୍ରବନ୍ଧଟିଏ ଦେବାକୁ ମନଦେଉନଥିବା ଆପଣ କାହିଁକି ଦୟା କଲେ ? କ'ଣ ଝୁରି ହେବାପାଇଁ !

ଆପଣ ଆଉ ସଶରୀରେ ଦେଖାଦେବେନି, କିନ୍ତୁ ମୋପାଇଁ, ପରିଷଦ ପାଇଁ ଅଦୃଶ୍ୟ ପାରିଷଦ ହୋଇ କାଳକାଳକୁ ରହିବେ । ସତ୍ୟନଗରରେ ଆପଣଙ୍କ ମର ଶରୀର ପାଉଁଶ ହୋଇଗଲା ସତ, ହେଲେ ତାହା ଆମପାଇଁ ବିଭୂତି ପାଲଟିଲା । ଆପଣଙ୍କୁ ଭୁଲିବାର ନୁହେଁ, ଆପଣଙ୍କ ଜୁଇ ନିଆଁ ସିନା ଲିଭିଗଲା; ଆପଣଙ୍କ ହସ୍ତାକ୍ଷର ହଜିଯିବ ନାହିଁ, ଚିର ଜାଜ୍ୱଲ୍ୟମାନ ହୋଇ ଆଲୋକନ କରିବ । ବାଇଗଣ ମଂଜି ପରି ମିନିମିନି ଅକ୍ଷରରେ ମଝିରେ ମଝିରେ ଚିଠି ଦେଉଥିବେ, ଆଟିକ୍‌ଲ୍ ପଠାଉଥିବେ । ରହୁଛି, ଆଜି ବାକ୍‌ରୁଦ୍ଧ ହେଉଛି ... ଯେବେ ସ୍ଫୂରିବ କିଛି କହିବି ।

*ମାହାଙ୍ଗା*

## ସାବିତ୍ରୀ ଦାଶ

# ତାଙ୍କର ଯିବାର ନଥିଲା

ଜୀବନରେ ଯେଉଁ ଅଳ୍ପ କେତେଜଣଙ୍କୁ ବୁଝିପାରିନି, ସେମାନଙ୍କର ଗହଣରେ ସେ ଆଉ ଜଣେ । ମୋପାଇଁ ତାଙ୍କର ପରିଚୟ ଧାରେ ହସ, ଯାହା ସମଗ୍ର ଚେତନାରେ ସଂଚରି ଯାଏ । ଲାଗେ, ଏ ହସ କେବଳ ମୋପାଇଁ ନୁହେଁ, ସଂସାରରେ ସବୁ ମଣିଷଙ୍କପାଇଁ । ଭଲମନ୍ଦ ସୁଖଦୁଃଖରେ ଆମେ ସେ ହସ ପାଖକୁ ଯାଉଥିଲୁ ଏବଂ ସମାଧାର ସୂତ୍ର ସହଜରେ ମିଳିଯାଉଥିଲା ।

ଏବେ ଆମ ଲେଖାଲେଖି ଓ ପଢାପଢି କଥା । ତାଙ୍କୁ ନ ପଚାରିଲେ, ଆମ କଲମ ଚାଲେନି, ଅକ୍ଷର ଜନ୍ମ ନିଏନି । ତାଙ୍କ ପଠାଘରର ବହି ନ ଆଉାଇଲେ, ଆମ ମୁଣ୍ଡ କାମ କରେନି, ଆଖି ଖୋଲେନି । ସେ ଏକ ରହସ୍ୟମୟ ମଥା, ଅନ୍ତର୍ଭେଦି ଆଖି । ଏକ ବ୍ୟତିକ୍ରମ ।

ସବୁବେଳେ କହୁ ଆପଣ ଆଦୌ ନିଜର ନୁହନ୍ତି । ଏକ ଜାତିର ସମ୍ପଦ । ସମଗ୍ର ଜୀବନକାଳ ଧରି ସାଧିତ ବିଦ୍ୟା ସମ୍ପଦକୁ ଆପଣଙ୍କୁ ଜାତିପାଇଁ ସାଇତି ରଖିବାକୁ ହେବ । ରାଜ୍ୟ ସଂଗ୍ରହାଳୟ, ଅଭିଲେଖାଗାର, ଉତ୍କଳ ସାହିତ୍ୟ ସମାଜ, ଜାତୀୟ ପାଠାଗାରର ସବୁ ପତ୍ରପତ୍ରିକା ଓ ଲୋଡା ନଥି ଆପଣଙ୍କ ନୋଟ ବୁକ୍‌ରେ । ସେଗୁଡିକ ଭବିଷ୍ୟତରେ ଅନ୍ୟ କେହି ଦେଖିବେ ନା କି ବେଳେବେଳେ ସନ୍ଦେହ ଲାଗେ । ସେହି ସକଳର ତଥ୍ୟପୁଷ୍ଟ ଓ ବ୍ୟାଖ୍ୟାଧର୍ମୀ ଚର୍ଚ୍ଚା କରୁନାହାନ୍ତି କାହିଁକି ।

ସାହିତ୍ୟ, ଇତିହାସ, ଧର୍ମ, ଦର୍ଶନ, ନନ୍ଦନତତ୍ତ୍ୱ ଓ ଅନ୍ୟ କେତେକେତେ ବିଷୟରେ ଆପଣ କେତେ ବହି ପଢିଛନ୍ତି । ସେ ବହିର ନିର୍ଯ୍ୟାସ ଓଡିଆ ପାଠକମାନଙ୍କ ଚେତନାପତ୍ରରେ ପରଶି ଦେଉନାହାନ୍ତି କାହିଁକି । ବିଦ୍ୟା ସମ୍ପଦକୁ ନିଜ ମଥାରେ ସାଇତି ରଖିଲେ କଣ ବା ଲାଭ ଅଛି । ଏହା କଣ ଉତ୍ତର ପିଢିପାଇଁ ଆପଣଙ୍କର ଧର୍ମ, କି କର୍ତ୍ତବ୍ୟ ନୁହେଁ ?

ସେ ଆମ କଥା ଶୁଣନ୍ତି । କହନ୍ତି- ପାରୁନି । ଚେଷ୍ଟା କରିବି । ଏପରିକି ତାଙ୍କ ଆଲୋଚନାଗୁଡ଼ିକୁ ସଂକଳନରେ ସଜେଇ ରଖିବାପାଇଁ କେତେ ଅନୁରୋଧ କରିଛୁ । ସବୁବେଳେ କହିଛନ୍ତି, ହଁ କରିବି । ମାତ୍ର କରିନାହାନ୍ତି ।

ଏଇ କେତେଦିନ ତଳେ କହୁଥିଲେ, ତୁମେ ଆଉ ରଖେଇବସେଇ ଦେବନି । ଏଥର କରିବି ।

ସତକୁ ସତ ସେ କାମ ଆରମ୍ଭ କରିଦେଇଥିଲେ । ଗାନ୍ଧୀ ଓ ସୁଭାଷ ବୋଷଙ୍କ ବିଷୟରେ ଦୁଇଟି ଚମତ୍କାର ପ୍ରବନ୍ଧ ଲେଖିଥିଲେ । ଫକୀରମୋହନଙ୍କ ବିଷୟରେ ବି । ମାତ୍ର ଆଶ୍ଚର୍ଯ୍ୟ, ଚାଲିଗଲେ । ଏ ଜାତି ପାଇଁ, ତାଙ୍କ ପରିବାର ପାଇଁ, ଏମିତି ଆଦୌ ଯିବାର ନଥିଲା ।

ଏମିତି ହସମାନେ ଅସମୟରେ ଲିଭିଯାଆନ୍ତି କାହିଁକି କେଜାଣି ?

*ଖମାର, ଅନୁଗୋଳ*

## ଗିରୀଶ ସାହୁ

# ସ୍ମୃତିରୁ ଖିଏ

ସାହିତ୍ୟ ସମାଲୋଚକ, ଶିକ୍ଷାବିତ୍, ଗବେଷକ ଓ ଜଣେ ନିରୁଭା ପାଠକ ପ୍ରଫେସର ଦେବେନ୍ଦ୍ରନାଥ ଦାଶଙ୍କ ଅକାଳ ବିୟୋଗରେ ଓଡ଼ିଆ ସାରସ୍ୱତ ଜଗତରେ ଯେଉଁ ଅପୂରଣୀୟ କ୍ଷତି ହେଲା, ତାହା ଆଉ ପୂରଣ ହେଲାପରି ମନେ ହେଉନାହିଁ। ତାଙ୍କର ତଥ୍ୟନିଷ୍ଠ ସନ୍ଦର୍ଭ, ସମାଲୋଚନା, ସମ୍ପାଦନା, ତର୍କ, ବିତର୍କ ଓ ଆଲୋଚନା ଥିଲା ଅପୂର୍ବ ଓ ଅନନ୍ୟ। ଏମିତି ଜଣେ ଯୋଗଜନ୍ମା ସାରସ୍ୱତ ସ୍ରଷ୍ଟାଙ୍କ ସହ ମୋର ସମ୍ପୃକ୍ତି ଓ ସଂପ୍ରୀତି ଥିଲା। ତାଙ୍କୁ ମୁଁ ଭାଇନା ବୋଲି ସମ୍ବୋଧନ କରୁଥିଲି। ତାଙ୍କ ସହ ସଭାମଞ୍ଚରେ ବସିବାର ଦୁଇଥର ସୁଯୋଗ ମୁଁ ପାଇଛି। ଶେଷଥର ଭେଟ ହୋଇଥିଲା ୨୦୨୧ ମସିହା ମାର୍ଚ୍ଚମାସ ୬ତାରିଖରେ।

କେନ୍ଦ୍ରାପଡ଼ା ସ୍ୱୟଂଶାସିତ ମହାବିଦ୍ୟାଳୟରେ ଏକ ଜାତୀୟ ସେମିନାରରେ ଯୋଗ ଦେବାପାଇଁ ସେ ଓ ପ୍ରଫେସର କୃଷ୍ଣଚନ୍ଦ୍ର ପ୍ରଧାନ ଯାଉଥାଆନ୍ତି। ସାଲେପୁରରୁ ମୁଁ ଉଠିଲି, ସେ ଗାଡ଼ିରେ। କେନ୍ଦ୍ରାପଡ଼ା କଲେଜରେ ମୁଖ୍ୟ ଫାଟକରେ ଟଙ୍ଗାଯାଇଥିବା ଫ୍ଲେକ୍ସରେ ଲେଖାଥିଲା, '୧୯୮୦ ପରବର୍ତ୍ତୀ ଓଡ଼ିଆ କଥାସାହିତ୍ୟ' ଯାହା ଥିଲା ପ୍ରଥମ ଅଧିବେଶନର ବିଷୟବସ୍ତୁ। ଦେବେନ୍ଦ୍ର ଭାଇନା ପ୍ରଶ୍ନ କରିଥିଲେ, ୧୯୮୦ ମସିହା ଏମିତି ଏକ ଲକ୍ଷ୍ମଣରେଖା ଟାଣିବାର ମାନେ କ'ଣ ହୋଇପାରେ ? ପ୍ରଶ୍ନଟି ଆମ ଦୁହିଁଙ୍କୁ ଥିଲା। ଆମେ ଦୁହେଁ ନୀରବ ଥିଲୁ। ସଭାମୁଖ୍ୟ କୃଷ୍ଣ। ସେମିନାର ଆରମ୍ଭ ହେଲା। ଆଗରେ ବସିଥାଆନ୍ତି, ଦ୍ୱିତୀୟ ଅଧିବେଶନର ସଭାମୁଖ୍ୟ ଦେବେନ୍ଦ୍ର ଭାଇନା। ପ୍ରଥମ ଅଧିବେଶନ ସରିଲା। ଆମେ ମଞ୍ଚରୁ ଓହ୍ଲେଇ ଆସିଲୁ। ମୁହଁରେ ଥିଲା ତାଙ୍କର ସ୍ମିତହସ। ଯାହା ସବୁବେଳେ ଥାଏ। କହିଲେ, 'ଭଲ ଆଲୋଚନା ହେଲା। ମୋ ପ୍ରଶ୍ନର ଉତ୍ତର ବି ମୁଁ ପାଇଗଲି।' ଦ୍ୱିତୀୟ ଅଧିବେଶନ ସରୁ ସରୁ ସନ୍ଧ୍ୟା ପ୍ରାୟ। ଆମ ଘରକୁ କୃଷ୍ଣ ଓ

ଭାଇନା ଆସିଥିଲେ। ଆମେ ବଗିଚାରେ ଫଟୋ ଉଠାଇଲୁ। ମୋ ସ୍ତ୍ରୀଙ୍କୁ ଡାକି ଆମ ସହ ଠିଆହେବା ପାଇଁ କହିଲେ। କହିଲେ, ଯିଏ ଆମକୁ ଆତିଥ୍ୟ ଦେଲେ, ତାଙ୍କୁ ବାଦ୍‌ଦେଇ କ'ଣ ଫଟୋ ଉଠାଯାଏ ?

କୃଷ୍ଣଠାରୁ ପ୍ରଥମେ ତାଙ୍କ ମୃତ୍ୟୁସମ୍ବାଦ ଶୁଣି ମୁଁ ହତବାକ୍ ହେଲି। ଏମିତି ଅବେଳରେ ଚାଲିଯିବାଟା ଅନେକଙ୍କ ପରି ମୋତେ କଷ୍ଟ ଦେଇଛି। ଘଣ୍ଟାକଣ୍ଟାରେ ସମୟକୁ ସମ୍ମାନ ଦେଉଥିବା ମଣିଷଟି ଏବେ ଚିରନିଦ୍ରାରେ। ସେହି ଅମରଆତ୍ମା ଉଦ୍ଦେଶ୍ୟରେ ମୋର ଭକ୍ତିପ୍ଳୁତ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି।

*ସାଲେପୁର*

## ବିଜୟଲକ୍ଷ୍ମୀ ଦାଶ

# ପ୍ରଜ୍ଞା ଓ ପ୍ରତିଭାର ପରିଣୟ

ସେଦିନ ପ୍ରାୟ ଦିନ ୧୨ଟା ୩୦ ପାଖାପାଖି ହେବ। ହଠାତ୍ ଅସିତ୍ ଭାଇଙ୍କର ଫେସ୍‌ବୁକ୍ ପୋଷ୍ଟଟି ଚମକାଇଦେଲା। ପୋଷ୍ଟଟି ଦେଖିଲା ପରେ ବିଶ୍ୱାସ କରିହେଲାନି ଆମ ଭିତରେ ଥିବା ଆପଣାର ମଣିଷଟି ଆଉ ନାହିଁ। କାହାକୁ କିଛି ନ ଜଣାଇ ନୀରବରେ ଚାଲିଯାଇଛନ୍ତି। ୧୪ତାରିଖ ସନ୍ଧ୍ୟାରେ ସାର୍‌ଙ୍କ ସହ ଶେଷ କଥାବାର୍ତ୍ତା। ଦେହ ଅସୁସ୍ଥ ବୋଲି ସାମାନ୍ୟ ସୂଚନା ଦେଇଥିଲେ। ଗବେଷଣାଚକ୍ର କାର୍ଯ୍ୟକ୍ରମକୁ ୨୮/୮ କୁ ଘୁଞ୍ଚାଇବାକୁ ପରାମର୍ଶ ଦେଲେ। ସଦା ଚଞ୍ଚଳ, କାର୍ଯ୍ୟବ୍ୟସ୍ତ, ତୋଫା ଗୋରା ତକ୍‌ତକ୍ ମଣିଷଟି ଯିଏ କାହାକୁ ଭୟକରେନି, ଯିଏ ସ୍ପଷ୍ଟବାଦୀ, ମୃତ୍ୟୁ ପ୍ରତି ବେଖାତିରଭାବ ପ୍ରଦର୍ଶନ କରୁଥିବା ଏଇ ସ୍ୱାଧୀନଚେତା ସ୍ୱାଭିମାନୀଙ୍କ ପାଇଁ ଜୀବନ ଥିଲା ଖୁବ୍ ପରିବ୍ୟାପ୍ତ। ସେ ଜୀବଜଗତକୁ ଭଲ ପାଉଥିବା ଏକ ଭିନ୍ନ ବ୍ୟକ୍ତିତ୍ୱ। ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନର ବିଭିନ୍ନ କର୍ମଶାଳା, ଆଲୋଚନାଚକ୍ର ହେଉ ବା ଗବେଷଣାଚକ୍ରର କୌଣସି କାର୍ଯ୍ୟକ୍ରମ ହେଉ ଯେତେଥର ତାଙ୍କୁ ପାଖରୁ ଦେଖିଛି, ଯେଉଁ ଆଲୋଚନାଚକ୍ରରେ ତାଙ୍କୁ ଶୁଣିଛି, ସେଇଥିରୁ ଅନୁଭବିଛି ତାଙ୍କ ଜ୍ଞାନର ଗଭୀରତାକୁ। ସମାଲୋଚନା ଯେମିତି ତାଙ୍କ ଜୀବନର ସବୁଠାରୁ ବଡ଼ ପ୍ରାପ୍ତି ଏବଂ ଏହାକୁ ଜୀବନ କରି ସେ ବଞ୍ଚିଚାଲିଥିଲେ ପ୍ରତିଟି ମୁହୂର୍ତ୍ତ। ଛୋଟ ବଡ଼ ବାଛବିଚାର ମନରେ ନ ରଖି ମୋ ସହ ବହୁ କାର୍ଯ୍ୟରେ ସାର୍ ଯୋଗ ଦେଇଛନ୍ତି। ତରୁଣମାନଙ୍କୁ ଉତ୍ସାହିତ କରି ଆଗକୁ ଆଣିବାରେ ତାଙ୍କର ସ୍ୱତଃସ୍ଫୁର୍ତ୍ତ ଆଗ୍ରହ ଅବିସମ୍ବାଦିତ। ସମାଲୋଚନା, ସମ୍ପାଦନା, ସଙ୍ଗଠନ ପରିଚାଳନା, ଅନୁବାଦ କାମ ସବୁଥିରେ ସେ ଉତ୍ସର୍ଗୀକୃତ ଓ ନିରଳସ କର୍ମୀ। ସେ ନେତୃତ୍ୱ ଦିଅନ୍ତି ଓ ନେତୃତ୍ୱ ଦେଉ ଦେଉ ତା'ରି ଭିତରେ ନିଜକୁ ହଜାଇ ଦିଅନ୍ତି।

ଜୀବନ-ଜୀବିକାର ସବୁ ଲୋଭନୀୟ ଆକର୍ଷଣକୁ ତ୍ୟାଗକରି ସାହିତ୍ୟକୁ ତୀର୍ଥ କରିଥିବା ମୋର ପ୍ରିୟ ଆଦର୍ଶ ଦେବେନ୍ଦ୍ର ସାର୍‌ଙ୍କ କଥା ଯେତେ ଲେଖିଲେ ସରିବନାହିଁ। ସାର୍‌ଙ୍କର ବହି ପ୍ରତି ପ୍ରବଳ ଦୁର୍ବଳତା ଥିଲା। ଯେଉଁସବୁ ଉପାଦେୟ ପତ୍ରିକା ଓ ବହି ଓଡ଼ିଶାର ବିଖ୍ୟାତ ଗ୍ରନ୍ଥାଗାରରେ ମିଳେନା- ମିଳେ ଦେବେନ୍ଦ୍ର ସାର୍‌ଙ୍କ ଘରର ବହି ସଂଗ୍ରହ ଭିତରେ। ଏସବୁ ଭିତରେ ଆଉ ଏକ ପରିଚୟ ସାର୍‌ଙ୍କ ଭିତରେ ଦେଖିପାରୁଥିଲି। ସାର୍ କେତେ ସାଧାରଣ ଥିଲେ। ବ୍ୟବହାର ତାଙ୍କର ମଧୁରତାରେ ପୂର୍ଣ୍ଣ ଥିଲା। ସତେଯେପରି ବହୁତ ଆପଣାର। ସବୁକଥାରେ ଅଳ୍ପରେ ସନ୍ତୁଷ୍ଟ ହୋଇଯାଆନ୍ତି। କିନ୍ତୁ ସାଧନା ଓ କାର୍ଯ୍ୟରେ ହିମାଳୟ ସଦୃଶ। ପ୍ରଜ୍ଞା ଓ ପ୍ରତିଭାର ଏଇ ବିଶିଷ୍ଟ ବିଦ୍ଧାଣୀଙ୍କୁ ମୋର ଭକ୍ତିପୂତ ଶ୍ରଦ୍ଧାସୁମନ ଅର୍ପଣ କରୁଛି। ଆପଣଙ୍କର ନିର୍ମଳ ବ୍ୟକ୍ତିତ୍ୱ, ବ୍ୟକ୍ତିତ୍ୱର ପ୍ରୀତିଦାୟୀ ବିଶାଳତା, ପ୍ରଜ୍ଞାର ଅନ୍ତର୍ଦ୍ଦୀପନ ଚିରକାଳ ମୋତେ ପ୍ରଭାବିତ କରୁ, ଈଶ୍ୱରଙ୍କ ପାଖରେ ଏତିକି ପ୍ରାର୍ଥନା।

*କଟକ*

## ପ୍ରଭାକର ରାଉତ

# କ୍ଷତି ଅପୂରଣୀୟ

ମୋର ପରମ ଆତ୍ମୀୟ ଓ ପ୍ରଣମ୍ୟ ପୁରୁଷ ଦେବେନ୍ଦ୍ର କୁମାର ଦାଶଙ୍କ ଅକାଳ ଦେହାନ୍ତ ଅତୀବ ଦୁଃଖଦ। ସେ ଯେ ଏତେ ସଅଳ ଆମ ଗହଣରୁ ବିଦାୟ ନେବେ ଓ ତତ୍ତୁଲ୍ୟ ସାରସ୍ୱତ ସାଧକଙ୍କ ଶାଣିତ ଲେଖନୀ ସବୁଦିନପାଇଁ ନିରବ ହୋଇଯିବ ଏ କଥା ଭାବିବାକୁ ଡର ସହୁନି। ଦାଶ ସାର୍‌ଙ୍କ ଋଷିପ୍ରତିମ ସୁଦର୍ଶନ ଚେହେରା, ସହାସ୍ୟ ବଦନ ଏବଂ ମଧୁସ୍ରାବୀ ବଚନ ତାଙ୍କ ଅବର୍ତ୍ତମାନରେ ମୋ ମନକୁ ସଦା ଆନ୍ଦୋଳନ କରୁଛି।

ତାଙ୍କ ଜୀବନ ବୃତ୍ତାନ୍ତ ବେଶ୍ ଆକର୍ଷଣୀୟ। ଲିଖନ ଓ ପଠନ ବ୍ୟତୀତ ମୁକ୍ତବକ୍ତା ଭାବେ ତାଙ୍କର ଖ୍ୟାତି ଅମାପ। ସେ କେବଳ ଜଣେ ନିରପେକ୍ଷ ସମାଲୋଚକ ନଥିଲେ; ବରଂ ଦୁଷ୍ପ୍ରାପ୍ୟ ପୁସ୍ତକଗୁଡ଼ିକୁ ସଂଗ୍ରହ ଓ ସଂପାଦନା ଏବଂ ତା'ର ଦୀର୍ଘ ମୁଖବନ୍ଧ ଲେଖି ଚିହ୍ନରା ପାଠକଙ୍କ ଉଦ୍ଦେଶ୍ୟରେ ସମର୍ପିବାକୁ ଅଧିକ ପସନ୍ଦ କରୁଥିଲେ। ସାଂସ୍କୃତିକ ଅନୁଷ୍ଠାନ ସହ ଯୋଡ଼ି ହେବାର ସାଦର ନିମନ୍ତ୍ରଣକୁ ଅଗ୍ରାହ୍ୟ ନ କରିବା ଓ ଲୋକସମ୍ପର୍କ ରକ୍ଷା କରିବା ଥିଲା ତାଙ୍କର ବିଶେଷତ୍ୱ। ସ୍ଥଳବିଶେଷରେ ବ୍ୟକ୍ତି ସମ୍ମୁଖରେ ଅପ୍ରିୟ ସତ୍ୟ କଥା କହୁଥିଲେ ବି ପ୍ରଶଂସାଭାଜନ ବ୍ୟକ୍ତିଙ୍କୁ ସେ ହତାଦର କରୁ ନଥିଲେ।

ସ୍ୱାଭିମାନ, ପ୍ରଚାର ବିମୁଖତା ତଥା ନିର୍ଭୀକତାକୁ ନେଇ ସେ ଜୀବନ ବଞ୍ଚୁଥିଲେ। ପ୍ରତିଶ୍ରୁତିବଦ୍ଧତା ଥିଲା ତାଙ୍କର ଅସ୍ଥିମଜ୍ଜାଗତ। ମନେହୁଏ ସ୍ୱଭାବକବି ଗଙ୍ଗାଧରଙ୍କ-

"କୂର୍ମଶିର ପରି ଇତର ବଚନ
କ୍ଷଣେ କ୍ଷଣେ ବାହାରଇ
ଗଜଦନ୍ତବତ୍ ମହତ୍ ବଚନ
ବାହାରିଲେ ନ ଘୁଞ୍ଚଇ।" ସଦୃଶ ସଦୁକ୍ତିକୁ ସେ ବିଶେଷ ଭାବେ ବୁଝି ଦୀର୍ଘକାଳବ୍ୟାପୀ କାର୍ଯ୍ୟକାରୀ କରିବାକୁ ଚେଷ୍ଟିତ ଥିଲେ। ସୁତରାଂ, ତାଙ୍କ ଜୀବନଭୂମିର ଇନ୍ଦ୍ରପଣର

ଅଧିକାରୀମାନେ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟମାନ ତାଙ୍କ ଉପରେ ନ୍ୟସ୍ତ କରି ନିଶ୍ଚିତ ରହୁଥିଲେ। ଯେପରି ଇସ୍ପାତ୍ ମହାବିଦ୍ୟାଳୟ, ରାଉରକେଲାରେ ୨୦୦୬ ଡିସେମ୍ବର ୨୬ ଓ ୨୭ରେ ଅନୁଷ୍ଠିତ 'ଜାତୀୟ ସଂପାନ'ର ଦାୟିତ୍ୱ ବହନ କରିବା ଓ ଅପୂର୍ବ ସଫଳତା ହାସଲ କରିବା ବ୍ୟତୀତ ଉକ୍ତ ଶିକ୍ଷାନୁଷ୍ଠାନକୁ ପରବର୍ତ୍ତୀ ସମୟରେ 'ସ୍ୱୟଂଶାସିତ' ମାନ୍ୟତା ଆଣି ଦେବାରେ ତାଙ୍କର ଭୂମିକା ଅତୁଳନୀୟ।

ସର୍ବୋପରି ଉପରିଲିଖିତ ମହାବିଦ୍ୟାଳୟରେ ତାଙ୍କର ସହକର୍ମୀ ଭାବେ କାର୍ଯ୍ୟ ନିର୍ବାହ କରିବାର ସୁଯୋଗ ଥିଲା ମୋର ଶ୍ରେଷ୍ଠ ସୌଭାଗ୍ୟ। ଏ ସମୟରେ ତାଙ୍କଠାରୁ ଯେଉଁ ଶ୍ରଦ୍ଧା, ସାହାଯ୍ୟ ଓ ସହଯୋଗ ପାଇଛି, ତାହା ଅଭୁଲା। ସେଥିଲାଗି ମୁଁ ସତତ କୃତଜ୍ଞ। ଏବଂବିଧ ଯଶସ୍ୱୀ ବ୍ୟକ୍ତିଙ୍କର ବିୟୋଗଜନିତ ଶୂନ୍ୟସ୍ଥାନ ଅପୂରଣୀୟ ହୋଇରହିବ ଓ ତଜ୍ଜନିତ କ୍ଷତି ଆମକୁ ସହିବାକୁ ପଡ଼ିବ। ଏ ଅବସରରେ ତାଙ୍କର ଅମର ଆତ୍ମାର ସଦ୍‌ଗତି କାମନା ପୂର୍ବକ ମୋର ଶେଷ ପ୍ରଣତି ଜ୍ଞାପନ କରୁଛି।

*ରାଉରକେଲା*

### ପ୍ରଭାତୀ ସିଂହ

# ସେ ଏକ ଜ୍ଞାନକୋଷ

"ସ୍ମୃତି ଜିଇଁ ରହେ
ସ୍ମୃତି ଲୁହ ହୁଏ
ସ୍ମୃତି ରହିଯାଏ
ଛାତି ସିନ୍ଦୁକରେ
ଶାମୁକାରେ ମୋତି ପ୍ରାୟେ।"

ଏମିତି ଏକ ଅବିସ୍ମୃତ ସ୍ମୃତିପାଇଁ ସ୍ମୃତିର ନୈବେଦ୍ୟ ବାଢ଼ିଲା ବେଳେ ମୁଁ ଭିଜିଯାଇଛି ସ୍ମୃତିର ଲୁହରେ। ଓଡ଼ିଆ ସାହିତ୍ୟର ବିଶିଷ୍ଟ ସମାଲୋଚକ, ଅଧ୍ୟାପକ, ଗବେଷକ, ବାଗ୍ମୀ, ସୁସଂଗଠକ ତଥା ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନର ସୁଦକ୍ଷ ସଭାପତି ପ୍ରଫେସର ଦେବେନ୍ଦ୍ର କୁମାର ଦାଶ। ସବୁରି ପ୍ରିୟ ଓ ପ୍ରଣମ୍ୟ ଦେବେନ୍ଦ୍ର କୁମାର ଦାଶ। ତାଙ୍କର ପ୍ରବୃତ୍ତି ଥିଲା ଶିକ୍ଷାଦାନ ଗବେଷଣା ଓ ସମାଲୋଚନା। ସୂର୍ଯ୍ୟ ଯେମିତି ବାଛବିଚାର ନ ରଖି ସବୁଠି ନିଜର ଆଲୋକ ଢାଳି ଦେଇଥାନ୍ତି, ସେମିତି ଦେବେନ୍ଦ୍ର ସାର୍ (ମୁଁ ତାଙ୍କୁ ସାର୍ କୁହେ, ଯଦିଓ ସେ ମୋର ସହକର୍ମୀ ଥିଲେ ମୁନିସିପାଲ ମହାବିଦ୍ୟାଳୟରେ) କେବଳ ଶିକ୍ଷା କ୍ଷେତ୍ରରେ ନୁହେଁ, ଓଡ଼ିଆ ସାହିତ୍ୟର ବହୁବିଧ ବିଭାଗକୁ ଜଣେ ସମାଲୋଚକ, ଗବେଷକ, ପ୍ରାବନ୍ଧିକ ରୂପେ ଅକାତରେ ଅମୃତ ବାଣ୍ଟି ଚାଲିଥିଲେ। ସେ ଏକ ବିରାଟ ଜ୍ଞାନକୋଷ କହିଲେ ଅତ୍ୟୁକ୍ତି ହେବ ନାହିଁ। ତାଙ୍କର ସେହି ଅମୃତମୟ ଦାନର ସ୍ପର୍ଶ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛି। ଏଇ କ୍ଷଣଭଙ୍ଗୁର ପୃଥିବୀରେ ଓଡ଼ିଆ ସାହିତ୍ୟକୁ ଅମୃତ ବାଣ୍ଟି ଚାଲିଥିବା ହୃଦୟବାନ ହୃଦ୍‌ଘାତରେ ଆକ୍ରାନ୍ତ ହୋଇପଡ଼ିଲେ....। କବିଙ୍କର ପଂକ୍ତି ସ୍ମରଣକୁ ଆସେ। ଯେପରି-

"ମଣିଷ ମରିବ ଦିନେ ଜନ୍ମ ହୋଇ ଦେବତା ବି ମରେ,
ସାର୍ଥକ ଜନମ ତା'ର ଯାହା ପାଇଁ ମାଟି ଗୋଡ଼ି ଝୁରେ।"

ଏମିତି ଏକ ଅମର ଆତ୍ମାଙ୍କ ପାଇଁ ଏହା ହିଁ ଚିରନ୍ତନ ସତ୍ୟ । ଜଣେ ସାଧାରଣ ଚେହେରାର ଅସାଧାରଣ ବ୍ୟକ୍ତିତ୍ୱ ଥିଲେ ଦେବେନ୍ଦ୍ର ସାର୍ । ନିଜର କର୍ମ ଓ ପ୍ରତିଭା ବଳରେ ସେ ସାହିତ୍ୟ ସାଧନା କ୍ଷେତ୍ରରେ ଯେଉଁ କୀର୍ତ୍ତିସ୍ତମ୍ଭ ସ୍ଥାପନ କରିଯାଇଛନ୍ତି, ତାହା ଚିରଦିନ ପାଇଁ ସ୍ୱର୍ଣ୍ଣାଭ ଦୀପ୍ତିରେ ଲିପିବଦ୍ଧ ହୋଇରହିବ ଜନମାନସରେ । ପ୍ରଣାମ କରୁଛି ଏ ଦିବଂଗତ ଅମର ଆତ୍ମାଙ୍କୁ... ସ୍ମୃତିର ନୈବେଦ୍ୟ ଅର୍ପଣ କରୁଛି... କାଳଜୟୀ ସମର୍ଥ ମଣିଷଙ୍କୁ... ମଥା ନୁଆଁଇ ଶ୍ରଦ୍ଧାଞ୍ଜଳି ବାଢୁଛି ।

*ଭୁବନେଶ୍ୱର*

କମ୍ବୁପାଣି ସାମନ୍ତ

# ଦିବ୍ୟଲୋକରେ ଦେବେନ୍ଦ୍ର

ଦେବେନ୍ଦ୍ର କୁମାର ଦାଶଙ୍କ ମହାପ୍ରୟାଣ ଅବେଳରେ ଘଟିଗଲା । ଏହା ଆମପାଇଁ ଏକ ଦୁଃସମ୍ବାଦ। ଏବେ ଆମେ ତାଙ୍କୁ ଅତୀତ କାଳରେ ମନେ ପକାଇବା, 'ଏ ବିଷୟରେ ଦେବେନ୍ଦ୍ରବାବୁ କହିପାରିବେ', ଏହାକୁ 'ଦେବେନ୍ଦ୍ରବାବୁ ଥିଲେ ଏ ବିଷୟରେ କହିପାରିଥା'ନ୍ତେ' ବୋଲି ଆମେ କହିବା । ପଚିଶିବର୍ଷ ତଳର ସ୍ମୃତିଟିଏ ମନକୁ ଆସୁଛି -

୧୯୯୭ ମସିହା। ଭଞ୍ଜନଗରର କବିସମ୍ରାଟ ଉପେନ୍ଦ୍ରଭଞ୍ଜ ମହାବିଦ୍ୟାଳୟରେ ଓଡ଼ିଆ ବିଭାଗମୁଖ୍ୟ ଭାବେ ମୁଁ କାର୍ଯ୍ୟ କରୁଥାଏ। ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ଓଡ଼ିଆ ବିଭାଗର ପ୍ରଫେସର ଥା'ନ୍ତି ଡକ୍ଟର ଦାଶରଥି ଦାସ। ସେତେବେଳେ ବିଭିନ୍ନ ସମୟରେ ଦାଶରଥି ସାର୍‌ଙ୍କୁ ଭେଟି ନାନା ବିଷୟ ଆଲୋଚନାର ସୁଯୋଗ ମୁଁ ପାଉଥିଲି। ଥରେ ଓଡ଼ିଆ ବିଭାଗରୁ ପ୍ରାଶାସନିକ ଭବନକୁ ସାର୍ ଯାଉଥିବା ବେଳେ ମୁଁ ତାଙ୍କ ସାଙ୍ଗରେ ଥିଲି। ଗୋଟିଏ ପତ୍ରିକାରେ ପ୍ରକାଶିତ ଦେବେନ୍ଦ୍ର କୁମାର ଦାଶଙ୍କ ଲେଖାଟିଏ ସଂପର୍କରେ ମୁଁ କଥା ଆରମ୍ଭ କଲି। କିଛି ମନ୍ତବ୍ୟ ଦେବା ସହିତ ଦାଶରଥି ସାର୍ କହିଲେ- "ଦେବେନ୍ଦ୍ରବାବୁ ଭଲ ଲେଖନ୍ତି। ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ହେବା ଭଳି ଯୋଗ୍ୟତା ତାଙ୍କର ଅଛି।"

ଓଡ଼ିଶାର ବରେଣ୍ୟ ବିଦ୍ୱାନ, ଚଳନ୍ତା ଜ୍ଞାନକୋଷ ତୁଲ୍ୟ ପ୍ରଫେସର ଦାଶରଥି ଦାସଙ୍କ ଏ ମନ୍ତବ୍ୟର ତାତ୍ପର୍ଯ୍ୟ ବୁଝାଇ କହିବା ଅନାବଶ୍ୟକ। ଦେବେନ୍ଦ୍ରବାବୁଙ୍କ ପରି ଗବେଷଣାପିଣ୍ଡିତ ବିଦ୍ୟାନୁରାଗୀମାନେ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ହେବା ବାଞ୍ଛନୀୟ। ଦେବେନ୍ଦ୍ରକୁମାରଙ୍କ ବିଦ୍‌ବତ୍ତା ଓ ବିଚକ୍ଷଣତାକୁ ବିଶ୍ୱବିଦ୍ୟାଳୟ ଅଧ୍ୟାପକଙ୍କ ଯୋଗ୍ୟତାର ମାନଦଣ୍ଡ ରୂପେ ବିବେଚନ କରାଯିବା ମୋତେ ଅଭିଭୂତ କରିଥିଲା। ଗବେଷଣା ପ୍ରତି ଉତ୍ସର୍ଗୀକୃତ ଜୀବନ ଥିଲା ଦେବେନ୍ଦ୍ରବାବୁଙ୍କର। ପ୍ରବନ୍ଧ-ସମାଲୋଚନା ଓ ସଂପାଦିତ ବିଭିନ୍ନ ଗ୍ରନ୍ଥାବଳୀରେ ତଥ୍ୟ ଓ ତତ୍ତ୍ୱପୁଷ୍ଟ ମୁଖବନ୍ଧରୁ ତାଙ୍କର ଅନୁଶୀଳନର ନୂତନତା, ଗଭୀରତା ଓ ବ୍ୟାପ୍ତିକୁ ଯେ କେହି

ଅନୁଭବ କରିପାରିବେ। କବି କହିବା ପରି, "କର ରସ ଜାତ, କରି ଧୀଷଣା ମନ୍ଦର ପର୍ବତ" (ଦୀନକୃଷ୍ଣ) । ସାହିତ୍ୟ-ସିନ୍ଧୁକୁ ଆପଣାର ଧୀଷଣାରୂପୀ ମନ୍ଦର ପର୍ବତଦ୍ୱାରା ମନ୍ଥନ କରି ସେ ଅମୃତ ପରିବେଷଣ କରିଛନ୍ତି। ସଞ୍ଜିବନୀର ଉଦ୍‌ଭାବନ ପାଇଁ ଅମୃତ ଅନୁପ୍ରେରିତ କରିଥିଲା। ଅମୃତ କିନ୍ତୁ ବିକଳ୍ପଶୂନ୍ୟ ଏକକ। ପଲ୍ଲବଗ୍ରାହୀ, ଉପାଧିଜଡ଼ିତ, ତଥାକଥିତ ଗବେଷକଙ୍କ ଗହଣରୁ ସ୍ୱତନ୍ତ୍ର ରହିବା ଭଳି ଉପାଦାନରେ ଈଶ୍ୱର ତାଙ୍କୁ ସୃଷ୍ଟି କରିଥିଲେ। ତେଣୁ ତାହା ତାଙ୍କପାଇଁ ଏକ ଆକର୍ଷଣୀୟ ପରିଚୟଟିଏ ସୃଷ୍ଟି କରିପାରିଛି। ଋଷିଟିଏ ବ୍ରହ୍ମଜ୍ଞାନର ଧ୍ୟାନରେ ନିବିଷ୍ଟ ରହିବା ପରି (ତା' ବିନୁ ନାହିଁ ଆନେ ଧ୍ୟାନ / ଋଷିର ଯଥା ବ୍ରହ୍ମଜ୍ଞାନ-ଉପେନ୍ଦ୍ରଭଞ୍ଜ) ଦେବେନ୍ଦ୍ରବାବୁଙ୍କ ସାଧନାର ନିରନ୍ତରତା ଓଡ଼ିଆ ସାହିତ୍ୟକୁ ବହୁମୂଲ୍ୟ ଦାନ ଦେଇପାରିଛି। ଇଂରାଜୀ ଭାଷାରେ ଲେଖିପାରୁଥିବା ଓଡ଼ିଆ ଅଧ୍ୟାପକଙ୍କ ଭିତରେ ଦେବେନ୍ଦ୍ରବାବୁଙ୍କ ନାମ ଉଲ୍ଲେଖନୀୟ। ତାଙ୍କଠାରୁ ଆମେ ଅଧିକ ଆଶା କରିଥିବା ବେଳେ ସେ ଦିବ୍ୟଲୋକକୁ ଆପଣେଇ ନେଇଛନ୍ତି। ଆତ୍ମାର ସଦ୍‌ଗତି ମୁଁ କାମନା କରୁଅଛି।

*ଭଞ୍ଜନଗର*

ହୀରନ୍ ଲାଗୁନ୍

# ଦେବେନ୍ଦ୍ରସାର୍‌ଙ୍କୁ ଚିଠି

ସମ୍ମାନାସ୍ପଦ ସାର୍,

ଆପଣଙ୍କ ସାଙ୍ଗେ ମୋର ପ୍ରଥମ ଦେଖା ସ୍ୱୟଂଶାସିତ ସରକାରୀ ମହାବିଦ୍ୟାଳୟ, ରାଉରକେଲାର + ୨ ପରୀକ୍ଷା ଖାତା ମୂଲ୍ୟାଙ୍କନ ସମୟରେ। ବହୁ ବର୍ଷ ତଳର କଥା ଏଇଟା। ଆପଣଙ୍କ ତତ୍ତ୍ୱାବଧାନରେ ଖାତାଦେଖା। ଆଗରୁ ଶୁଣିଥିଲି ଆପଣଙ୍କ ବିଷୟରେ। ଆପଣଙ୍କ ଜ୍ଞାନ, ପାଣ୍ଡିତ୍ୟ, ଗୁଣଗରିମା କଥା। ଖାତାଦେଖା ଯେତେ ଦିନ ଚାଲିଲା, ମନ ଭିତରେ ଭାରି ଡର। କିନ୍ତୁ ସେଇ ଭୟ ଭିତରେ ମଧ୍ୟ ଆପଣଙ୍କ ପ୍ରତି ଅଜାଣତରେ ଅନ୍ତର ଭିତରେ ଅନେକ ସମ୍ମାନ। ପରବର୍ତ୍ତୀ ସମୟରେ ବହୁ ସମ୍ମାନ ଓ ସାହିତ୍ୟ ଆଲୋଚନାଚକ୍ରରେ ଆପଣଙ୍କ ସହିତ ଦେଖାହୁଏ। ପାଦଧୂଳି ନିଏ; କିନ୍ତୁ ସାହସ ପାଏ ନାହିଁ କିଛି କଥା କହିବାକୁ।

ବହୁ ଦିନ ପରେ.... ୨୦୧୩ ବେଳକୁ ମୋ ଡାଲମିଆ ମହାବିଦ୍ୟାଳୟରେ ଓଡ଼ିଆ ବିଭାଗ ତରଫରୁ ଜାତୀୟ ସମ୍ମାନର ଆୟୋଜନ କରାଗଲା। ସମ୍ମାନର ସମ୍ପାଦିକା ଭାବରେ ମୁଁ ବହୁ ବିଜ୍ଞ ବ୍ୟକ୍ତିଙ୍କର ସହଯୋଗ ଲୋଡ଼ିଥିଲି। ଏଭଳି ଏକ ମହାନ ବ୍ୟକ୍ତି, ପୁଣି ବିଜ୍ଞ ଓ ପଣ୍ଡିତ– ମୋର ସାହସ ହେଉ ନଥିଲା ଆପଣଙ୍କ ସହିତ ଏ ସମ୍ପର୍କରେ ଆଲୋଚନା କରିବା ପାଇଁ। ତତ୍‌କାଳୀନ ଅଧ୍ୟକ୍ଷ ମୁନିଲାଲ ଜୟସୱାଲ, ପ୍ରଫେର ଜଗନ୍ନାଥ ଦାସ, ଅଧ୍ୟାପକ ନଗେନ ଦାସଙ୍କ ସହାୟତାରେ ଆପଣଙ୍କ ସହିତ ଯୋଗାଯୋଗ କରିପାରିଥିଲି। ଜାତୀୟ ସମ୍ମାନରେ କିଏ ବିଷୟ ବିଶାରଦ, କିଏ ମୁଖ୍ୟଅତିଥି, କିଏ ମୁଖ୍ୟବକ୍ତା ଭାବରେ ନିମନ୍ତ୍ରିତ ହେବେ ସମସ୍ତ ତାଲିକା ପ୍ରସ୍ତୁତ ହୋଇପାରିଥିଲା ଘଣ୍ଟାକ ମଧ୍ୟରେ। ମନେହେଲା, ସାର୍‌ଙ୍କ ପାଖରେ ସମସ୍ତ ସମସ୍ୟାର ସମାଧାନ ପାଇଁ ବାଟ ରହିଛି।

ନଭେମ୍ବର ମାସ ୨୦୧୫ ବେଳକୁ ପୁଣି ଥରେ ଓଡ଼ିଆ ବିଭାଗ, ଡାଲମିଆ ମହାବିଦ୍ୟାଳୟ ପ୍ରାଙ୍ଗଣରେ ଦ୍ୱିତୀୟ ଥରପାଇଁ ଜାତୀୟ ସମ୍ମାନର ଆୟୋଜନ କରିବାର

ଆଗ୍ରହ ରଖିଲି । ସେଇ ଥର କିନ୍ତୁ ପ୍ରଫେସର ଜଗନ୍ନାଥ ସାର୍‌ଙ୍କ ସହଯୋଗରେ ଆପଣଙ୍କ ବାସଭବନକୁ ଯାଇଥିଲି । ଆପଣଙ୍କ ବାସଭବନରେ ବହୁ ସମୟ ଧରି ଆଲୋଚନା ଚାଲିଲା, କାରଣ ସମ୍ମାନର ବିଷୟବସ୍ତୁ ଥିଲା ଭିନ୍ନ ଧରଣର । 'ସାଂପ୍ରତିକ ଓଡ଼ିଆ ସାହିତ୍ୟରେ ନାରୀବାଦୀ ଚେତନା'– ବିଷୟବସ୍ତୁକୁ ଆଖି ଆଗରେ ରଖି ଆପଣ ପରାମର୍ଶ ଦେଇଥିଲେ ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର ସହିତ ମିଳିତ ଉଦ୍ୟମରେ ଆୟୋଜନ କରିବାପାଇଁ । ଆପଣ ନିଜେ ମୋ ସହିତ 'ଓଡ଼ିଶା ସାହିତ୍ୟ ଏକାଡେମୀ'କୁ ଯାଇଥିଲେ ମୁଖ୍ୟ ଅତିଥି ଭାବରେ ଶ୍ରୀଯୁକ୍ତ ଅଶ୍ୱିନୀ କୁମାର ମିଶ୍ର ମହୋଦୟଙ୍କୁ ନିମନ୍ତ୍ରଣ କରିବାପାଇଁ ।

ସାର୍, ଆପଣଙ୍କୁ କୃତଜ୍ଞତା ଜ୍ଞାପନ କରିବାପାଇଁ ଭାଷା ନଥିଲା ମୋ ପାଖରେ । ଚିର ଋଣୀ ହୋଇ ରହିଲି । ନଗେନ୍ ସାର୍‌ଙ୍କଠାରୁ ଏଇ ଦୁଃଖଦ ଖବର ଶୁଣିଲା ପରେ ମନ ବଡ଼ ଭାରିଭାରି ଲାଗୁଛି । ସବୁ ଯେମିତି ସ୍ୱପ୍ନ... ସବୁ ମିଛ... କିନ୍ତୁ... ।

ଆପଣ ଯେଉଁଠି ବି ଥାଆନ୍ତୁ... ଆମ ପ୍ରତି କୃପା ବୃଷ୍ଟି କରୁଥାନ୍ତୁ । ଅନେକ ସମ୍ମାନ ଓ ଶ୍ରଦ୍ଧାର ସହିତ ରହୁଛି ।

ଇତି ଆପଣଙ୍କ ଆଶିଷର ପାତ୍ରୀ

ହୀରନ୍

*ରାଜଗାଙ୍ଗପୁର*

ଅଞ୍ଜଳି ପାଢ଼ୀ

# ସ୍ମୃତିରେ ଦେବେନ୍ଦ୍ରବାବୁ

ଏମିତି କିଏ କ'ଣ ଚାଲିଯାଏ; ପରିଚିତ ମାଟି, ପାଣି, ପବନ, ଆକାଶ, ଗଛବୃଛକୁ ଅଣାଦେଖା କରି ? ନା' ବୟସ ହୋଇଥିଲା, ନା ବହୁଦିନଧରି ବିଛଣାରେ ପଡ଼ିଥିଲେ। ମନେରେ ସ୍ୱତଃ ଆସିଯାଏ କଥାଟିଏ। ଚାଲିଯିବା ପାଇଁ ସମୟ/ଅସମୟ/କାରଣ କିଛି ନଥାଏ ଅବା। ଏହି ଦେହକୁ ଛାଡ଼ିଯିବା ତ ନିର୍ଦ୍ଧାରିତ ସତ୍ୟ। ସାରାଜୀବନରେ କେବଳ ସେହି ଗୋଟିଏ ମୁହୂର୍ତ୍ତର ଅପେକ୍ଷା, ଈଶ୍ୱର କେବେ ଡାକିନେବେ ନିଜ ପାଖକୁ।

ଦେବେନ୍ଦ୍ରବାବୁ ସମସ୍ତଙ୍କୁ ଛାଡ଼ି ଚାଲିଗଲେ; ନିଜ ପରିବାର, ପ୍ରିୟଜନ ଓ ତାଙ୍କର ଅତି ଆପଣାର ସାହିତ୍ୟକୁ। ଝୁରିହେବେ ସଭିଏଁ, କିନ୍ତୁ ତାଙ୍କର ସ୍ମୃତି ଅମ୍ଳାନ ରହିବ ଓଡ଼ିଆ ସମାଲୋଚନା ଓ ଓଡ଼ିଶାର ପୁରାତନ ସାରସ୍ୱତ ସାଧକଙ୍କର ଲେଖା ଓ ଗ୍ରନ୍ଥାବଳି ସମ୍ପାଦନା କ୍ଷେତ୍ରରେ। ଓଡ଼ିଆ ସମାଲୋଚନା ସାହିତ୍ୟକୁ ସେ ଋଦ୍ଧିମନ୍ତ କରିଛନ୍ତି। ତାଙ୍କର ଅନୁଶୀଳନ, ବିଚାର, ଆଲୋଚନା, ବକ୍ତବ୍ୟ, ସୃଜନ ଓ ଅବଦାନ ଆଗାମୀ ପିଢ଼ିର ଗବେଷକମାନଙ୍କୁ ଦିଗ୍‌ଦର୍ଶନ ଦେବ ନିଶ୍ଚୟ, ଏଥିରେ ସନ୍ଦେହ ନାହିଁ।

ଦେବେନ୍ଦ୍ରବାବୁଙ୍କ ସହ ମୋର ପରିଚୟ ହୋଇଥିଲା ୨୦୦୬ ମସିହାରେ। ସେ ଇସ୍ପାତ ମହାବିଦ୍ୟାଳୟ, ରାଉରକେଲାରେ ଓଡ଼ିଆ ବିଭାଗରେ ଅଧ୍ୟାପନା କରୁଥାନ୍ତି। ଜଣେ ଉଚ୍ଚକୋଟୀର ଗବେଷକ ଏବଂ ସାହିତ୍ୟ ସମାଲୋଚକ ରୂପରେ ତାଙ୍କର ଚର୍ଚ୍ଚା ହେଉଥାଏ ସେହି ଦିନମାନଙ୍କରେ। ଦିନେ ହଠାତ୍ ଦେବେନ୍ଦ୍ରବାବୁ, ମୋ ଭଳି ଜଣେ ସାଧାରଣ ଗବେଷିକାକୁ ଟେଲିଫୋନ ଯୋଗେ ଆମନ୍ତ୍ରଣ ଜଣାଇଲେ, ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ପ୍ରାୟୋଜିତ ସମ୍ମାନରେ ଯୋଗ ଦେବା ପାଇଁ। ସେଦିନର ସ୍ମୃତି ମନେପଡ଼େ, ଅତି ଆପଣାର ବନ୍ଧୁ ପରି ସେ ମତେ କହିଥିଲେ– ଅଞ୍ଜଳି ମ୍ୟାଡାମ ! ଆସନ୍ତୁ, ଆପଣଙ୍କୁ ଗୋଟିଏ ସରପ୍ରାଇଜ୍ ଦିଆଯିବ। ସତକୁ ସତ ରାଉରକେଲାରେ ପହଞ୍ଚିବା ପରେ ଇସ୍ପାତ ମହାବିଦ୍ୟାଳୟର ଅଧ୍ୟାପକ

ବନ୍ଧୁମାନେ ମୋତେ ନେଇଗଲେ ଦେବେନ୍ଦ୍ରବାବୁଙ୍କ ବାସଭବନକୁ। ସେଠାରେ ମୁଁ ଭେଟିଲି ମୋର ପିଲାଦିନର ସାଙ୍ଗ ଗୀତାକୁ, ଦୀର୍ଘ ଚାଳିଶ ବର୍ଷ ପରେ। ଯେତେବେଳେ ଜାଣିଲି, ଗୀତା ଦେବେନ୍ଦ୍ର କୁମାର ଦାଶଙ୍କର ପତ୍ନୀ। ମୋର ଖୁସିର ସୀମା ରହିଲା ନାହିଁ। ସେହିଦିନଠାରୁ ସେମାନଙ୍କ ସହିତ ମୋର ସମ୍ପର୍କ ଆଜିଯାଏ ରହିଛି। ମଝିରେ ମଝିରେ ବିଭିନ୍ନ ସାହିତ୍ୟ ଆଲୋଚନା ତଥା ସାରସ୍ୱତ ସଭାମାନଙ୍କରେ ତାଙ୍କ ସହିତ ମୋର ସାକ୍ଷାତ ହେଉଥିଲା। କୌଣସି ବିଷୟରେ ମୋର ଅଭିମତକୁ ନେଇ ତର୍କ ହେଉଥିଲା। ମୋ ବକ୍ତବ୍ୟରେ ତ୍ରୁଟି ଦେଖିଲେ ସେ ସିଧାସଳଖ ସମାଲୋଚନା କରିବାକୁ ଭୁଲୁ ନଥିଲେ। ସେ ବିଭିନ୍ନ ପ୍ରକାରର ପୁସ୍ତକ ପଢୁଥିଲେ। ତାଙ୍କର ବାସଗୃହ ଅଗଣିତ ପୁସ୍ତକରେ ଭରିଥିଲା। ମୁଁ କୌଣସି ନିବନ୍ଧ ପ୍ରସ୍ତୁତ କଲାବେଳେ, ତାଙ୍କ ପାଖରେ ଥିବା ପୁସ୍ତକର ସହାୟତା ନେଇଛି।

ଗୀତା ଓ ଦେବେନ୍ଦ୍ରବାବୁ କେତେଥର ଯୋଜନା କରିଥିଲେ ଖଡ଼ିଆଳ ଆସିବାପାଇଁ। ବିଶେଷକରି ଖଡ଼ିଆଳ ରାଜପ୍ରାସାଦରେ ସଂରକ୍ଷିତ ପ୍ରାଚୀନ ପୁସ୍ତକ ଓ ପୁରୁଣା ଦସ୍ତାବିଜ୍ ପଢ଼ିବାପାଇଁ ତାଙ୍କର ଇଚ୍ଛା ଥିଲା। ଦୁଃଖ ରହିଗଲା, ସେ ଖଡ଼ିଆଳ ଆସିପାରିଲେ ନାହିଁ। ଦେବେନ୍ଦ୍ରବାବୁଙ୍କ ପରି ଜଣେ ଗବେଷକଙ୍କର ବିୟୋଗ, ଓଡ଼ିଆ ସାହିତ୍ୟ ନିମନ୍ତେ ଅପୂରଣୀୟ କ୍ଷତି। ଆଜି ତିଥିରେ ସେହି ଅମର ଆତ୍ମା ଉଦ୍ଦେଶ୍ୟରେ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି।

*ଖଡ଼ିଆଳ*

ରାଜୀବ ପାଣି

# ଦେବେନ୍ଦ୍ରବାବୁଙ୍କ ଅମ୍ଳାନ ସ୍ମୃତିରେ

ବିଶ୍ୱାସ କରି ହେଉନି ଦେବେନ୍ଦ୍ରବାବୁ ଆଜି ଆମ ଗହଣରେ ନାହାନ୍ତି । ଗତ ରବିବାର ସଂଜରେ ଫକୀରମୋହନଙ୍କ ପୀଠ, ବାଲେଶ୍ୱର ଶାନ୍ତିକାନନରେ ବକ୍ତବ୍ୟ ଦେଇଥିବା ଲୋକ, ସୁସ୍ଥ ସବଳ ମଣିଷ, ଋଷିପ୍ରତିମ ବ୍ୟକ୍ତିତ୍ୱ, ଉଜ୍ଜ୍ୱଳ ମୁଖମଣ୍ଡଳ ହଠାତ୍ ନୀରବି ଯିବେ, ଏ କଥା କେବେ ବିଶ୍ୱାସ କରାଯାଇପାରୁନି । ମୃତ୍ୟୁ ତ ଏମିତି, "କେତେବେଳେ କାହାଘରେ ଅକସ୍ମାତ କ୍ରନ୍ଦନର ରୋଳ, ଲୋକଙ୍କର କୁହାକୁହି, ଆହା ତା'ର ପୂରିଗଲା କାଳ ।" ଏ କଥା କହିଥିଲେ କବି ସନତ୍ ରାୟ । ଦେବେନ୍ଦ୍ରବାବୁଙ୍କର ଦୀର୍ଘଦିନର ସହକର୍ମୀ । ଇସ୍ପାତ ସହର ରାଉରକେଲା ଥିଲା ତାଙ୍କ ଜୀବନର କର୍ମଭୂମି । ଇସ୍ପାତ ମହାବିଦ୍ୟାଳୟ ଓ ମ୍ୟୁନିସିପାଲ ମହାବିଦ୍ୟାଳୟରେ ପ୍ରାୟ ତିରିଶ ବର୍ଷର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗର ଅଧ୍ୟାପକ । ଶାଣିତ ବକ୍ତବ୍ୟ, କଠୋର ତଥା ନିରପେକ୍ଷ ସମାଲୋଚନା ଏବଂ ଗଭୀର ତତ୍ତ୍ୱ ଓ ତଥ୍ୟକୁ ଆତ୍ମସ୍ଥ କରିଥିବା ଗାମ୍ଭୀର୍ଯ୍ୟପୂର୍ଣ୍ଣ ବ୍ୟକ୍ତିତ୍ୱ । ଯଦିଚ ତାଙ୍କ ବକ୍ତବ୍ୟରେ ଅନେକ ସମୟରେ କଟୁ ବିଚାର ଖୁସି ଦେଇ ନଥାଏ, କଥା ଓ ଲେଖାରେ ଶତଭାଗ ସତ୍ୟ ଥାଏ । ମୋର ତାଙ୍କ ସହ ସାକ୍ଷାତ ହୁଏ ୧୯୮୭ ମସିହାରେ, ରାଉରକେଲା ସାନ୍ଧ୍ୟ ମହାବିଦ୍ୟାଳୟରେ ଅନୁଷ୍ଠିତ ଗାଳ୍ପିକ ନିବାରଣ ଜେନାଙ୍କ 'ଅରଣ୍ୟର ଅଜଗର' ପୁସ୍ତକ ଲୋକାର୍ପିତ ସଭାରେ । ମନେନାହିଁ, କେଉଁଥି ପାଇଁ ତାଙ୍କ ସହ ଯଥେଷ୍ଟ ସାହିତ୍ୟ ସମ୍ପର୍କିତ ଯୁକ୍ତତର୍କ ହେଲା । କଥାରେ କଥାରେ କହିଲେ, ମୁଁ ଶାନ୍ତିନିକେତନର ପ୍ରଫେସର ଖଗେଶ୍ୱର ମହାପାତ୍ରଙ୍କ ଦାନ୍ତ ଭାଙ୍ଗି ଦେଲି, ଜି.ଏମ. କଲେଜରେ ଅମୁକ ପ୍ରଫେସରଙ୍କୁ ଏହା କହିଲି ଇତ୍ୟାଦି ଇତ୍ୟାଦି । ମୋତେ ଆଦୌ ଭଲ ଲାଗୁନଥାଏ । ସେ ବାବୁଜଣକ କିଏ ? ଏତେ ଅହଂକାର ସାହିତ୍ୟକୁ ନେଇ । ପରେ ଜାଣିଲି ତାଙ୍କ ବିଷୟରେ, ସେ ଜଣେ ବହୁତ ଗୁଣୀ ବ୍ୟକ୍ତିତ୍ୱ । ସେଇଭଳି ରାଉରକେଲାର ଗୋପବନ୍ଧୁ ପାଠାଗାରରେ ଆୟୋଜିତ ଗୋପବନ୍ଧୁ ଜୟନ୍ତୀରେ ସେ ଥିଲେ ମୁଖ୍ୟବକ୍ତା ।

ଗୋପବନ୍ଧୁ ସାହିତ୍ୟର ମୂଲ୍ୟବୋଧ ସମ୍ପର୍କରେ ଯେତେବେଳେ ଦୀକ୍ଷାନ୍ତ ଭାଷଣ ରଖିଲେ, ମୋ ମୁଣ୍ଡ ନଇଁଗଲା ମଞ୍ଚ ପାଖରେ। ତାଙ୍କର ଆଚରଣ ଓ ଉଚ୍ଚାରଣରେ ସମାନତା ଥିବାଦୃଷ୍ଟିରୁ ତାଙ୍କ ବିଚାରବୋଧ, ବିଶ୍ଳେଷଣ ନିଶ୍ଚିତ କାଳଜୟୀ, ଏଥିରେ ସନ୍ଦେହ କରାଯାଇ ନପାରେ। ବୋଧହୁଏ ବିଗତ ଦଶବର୍ଷ ହେବ ଭୁବନେଶ୍ୱରରେ ଅବସ୍ଥାପିତ ଥିଲେ, କିନ୍ତୁ ସ୍ଥାନୀୟ ପ୍ରଗତି ଉତ୍କଳସଂଘ, ରାଉରକେଲାର ପ୍ରତିଟି ସାରସ୍ୱତ କାର୍ଯ୍ୟକ୍ରମରେ ତାଙ୍କର ପରାମର୍ଶ ନିଆଯାଉଥାଏ।

ବାସ୍ତବରେ ଦେବେନ୍ଦ୍ରବାବୁଙ୍କ ସାରସ୍ୱତ କୃତି ଓଡ଼ିଆ ବାଣୀଭଣ୍ଡାରକୁ ପରିପୁଷ୍ଟ କରିଛି। ନିରପେକ୍ଷ ଆଲୋଚନା କରିବା ଦିଗରେ ବୋଧହୁଏ ଆଉ ଏକ ନା କହିବା କଷ୍ଟ। ଯେଉଁ କାର୍ଯ୍ୟରେ ସେ ମନୋନିବେଶ କରନ୍ତି, ତା'ର ଗଭୀରତାକୁ ଯାଇ ସେ ସତ୍ୟ ଉଦ୍‌ଘାଟିତ କରିଥାନ୍ତି। ରାଧାନାଥ ଗ୍ରନ୍ଥାବଳି ହେଉ ଅବା ଓଡ଼ିଶାର ଜନକ ମଧୁସୂଦନ ହେଉ, ଗଙ୍ଗାଧର ମେହେରଙ୍କ କାବ୍ୟାବଳି, 'ଉତ୍କଳ ସମ୍ମିଳନୀ'ର ଐତିହାସିକ ଦସ୍ତାବିଜକୁ ନେଇ ଅନନ୍ୟ ସଂକଳନ। ମୌଳିକ ଓଡ଼ିଆ ପ୍ରବନ୍ଧ ଓ ସାହିତ୍ୟ ସମାଲୋଚନା, ପତ୍ରପତ୍ରିକାର ସମ୍ପାଦନା, ସାହିତ୍ୟିକମାନଙ୍କର ଜୀବନ ରଚିତ ଇତ୍ୟାଦି କାର୍ଯ୍ୟ କରିଛନ୍ତି।

ଗବେଷଣାତ୍ମକ କାର୍ଯ୍ୟ କରିବା ଦିଗରେ ସମଗ୍ର ଜୀବନ ତାଙ୍କର ସମର୍ପିତ। ଇଂରାଜୀ ଓ ଓଡ଼ିଆ ଭାଷାରେ ଦକ୍ଷତା ରଖିଥିବା ସ୍ୱର୍ଗତ ଦାଶ ଆମ ଓଡ଼ିଶା ପାଇଁ, ଓଡ଼ିଶାର ବାଣୀ ଭଣ୍ଡାରକୁ ଅମୂଲ୍ୟ ଦାନ ପ୍ରଦାନ କରିବାରେ ସେ ଜଣେ ଅନନ୍ୟ ବ୍ୟକ୍ତିତ୍ୱ।

ଦୀର୍ଘ ବର୍ଷର ସାଧନାରେ ନିମଗ୍ନ ଥିବା ଶ୍ରୀ ଦାଶଙ୍କୁ ଯେଉଁ ପରିମାଣରେ ସ୍ୱୀକୃତି ମିଳିବା କଥା ତା' ଅବଶ୍ୟ ମିଳିନାହିଁ। ଯଦିବା ସାହିତ୍ୟ ଏକାଡେମୀ ୨୦୨୦ ମସିହାରେ ତାଙ୍କୁ ସମ୍ବର୍ଦ୍ଧିତ କରିଛି। ସେମିତି ଏକ ଗୌରବୋଜ୍ଜ୍ୱଳ ସମ୍ମାନ ନୁହେଁ। କିନ୍ତୁ ଓଡ଼ିଶାର ସାହିତ୍ୟ ସାଧକମାନଙ୍କ ପାଇଁ, ଓଡ଼ିଶା ଭାଷା ସାହିତ୍ୟରେ କାର୍ଯ୍ୟ କରୁଥିବା ଛାତ୍ରଛାତ୍ରୀଙ୍କ ପାଇଁ ତଥା ଓଡ଼ିଶାର ସାରସ୍ୱତ ଇତିହାସ ପାଇଁ ସେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବ୍ୟକ୍ତିତ୍ୱ।

ଦେବେନ୍ଦ୍ର କୁମାର ଦାଶ ତଥାକଥିତ ଗବେଷକମାନଙ୍କ ଉପରେ ବିଶେଷ ଖସି ନଥିବାର କାରଣ, ସାହିତ୍ୟ ହେଉ, ସଂସ୍କୃତି ହେଉ ଅବା ଇତିହାସ ହେଉ, ଯେଉଁ ସ୍ତରର ଗବେଷଣାକୁ ସେ ଅପେକ୍ଷା ରଖୁଥିଲେ, ତାହା ସେ ପାଉ ନଥିଲେ। କାରଣ ତାଙ୍କ ମତରେ କୌଣସି ବିଶେଷ ମୂଲ୍ୟବୋଧ ଭିତ୍ତିକ, ତତ୍ତ୍ୱ ଓ ତଥ୍ୟପୂର୍ଣ୍ଣ ଗବେଷଣା ପ୍ରକୃତରେ କରାଯାଇନାହିଁ ଓଡ଼ିଶାରେ।

ସେ ଯଥେଷ୍ଟ ସମ୍ମାନ କରୁଥିଲେ ସ୍ୱର୍ଗତ କୃଷ୍ଣଚରଣ ବେହେରା, ସୁଦର୍ଶନ ଆଚାର୍ଯ୍ୟ ଓ ଗଗନେନ୍ଦ୍ରନାଥ ଦାଶଙ୍କୁ। କାରଣ ଏମାନଙ୍କ ବିଚାରଧାରାରେ ସେ ପ୍ରାୟତଃ ଆଉ କାହାକୁ ଦେଖି ପାରୁନଥିଲେ। ଯଥେଷ୍ଟ ସମ୍ମାନ କରୁଥିଲେ ପ୍ରଫେସର ବାଳକୃଷ୍ଣ ଶତପଥୀଙ୍କୁ। କାରଣ

ସେ ପ୍ରଥମ କରି ଫକୀରମୋହନଙ୍କ ଉପରେ ଗବେଷଣା କରିଥିଲେ ଏବଂ ତାଙ୍କଠାରୁ ଯଥେଷ୍ଟ ଜ୍ଞାନ ମଧ୍ୟ ପାଇଥିଲେ। ଯେତେବେଳେ ଓସୋ ମାଧ୍ୟମରେ ସାରଳା ମହାଭାରତର ସମ୍ପାଦନ କାର୍ଯ୍ୟ ଚାଲୁଥିଲା, କୌଣସି ଗୁରୁତ୍ୱପୂର୍ଣ୍ଣ ବିଶ୍ଳେଷଣ ନିମନ୍ତେ ସମ୍ପାଦନାମଣ୍ଡଳୀର ବ୍ୟକ୍ତିମାନେ ସ୍ୱର୍ଗତ ଦାଶଙ୍କର ପରାମର୍ଶ ମଧ୍ୟ ଲୋଡୁଥିଲେ। ଏହିଭଳି ଅନେକ କଥା କୁହାଯାଇପାରେ ଦାଶଙ୍କ ଜୀବନଚର୍ଯ୍ୟାକୁ ନେଇ। ତାଙ୍କର ବିଶେଷତ୍ୱ, ନୀତି ନିୟମ ଓ ତାତ୍ତ୍ୱିକ ଶୃଙ୍ଖଳାଦ୍ୱାରା ସେ ସର୍ବଦା ନିୟନ୍ତ୍ରିତ। ତାଙ୍କର ଅନ୍ତର୍ଦୃଷ୍ଟି ଅତ୍ୟନ୍ତ ପ୍ରଖର। ଅବଧୂତମାନେ ବାହ୍ୟକରଣରେ ଯାହା ହୁଅନ୍ତୁ ନାଁ କାହିଁକି, ସେମାନଙ୍କ ଦିବ୍ୟାଲୋକରେ ବିକାଶକୁ ଯଥାର୍ଥ ଅନୁଭବ କରିଥାନ୍ତି। ସେଇଭଳି ଦେବେନ୍ଦ୍ର ସାହିତ୍ୟ, ସଂସ୍କୃତି, ସମାଜ, ଅର୍ଥନୀତିର ଗଭୀର ଅନ୍ତର୍ଦୃଷ୍ଟିରେ ସେ ଦେଖିପାରୁଥିଲେ ସମାଜର ଜଟିଳ ତତ୍ତ୍ୱ ଓ ତଥ୍ୟକୁ। ତାଙ୍କ ଅମର ଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛି।

*ରାଉରକେଲା*

## ରବି ରାୟ

# ମୁଁ କ'ଣ ଏତେ ବୁଢ଼ା ହେଲିଣି ?

'ମୁଁ କ'ଣ ଏତେ ବୁଢ଼ା ହେଲିଣି ?' ୨୦୨୦ ମସିହା ଜାନୁଆରି ମାସରେ ଓଡ଼ିଶା ସାହିତ୍ୟ ଏକାଡେମୀ ପକ୍ଷରୁ ବୟୋଜ୍ୟେଷ୍ଠ ସାହିତ୍ୟିକମାନଙ୍କୁ ସାରସ୍ୱତ ସମ୍ବର୍ଦ୍ଧନା ନିମନ୍ତେ ପନ୍ଦର ଜଣ ଲେଖକଙ୍କ ମଧ୍ୟରେ ଦେବେନ୍ଦ୍ର ସାର୍‌ଙ୍କ ନାମ ଚୂଡ଼ାନ୍ତ ହେବା ମାତ୍ରେ ମୁଁ ତାଙ୍କୁ ଫୋନ୍ ମାଧ୍ୟମରେ ଏହି ଖୁସି ଖବର ଦେବାମାତ୍ରେ ସେ ମୋତେ ହସି ହସି ଏହା କହିଥିଲେ । ବାସ୍ତବରେ ଦେବେନ୍ଦ୍ର ସାର୍‌ଙ୍କୁ ସେହି ସମୟରେ ୬୫ ବର୍ଷ । ବୟୋଜ୍ୟେଷ୍ଠ ସାହିତ୍ୟିକ ସମ୍ବର୍ଦ୍ଧନା ତାଲିକାରେ ସାର୍‌ଙ୍କ ନାମ ଶେଷଆଡୁ ତୃତୀୟରେ ଥିଲା । ତାଙ୍କ ସହ ଫୋନ୍‌ରେ କଥା ହେଉଥିବା ବେଳେ ସେ ମ୍ୟୁଜିୟମରେ ଥିଲେ । ମୋତେ କହିଲେ, ମୁଁ ଯାଉଛି ଆପଣଙ୍କ ନିକଟକୁ । ପ୍ରାୟ ଦଶ ପନ୍ଦର ମିନିଟ୍ ପରେ ସେ ଏକାଡେମୀରେ ପହଞ୍ଚିଥିଲେ । ତାଙ୍କୁ ଏକାଡେମୀରେ ଦେଖିବା କ୍ଷଣି ଏକାଡେମୀ କର୍ମଚାରୀଗଣ ସାର୍‌ଙ୍କ ସାରସ୍ୱତ ସମ୍ବର୍ଦ୍ଧନା ନିମନ୍ତେ ଅଭିନନ୍ଦନ ଜଣାଇଥିଲେ । ଏକାଡେମୀର ସଭାପତି ହରିହର ମିଶ୍ର ମଧ୍ୟ ତାଙ୍କୁ ଶୁଭେଚ୍ଛା ଜଣାଇଥିଲେ । ଏହି ସମ୍ମାନପ୍ରାପ୍ତିରେ ସେ ବିଶେଷ ଉଲ୍ଲସିତ ହୋଇ ନଥିଲେ ବି ଏକାଡେମୀରେ ବେଶ୍ ପ୍ରସନ୍ନ ଚିତ୍ତରେ କିଛି ସମୟ ବିତାଇ ଥିଲେ । କିଛିଦିନ ପରେ ସାରସ୍ୱତ ସମ୍ବର୍ଦ୍ଧନା ଉତ୍ସବ ନିମନ୍ତେ ପ୍ରସ୍ତୁତ କରାଯାଉଥିବା ବ୍ରୋସିଅର ପାଇଁ ଯେତେବେଳେ ସଂକ୍ଷିପ୍ତ ଜୀବନପଞ୍ଜି ମାଗିଥିଲି, ସେ ସାମାନ୍ୟ ଭାବରେ "କ'ଣ ଗୋଟେ ଦେବି ? ଯାହା ଆପଣମାନେ ଜାଣନ୍ତି ସେଥିରେ କାମ ଚଳାଇ ଦିଅନ୍ତୁନା" ବୋଲି କହିଥିଲେ । ଏକାଡେମୀ ପକ୍ଷରୁ ୨୦୨୦ ବର୍ଷର ଅତିବଡ଼ି ଜଗନ୍ନାଥ ଦାସ ପୁରସ୍କାର ଏବଂ ସାରସ୍ୱତ ସମ୍ବର୍ଦ୍ଧନା ଉତ୍ସବ ଆୟୋଜନ କରୋନା ପ୍ରଭାବ ହେତୁ ବିଳମ୍ବିତ ହୋଇ ଯାଇଥିଲା । ସେତେବେଳେ ସଭାସମିତି କେବଳ ୫୦ ଜଣ ବ୍ୟକ୍ତିଙ୍କ ଉପସ୍ଥିତିରେ ସାମାଜିକ ଦୂରତା ରକ୍ଷା କରି ସ୍ୱତନ୍ତ୍ର ଆଦେଶ ବଳରେ ଆୟୋଜନ ନିମନ୍ତେ ସରକାରୀ ଆଦେଶ ଥିବାରୁ ଉକ୍ତ ଉତ୍ସବ କରାଯିବା ସମ୍ଭବ ହେଉ ନଥାଏ ।

ସେହିବର୍ଷ ଜୁଲାଇ ୨୦/୨୧ ତାରିଖ ବେଳକୁ ଅତିବଡ଼ି ଓ ସାରସ୍ୱତ ସମ୍ବର୍ଦ୍ଧନା ଉତ୍ସବ ଆୟୋଜନ ନିମନ୍ତେ ସରକାର ନିର୍ଦ୍ଦେଶ ଦେଇଥିଲେ। ଜୁଲାଇ ୨୫ ତାରିଖ ଏକାଡେମୀର ସ୍ୱନକ୍ଷତ୍ର ଦିବସରେ କରୋନା ନିୟମ ଅନୁପାଳନ କରି ଉତ୍ସବକୁ ଯଥାସମ୍ଭବ ନିରାଡ଼ମ୍ବର ଭାବରେ ପାଳନ କରିବାକୁ କୁହାଯାଇଥିଲା। ସ୍ୱଳ୍ପ ସମୟ ମଧ୍ୟରେ ଆନୁଷଙ୍ଗିକ କାର୍ଯ୍ୟ ସାଙ୍ଗକୁ ସୂଚନା ପୁସ୍ତକ ପ୍ରସ୍ତୁତି ଏବଂ ତାମ୍ରଫଳକ ପ୍ରସ୍ତୁତି ଏକ ବଡ଼ ଆହ୍ୱାନ ଥିଲା। ସୂଚନାପୁସ୍ତକପାଇଁ ଦେବେନ୍ଦ୍ର ସାର୍‌ଙ୍କ ବାୟୋଡାଟା ମୁଁ ଫଣୀନ୍ଦ୍ର ସାର୍, କୃଷ୍ଣ ସାର୍ ଓ ଗୌରାଙ୍ଗ ସାରଙ୍କୁ ଫୋନ୍ କରି କିଛି କିଛି ତଥ୍ୟ ସଂଗ୍ରହ କରି ଏକ ଆଲେଖ୍ୟ ପ୍ରସ୍ତୁତ କରି ଦେବେନ୍ଦ୍ର ସାର୍‌ଙ୍କୁ ଜଣାଇଲି। ସେ କହିଲେ, ମୋ ବିଷୟରେ ଆପଣ ଯାହା ଲେଖିଛନ୍ତି, ବାସ୍ତବରେ ମୁଁ ତାହା ନୁହେଁ। ଏହାକୁ ଯଥାସମ୍ଭବ ଛୋଟ କରି ଦିଅ। ଏହା ଥିଲା ତାଙ୍କ ଉଦାରତା। ଏହିଥିରୁ ସେ କିଭଳି ଆତ୍ମପ୍ରଚାର ବିମୁଖ, ତାହାର ଉଦାହରଣ ମିଳେ। ଶାସ୍ତ୍ରୀୟ ଓଡ଼ିଆ ଭାଷା ଗବେଷଣା ବିଭାଗ ଉପ-ସମିତିରେ ସେ ସଦସ୍ୟ ଥିଲେ। ଏହି ବିଭାଗ ପକ୍ଷରୁ ଅନେକ ଉପାଦେୟ ପୁସ୍ତକ ଏକାଡେମୀ ପକ୍ଷରୁ ପ୍ରକାଶିତ ହୋଇପାରିଛି। ତନ୍ମଧ୍ୟରୁ ସିଦ୍ଧେଶ୍ୱର ଦାସକୃତ ବିଚିତ୍ରରାମାୟଣ, ସଚ୍ଚିଦାନନ୍ଦ ମିଶ୍ର ସମ୍ପାଦିତ ଚଉତିଶାବିଚିତ୍ରା, ପୁରୁଷୋତ୍ତମ ଦାସ ବିରଚିତ ରାମାୟଣ ହରିବଂଶ, ନରସିଂହ ସେଣ ଗ୍ରନ୍ଥାବଳି ଇତ୍ୟାଦି ପ୍ରମୁଖ। ତାଙ୍କ ପ୍ରଚେଷ୍ଟାରେ ଫକୀରମୋହନଙ୍କ 'ଲଛମା' ଉପନ୍ୟାସର ଇଂରାଜୀ ସଂସ୍କରଣ ଏକାଡେମୀ ପକ୍ଷରୁ ପ୍ରକାଶପାଇଛି, ଯାହାକୁ ପ୍ରଫେସର ବସନ୍ତ କୁମାର ତ୍ରିପାଠୀ ଇଂରାଜୀ ଭାଷାନ୍ତର କରିଛନ୍ତି। ସାର୍ ଏବଂ ଫଣୀନ୍ଦ୍ର ସାର୍ ଉଭୟଙ୍କ ଯୁଗ୍ମ ସଂକଳନରେ ଏକାଡେମୀ ପକ୍ଷରୁ ଆଉ ଏକ ଦୁର୍ଲଭ ଗ୍ରନ୍ଥ 'ଓଡ଼ିଆ ଅଳଙ୍କାର ଶାସ୍ତ୍ର' ଦୁଇଟି ଭାଗରେ ପ୍ରକାଶ ପାଇବାକୁ ଯାଉଛି। ଯେଉଁଥିରେ ପ୍ରାଚୀନ କାଳରୁ ୧୯୩୬ ମସିହା ପର୍ଯ୍ୟନ୍ତ ସମସ୍ତ ଅଳଙ୍କାର ଗ୍ରନ୍ଥ ସ୍ଥାନ ପାଇଛି।

ସେ ଓଡ଼ିଶା ସାହିତ୍ୟ ଏକାଡେମୀ ସହିତ ଓତପ୍ରୋତ ଭାବେ ଜଡ଼ିତ ଥିଲେ। ଏକାଡେମୀ ପକ୍ଷରୁ ରାଉରକେଲା କିମ୍ବା ଓଡ଼ିଶାର ପଶ୍ଚିମାଞ୍ଚଳରେ କୌଣସି ସଭା ସମିତି ଆୟୋଜନ କରାଗଲେ, ତାଙ୍କୁ ଖୋଜାପଡ଼େ। ଯେତେ ଫକୀରମୋହନ ବିଷୟକ ସଂପାନ କିମ୍ବା ଅନ୍ୟ କୌଣସି କାର୍ଯ୍ୟକ୍ରମ ହୁଏ, ସେ ଏକାଡେମୀ ଆମନ୍ତ୍ରଣକ୍ରମେ ସେଥିରେ ଯୋଗ ଦେଇଥାନ୍ତି। ଗତ ଦୁଇବର୍ଷ ହେବ ସେ ପ୍ରଖ୍ୟାତ ସାହିତ୍ୟିକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କ ଜନ୍ମଶତାବାର୍ଷିକ କାର୍ଯ୍ୟକ୍ରମ ଆୟୋଜନ କରିବାକୁ ଓଡ଼ିଶା ସାହିତ୍ୟ ଏକାଡେମୀକୁ ଅନୁରୋଧ ଜଣାଇଥିଲେ। ଡକ୍ଟର ଉଦ୍‌ଗାତାଙ୍କ ପରିବାରବର୍ଗ ତଥା ଅନେକ ଅନୁଗାମୀଙ୍କୁ ନେଇ ଅନେକ ଥର ଏକାଡେମୀକୁ ଆସିଛନ୍ତି। କରୋନା ହେତୁ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା ଜନ୍ମଶତବାର୍ଷିକୀ ଉତ୍ସବ ପ୍ରାୟ ଦୁଇ ବର୍ଷ ବିଳମ୍ବରେ ଦୁଇମାସ ତଳେ ସମ୍ବଲପୁରଠାରେ ଆୟୋଜିତ ହୋଇସାରିଛି। ଏହା କେବଳ ସମ୍ଭବ ହୋଇପାରିଛି ତାଙ୍କ ଐକାନ୍ତିକ ଉଦ୍ୟମ ଯୋଗୁ। ଏକାଡେମୀର ସଭାପତି

କବି ହୃଷୀକେଶ ମଲ୍ଲିକଙ୍କ ସହ ଦେବେନ୍ଦ୍ର ସାର୍ ସମ୍ବଲପୁର ଯାଇ ଉକ୍ତ ଶତବାର୍ଷିକୀ ଉତ୍ସବରେ ମୁଖ୍ୟ ଅତିଥି ଭାବରେ ଯୋଗଦାନ କରିଥିଲେ। ଏହା ଥିଲା ସାର୍‌ଙ୍କ ଏକାଡେମୀ ପକ୍ଷରୁ ଆୟୋଜିତ କୌଣସି ସାରସ୍ୱତ ସଭାରେ ଶେଷ ଯୋଗଦାନ। ଏକାଡେମୀର ତ୍ରୈମାସିକ ସାହିତ୍ୟ ମୁଖପତ୍ର 'କୋଣାର୍କ'ର ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା ବିଶେଷ ସଂଖ୍ୟା ପ୍ରକାଶ ନିମନ୍ତେ ସାର୍‌ଙ୍କ ପ୍ରସ୍ତାବ ଅନୁସାରେ ସ୍ଥିର ହୋଇଛି। ଏଥିପାଇଁ ସେ ଏକ ଲେଖାଦେବା ପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଥିଲେ ଅପ୍ରାପ୍ତ ରହିଗଲା।

ତାଙ୍କ ଦେହାବସାନ ଏତେ ଅପ୍ରତ୍ୟାଶିତ ଯେ, ଖବର ଅବିଶ୍ୱସନୀୟ। ସମସ୍ତେ ହତ୍‌ବାକ ହୋଇଯାଇଥିଲେ। ପ୍ରଶଂସାରେ ବିଭୋର ହେବା କିମ୍ବା ନିନ୍ଦାରେ ଦୁଃଖୀ ହେଉ ନଥିବା ଲେଖକମାନଙ୍କ ମଧ୍ୟରେ ସେ ଥିଲେ ଅନ୍ୟତମ। ବୃତ୍ତିଗତ ଓ ସାଧାରଣ ଜୀବନ ତାଙ୍କର ସୁବ୍ୟବସ୍ଥିତ ଥିଲା। ଆତ୍ମପ୍ରଚାର ବିମୁଖ ନିରଳସ ସାଧକ ଭାବରେ ସେ ସ୍ମରଣରେ ରହିବେ। ଓଡ଼ିଆ ସାହିତ୍ୟର ବହୁ ଅଜ୍ଞାତ ତଥ୍ୟକୁ ପ୍ରାମାଣିକ ଭାବେ ସିଦ୍ଧ କରି ସେ ସବୁକୁ ପାଠକମାନଙ୍କ ନିକଟରେ ଉପସ୍ଥାପନ କରିବା ସାର୍‌ଙ୍କ ପାଣ୍ଡିତ୍ୟର ପରିଚାୟକ। ଓଡ଼ିଆ ସାହିତ୍ୟର ଜଣେ ଧୁରୀଣ ଗବେଷକ ତଥା ପ୍ରଜ୍ଞାଦୀପ୍ତ ସମାଲୋଚକ ଭାବରେ ସେ କୌଣସି ତଥ୍ୟକୁ ଶସ୍ତା ଲୋକପ୍ରିୟତା ପାଇଁ ବିନା ପ୍ରମାଣରେ ସାର୍ବଜନୀନ କରିବା ପ୍ରଥାର ଘୋର ବିରୋଧୀ ଥିଲେ।

ବହୁବାର ତାଙ୍କ ଲେକ୍‌ଭ୍ୟୁ ଆପାର୍ଟମେଣ୍ଟକୁ ଯାଇଛି। ପଢ଼ାଘରେ ବିଭିନ୍ନ କିସମ ବହିର ସ୍ତୂପ। ବିଛଣାସାରା ବହି ଆଉ ବହି। ଶୁଭ୍ରବସ୍ତ୍ର ପରିଧାନ, ମୁହଁରେ ଛୋଟ ଛୋଟ ଶୁଭ୍ର ଦାଢ଼ି। ହସ ହସ ମୁହଁ। ଋଷିପ୍ରତିମ ମନେହୁଅନ୍ତି। ସାର୍ ଫେରିବା ବେଳେ ଲିଫ୍ଟଯାଏ ବାଟ କଢ଼େଇ ନେଇଯାନ୍ତି। ଆଜି ସେ ସବୁ ଅତୀତ। ମାତ୍ର ଲାଗୁଛି, ସେ ବର୍ତ୍ତମାନ।

*ଭୁବନେଶ୍ୱର*

ନଗେନ ଦାସ

# ଶୂନ୍ୟତା ତିଆରି କରୁଥିବା ଲୋକମାନେ

ମୋର ଶ୍ରେଣୀ ଶିକ୍ଷକ ନଥିଲେ; ତା'ଠାରୁ ଅଧିକ କିଛି । ପ୍ରକାଶ କରିବା ପାଇଁ ମୋ ପାଖରେ ଶବ୍ଦର ଅଭାବ । କାହିଁକି ଏପରି ମଣିଷମାନେ ଆସନ୍ତି ଏଇ ପୃଥିବୀକୁ ଏବଂ ଚାଲିଯାଆନ୍ତି ଆତ୍ମାରେ ଶୂନ୍ୟତା ସୃଷ୍ଟିକରି, ଆଖିରେ ସମୁଦ୍ରର ଲୁହ ଓ ହୃଦୟରେ ଅଶେଷ କୋହ ଦେଇ ।

ପଢୁଥିବା ସମୟରେ ଶାନ୍ତିନିକେତନରେ ଗୋଟିଏ ସେମିନାରରେ ତାଙ୍କ ସହିତ ପ୍ରଥମ ଦେଖା । ସେ ଜାଣିଲେ ଯେ ମୁଁ ରାଉରକେଲାରୁ ଆସିଛି; ରାଉରକେଲାକୁ ଫେରିବା ସମୟରେ କିଛି ଟଙ୍କା ଏବଂ ବହିର ଏକ ଲମ୍ବା ଚିଠା ଜେରକ୍ସ କରିବାକୁ ଦେଇଥିଲେ । ବହି ପ୍ରତି ତାଙ୍କର ଏହି ମମତ୍ୱବୋଧ, ନିବିଡ଼ତା ମୋତେ ମୋହାଚ୍ଛନ କରିଥିଲା ସେଦିନ । ଦୀର୍ଘ ବର୍ଷ ଧରି ସମସ୍ତଙ୍କ ପରି ମୋତେ ମଧ୍ୟ ତାଙ୍କର ପ୍ରଜ୍ଞା ଓ ଭଲପାଇବାର ଜାଲରେ ବାନ୍ଧିଦେଲେ, ଯାହାଠାରୁ ସମଗ୍ର ଜୀବନରେ ମୁଁ ମୁକ୍ତହୋଇ ପାରିବିନି ବୋଲି ଗୋଟିଏ ସୁଖଦ ଭୟ ଲାଗେ ।

ସାହିତ୍ୟ ଅବବୋଧ ଓ ସମୀକ୍ଷାୟନ ପ୍ରତି ସଶ୍ରଦ୍ଧ ହେବାର ମନ୍ତ୍ର ଅନ୍ୟ ଗୁଣିଜନମାନଙ୍କଠାରୁ ପାଇଛି, ହେଲେ ତାଙ୍କ ଦିଗ୍‌ଦର୍ଶନରେ ଥିଲା ସ୍ୱାତନ୍ତ୍ର୍ୟ । ବହି କିଣିବା ପ୍ରସଙ୍ଗରେ ଥରେ ମୋତେ କହିଥିଲେ, "ନଗେନ ବହି ଏତେ କିଣନି, ମୋ ପରି ବରବାଦ ହୋଇଯିବ ।" ସତରେ କ'ଣ ସେ ବରବାଦ ହୋଇଗଲେ ? ଏଇ ମଣିଷମାନେ ହିଁ ଆତ୍ମାରେ ଶୂନ୍ୟତା ସୃଷ୍ଟି କରନ୍ତି । ନିଜ ପରିଧିରୁ ବାହାରି ଏପରି ଏକ ବିଶ୍ୱ ନିର୍ମାଣ କରନ୍ତି, ଯେଉଁଥିରେ ବଞ୍ଚିବାକୁ ଭଲଲାଗେ । ଭଲଲାଗେ ଗ୍ରହସମ ସେଇ ସୂର୍ଯ୍ୟ ପ୍ରତିମ ବିଜ୍ଞପୁରୁଷଙ୍କ ଚତୁର୍ପାର୍ଶ୍ୱରେ ପ୍ରଦକ୍ଷିଣ କରିବାକୁ । ତାଙ୍କର ହେତୁବାଦୀ ଚିନ୍ତନ, ବୈଜ୍ଞାନିକ ବିଶ୍ଳେଷଣ ଧାରା ମୋତେ ଆବିଷ୍ଟ କରିଚାଲିଛି । ସମସ୍ତ ପ୍ରତିବନ୍ଧକ ସତ୍ତ୍ୱେ ନିର୍ଭୟରେ ବଂଚିବାର ଉତ୍ସ ହୋଇଛି ।

ତାଙ୍କ ହାତରେ ଅନେକ ଗଢ଼ା ହୋଇଛନ୍ତି । ଗଢ଼ଣମନସ୍କ ଥିବା ଶିକ୍ଷକମାନଙ୍କ ସଂଖ୍ୟା ଖୁବ୍ କମ୍ । ଓଡ଼ିଆ ଭାଷା ସାହିତ୍ୟର ପରିପୁଷ୍ଟ ନିମନ୍ତେ ଏହି ଦିଗକୁ ସେ ଅନୁଭବ କରିଥିଲେ ଓ ବ୍ୟସ୍ତତା ମଧ୍ୟ ପ୍ରକାଶ କରୁଥିଲେ । ସେ ଲେଖିଲେ କମ, କିନ୍ତୁ କହିଲେ ବେଶି, ଯାହା ବାୟବୀୟ ହୋଇ ରହିଗଲା । କିନ୍ତୁ ଆମ ଆଗରେ ଯେଉଁ ପଦ୍ଧତି ରଖିଗଲେ । ତାହା ସମୀକ୍ଷାଶାସ୍ତ୍ରପାଇଁ ଏକ ନୂତନ ପିଢ଼ି ଗଢ଼ିବାରେ ସମର୍ଥ । ନିଜସ୍ୱ ଗୋଟିଏ ବିଜ୍ଞାନଭିତ୍ତିକ ସଂଳାପୀୟ ପୃଥିବୀର ନିର୍ମାଣ ଓ ସେଥିରେ ସାମିଲ ହେବା ନିମନ୍ତେ ନିଜକୁ ଯୋଗ୍ୟ କରିବାର ପ୍ରୟାସ ତାଙ୍କ ଅନୁଚିନ୍ତାର ଗୋଟିଏ ଉତ୍କୃଷ୍ଟ ଦିଗ । ସେହି ଦିଗ ପ୍ରତି ଉନ୍ମୁଖ ହେଲେ ତାଙ୍କର ଏହି ପୃଥିବୀକୁ ଆସିବା ସାର୍ଥକ ହେବ ।

*ରାଉରକେଲା*

ଗୋପବନ୍ଧୁ ରଥ

# ଦେବେନ୍ଦ୍ରଙ୍କ ସହ ପ୍ରଥମ ସାକ୍ଷାତ ପୂର୍ବରୁ ଓ ପରେ

ଚଳିତବର୍ଷ ସମ୍ବଲପୁର ବିଶ୍ୱବିଦ୍ୟାଳୟ ପକ୍ଷରୁ ଅନୁଷ୍ଠିତ ଗଙ୍ଗାଧର ଜୟନ୍ତୀ ସମାରୋହରେ ଦେବେନ୍ଦ୍ର କୁମାର ଦାଶଙ୍କ ଅଭିଭାଷଣ ଶ୍ରୋତୃବର୍ଗଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲା। ଏହି ସୁ ପ୍ରତିଷ୍ଠିତ ବିଶ୍ୱବିଦ୍ୟାଳୟର ସ୍ୱନାମଧନ୍ୟ ଶିକ୍ଷକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କ ପ୍ରେରଣା ଓ ଆଦର୍ଶ ପ୍ରଚୋଦିତ ଦେବେନ୍ଦ୍ର କେନ୍ଦ୍ର ଓ ଓଡ଼ିଶା ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ଆୟୋଜିତ 'ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା ଜନ୍ମ ଶତାବ୍ଦୀ' ସମାରୋହ ସବୁରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରୁଥିଲେ। ତଦୀୟ ଆକସ୍ମିକ ଅବର୍ତ୍ତମାନ ତେଣୁକରି 'ଉଦ୍‌ଗାତା ସ୍ମୃତି କମିଟି' ପକ୍ଷରୁ ଏକ ଅପୂରଣୀୟ କ୍ଷତି। ଅନ୍ୟତମ କୃତୀ ଛାତ୍ର ଦିବଂଗତ ଦେବେନ୍ଦ୍ରପାଇଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଆଜି ଶୋକାପ୍ଲୁତ।

୧।୧।୧୯୭୭ ଦିନର କଥା। ବଲାଙ୍ଗୀରଠାରେ ଓଡ଼ିଆ ନାଟକ ଶତବାର୍ଷିକୀ ସ୍ମାରକୀ ଉତ୍ସବ ଚାଲିଥାଏ। ଉତ୍ସବକୁ ଅନିମନ୍ତ୍ରିତ ହେବା ହେତୁ ମୁଁ ସେଠାକୁ ନଯାଇ ନିଜ ଘରେ ଥାଏ। ଏମନ୍ତ କାଳରେ ତାରବାର୍ତ୍ତା ଆସିଲା– Receive B.C. Nayak Memorial Award for "Upabhasara Atmalipi' as th best esseyist of Sambalpur University journal 'Saptarshi' for 1976 at the University compus, Burla on 1.1.77 afternoon. ଏବଂ ମୋ ହୃଦୟର ଆବେଗ ଅସମ୍ଭାଳ ହେବାରୁ ମୁଁ ଶତବାର୍ଷିକୀ ଉତ୍ସବ କ୍ଷେତ୍ରସ୍ଥ ମୋର ଗୁରୁଦେବ ଡ. ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତାଙ୍କୁ ସେ ବିଷୟରେ ଅବଗତ କରାଇବା ନିମନ୍ତେ ପ୍ରଧାବିତ ହେଲି ଏବଂ ସେଦିନ ତାଙ୍କ ସହ ବୁର୍ଲା ଯାଇ ବିଶ୍ୱବିଦ୍ୟାଳୟରୁ ପୁରସ୍କାର ପ୍ରାପ୍ତ ହେଲି। ଉକ୍ତ 'ଉପଭାଷାର ଆତ୍ମଲିପି', 'ସପ୍ତର୍ଷି'ର ତିନୋଟି ସଂଖ୍ୟାରେ ଧାରାବାହିକ ଭାବରେ ପ୍ରକାଶିତ ହୋଇଥିବା ଏକ ଦୀର୍ଘ ପ୍ରବନ୍ଧ ଥିଲା। 'ସପ୍ତର୍ଷି'ରେ କ୍ରମିକ ରୂପେ ଦୁଇଟି ସଂଖ୍ୟାରେ ଦେବେନ୍ଦ୍ର କୁମାର ଦାଶଙ୍କ 'ପୂର୍ବ-ମଧ୍ୟ ଯୁଗୀୟ ଓଡ଼ିଆ କାବ୍ୟରେ ପ୍ରକୃତି ଚିତ୍ରଣ' ନାମକ ଗବେଷଣାତ୍ମକ ତଥା ତଥ୍ୟମୂଳକ

ଦୀର୍ଘ ପ୍ରବନ୍ଧ ମଧ୍ୟ ସ୍ଥାନ ପାଇଥିବା ମୁଁ ଲକ୍ଷ୍ୟ କରିଥିଲି ଓ ତାହା ସ୍ଥିର ଚିତ୍ତରେ ପଢ଼ିବା ପରେ ପରେ ଦେବେନ୍ଦ୍ରଙ୍କ ସାରସ୍ୱତ ରସବୋଧାତ୍ମକ ବର୍ଣ୍ଣନା ଶୈଳୀର ଚମତ୍କାରିତା ପ୍ରତି ଆକର୍ଷିତ ହୋଇଥିଲି। ତେବେ ତାଙ୍କ ଦର୍ଶନାଭିଳାଷ ଅପୂର୍ଣ୍ଣ ହୋଇ ରହିଯାଇଥିଲା। ବଲାଙ୍ଗୀରଠାରେ ଅନୁଷ୍ଠିତ ପ୍ରତ୍ନତାତ୍ତ୍ୱିକ ପୂର୍ଣ୍ଣଚନ୍ଦ୍ର ରଥଙ୍କ ୧୦୪ତମ ଜୟନ୍ତୀ ପାଳନ ଅବସରରେ ୨୯ ଜୁନ୍ ୨୦୧୩ରେ ତାଙ୍କ ଚିନ୍ତାଉଦ୍ରେକ ସ୍ମାରକୀ ଅଭିଭାଷଣରୁ ତଦୀୟ ପରିଚୟାତ୍ମକ ଚିତ୍ରଟିଏ ଲାଭ କରିବାଠାରୁ ଏ ପର୍ଯ୍ୟନ୍ତ ତାଙ୍କସହ ଦୂରଭାଷ ମାଧ୍ୟମରେ ସୁସମ୍ପର୍କ ରକ୍ଷା କରିଥିଲି। ତାଙ୍କ ଅକାଳ ଓ ଅପ୍ରତ୍ୟାଶିତ ବିୟୋଗ ଉତ୍କଳର ସାରସ୍ୱତ ଦିଗ୍‌ବଳୟକୁ ତମସାଚ୍ଛନ୍ନ କରିଦେଲା।

*ବଲାଙ୍ଗୀର*

## ଅଜୟ କୁମାର ପଟ୍ଟନାୟକ

# ସତ୍ୟ ଓ ସାହିତ୍ୟନିଷ୍ଠ ବନ୍ଧୁ ଦେବେନ୍ଦ୍ରବାବୁ

ସାହିତ୍ୟପାଇଁ ସମର୍ପିତ ସାଲିସବିହୀନ ଜୀବନ ଥିଲା ଦେବେନ୍ଦ୍ରବାବୁଙ୍କର । 'ଓଡ଼ିଆ ଗବେଷଣା ପରିଷଦ' ପକ୍ଷରୁ ଆୟୋଜିତ ବିଭିନ୍ନ ସାହିତ୍ୟ-ସଭାରେ ତାଙ୍କ ସହ ମୋର ଦେଖାହୁଏ । ତତ୍କାଳୀନ ସଭାପତି ଡଃ କୃଷ୍ଣଚରଣ ବେହେରା ଓ ଉପ-ସଭାପତି ଅଧ୍ୟାପକ ଚିତ୍ତରଂଜନ ଦାସ ଖୁବ୍ ଖୁସି ପାଉଥିଲେ ଦେବେନ୍ଦ୍ରବାବୁଙ୍କୁ । କେବଳ ଏଇଥିପାଇଁ ଯେ, ତାଙ୍କର ପଢ଼ାଶୁଣା ଖୁବ୍ ବେଶି । ପ୍ରାୟ ସବୁ ଆଲୋଚନାରେ ଅଂଶଗ୍ରହଣ କରି ସେ ତାଙ୍କର ବକ୍ତବ୍ୟ ରଖୁଥିଲେ । ଯେ କୌଣସି ଗମ୍ଭୀର ବିଷୟକୁ ନେଇ ତାତ୍ତ୍ୱିକ ଆଲୋଚନା କରିବାକୁ ସେ ଭଲ ପାଉଥିଲେ । ଅଦ୍‌ଭୁତ ଇଚ୍ଛାଶକ୍ତିର ମାଲିକ ଥିଲେ ସେ । ସାହିତ୍ୟ-ସୃଜନ ହେଉ କିମ୍ବା ସଂଗଠନ, ଥରେ କାମ ଆରମ୍ଭ କଲେ ତାକୁ ମୁଣ୍ଡି ନ ମାରି ସେ ଛାଡ଼ନ୍ତି ନାହିଁ । ସ୍ୱାଧ୍ୟାୟ ପ୍ରତି ତାଙ୍କର ନିଶା ଏବଂ ବିବିଧ ବିଷୟ ପ୍ରତି ନିଷ୍ଠା ତାଙ୍କ ବ୍ୟକ୍ତିଗତ ପାଠାଗାରରୁ ଠଉରେଇଛି । ହେଲେ ସେ ଗ୍ରନ୍ଥକୀଟ ବି ନୁହନ୍ତି, ବନ୍ଧୁବତ୍ସଳ । ଅନେକ ଥର ମୋତେ ଗାଡ଼ିରେ ନିଜେ ଗାଡ଼ି ଚଲେଇ କଟକ ନେଇ ଯାଇଛନ୍ତି । ବାଟରୁ ଶ୍ରୀଚରଣ ମହାନ୍ତିଙ୍କୁ ପିକ୍‌ଅପ୍ କରନ୍ତି ।

ରାଉରକେଲା ଭଳି ଗୋଟିଏ ଇସ୍ପାତନଗରୀର ବ୍ୟାପକ କ୍ଷେତ୍ରରେ ସାହିତ୍ୟ-ସଂଗଠନ, ଓଡ଼ିଆ ଗବେଷଣା ପରିଷଦ ଭଳି ଗବେଷଣା ପରିସର, କମଳାନେହରୁ ମହିଳା ମହାବିଦ୍ୟାଳୟର ପାଠାଗାର ନିର୍ମାଣ ଓ ଏକାଉଣ୍ଟସ୍ ବରସାର୍ କାର୍ଯ୍ୟ ଏବଂ ନିଜେ ରହୁଥିବା ଏପାର୍ଟମେଣ୍ଟର ପରିଚାଳନା କ୍ଷେତ୍ର-ସବୁଠି ସେ ଦକ୍ଷତାର ସହ କାର୍ଯ୍ୟ ସମ୍ପାଦନା କରିଛନ୍ତି । କୌଣସି ପଦ-ପଦବୀରେ ରହିବାକୁ ସେ ଆଦୌ ପସନ୍ଦ କରନ୍ତି ନାହିଁ । ବ୍ୟକ୍ତି ହେଉ କିମ୍ବା ଅନୁଷ୍ଠାନ, ନିରବରେ ସହାୟତାର ହାତ ବଢ଼େଇ ସେ ତାକୁ ଗୋପନ ରଖିବାକୁ ଚାହାନ୍ତି । 'ଆପଣା ଢୋଲ ବାଦକ'ର ଏଇ ଭାଇରଲ ଦୁନିଆରେ ଏଭଳି ବ୍ୟକ୍ତିତ୍ୱ ବିରଳ । ନିଜ ଗାଁରେ ଭାଗବତ ଟୁଙ୍ଗି ନିର୍ମାଣ କରିଛନ୍ତି ବୋଲି ମୁଁ ଜାଣେ । ସେଥିପାଇଁ ବିଭିନ୍ନ କାର୍ଯ୍ୟକ୍ରମରେ

ସେ ନିଜେ ଗାଡ଼ି ଚଲେଇ ଗାଁରେ ଅବଶ୍ୟ ପହଞ୍ଚନ୍ତି। ମୁଖ୍ୟ ଉଦ୍ଦେଶ୍ୟ ଥାଏ, କିଛି ଆର୍ଥିକ ସାହାଯ୍ୟ କରିବା। ବହୁବାର ମୋତେ ଗାଁକୁ ଯିବା କଥା କହିଛନ୍ତି, ହେଲେ କୀର୍ତ୍ତି ତାଙ୍କର ଓ ନିରନ୍ତର ସହାୟତା କରୁଥିବା କଥା ମୁଁ କେବେ ତାଙ୍କ ମୁହଁରୁ ଶୁଣି ନାହିଁ।

କମଳା ନେହରୁ କଲେଜରେ ଦେବେନ୍ଦ୍ରବାବୁ ଅଧ୍ୟାପକ ଥିଲାବେଳେ ମୋ ସ୍ତ୍ରୀ ମମତା ଦାସ ବି ସେଠି ଅଧ୍ୟାପିକା ଥିଲେ। ବେଳେବେଳେ ଡ୍ରାଇଭର ନ ଥିଲା ବେଳେ ମୁଁ ବାଇକ୍‌ରେ ଯାଇ ଶ୍ରୀମତୀଙ୍କୁ କଲେଜରେ ଛାଡ଼ି ଦେଇ ଆସେ। ମହିଳା କଲେଜ ହୋଇଥିବାରୁ ଭିତରେ ପଶିବାକୁ ସଂକୋଚ ହୁଏ। ଦେବେନ୍ଦ୍ରବାବୁଙ୍କ ଦୃଷ୍ଟି ପଡ଼ିଗଲେ ସେ ଆଉ ମୋତେ ଛାଡନ୍ତି ନାହିଁ। କ୍ଲାସ ନ ଥିଲେ, ମୋତେ କମନ୍ ରୁମ୍‌ରେ ବସେଇ ଗପସପ କରି ଚାହା ପିଆଇ ଛାଡ଼ନ୍ତି। ଦେଖା ନ ହେଲେ, ଯଦି ସେ ଶୁଣନ୍ତି ମୁଁ ଆସିଥିଲି ବୋଲି, ଅଭିମାନ କରି କହନ୍ତି "ଭାଉଜ, ଏଣିକି ଭାଇ ଆସିଲେ ତାଙ୍କୁ ଭିତରକୁ ଆଣିବେ, ନଚେତ୍ ମୋତେ ଡାକିଦେବେ।" ସମ୍ଭବତଃ, ମହିଳା କଲେଜ ଭିତରେ ସେ ଅସହଜ ଅନୁଭବ କରୁଥିବାରୁ ମୋ ସହିତ ହସି କରି ଦି'ପଦ ସୁଖଦୁଃଖ ହେବାକୁ ସେ ଚାହୁଁଥିଲେ।

ଦେବେନ୍ଦ୍ରବାବୁ କେବେ କଥାରେ, ଯୁକ୍ତିରେ ପରାସ୍ତ ହୁଅନ୍ତିନାହିଁ। ପରାସ୍ତ ହେଲାଭଳି ହାଲୁକା କଥା ବି କହନ୍ତି ନାହିଁ। ଯେଉଁଦିନ ମୁଁ ଶୁଣିଲି ଯେ ସେ ଭିଏସ୍‌ଆର ନେଇ ଚାକିରି ଛାଡୁଛନ୍ତି, ମୁଁ ସହଜରେ ବିଶ୍ୱାସ କରିପାରିଲିନାହିଁ। ବରଂ, କଲେଜରେ ଯାଇ ତାଙ୍କୁ ଭେଟିଲି ଏବଂ ଅଭିମାନ କରି ଟାଣକରି କହିଲି- "ଏମିତି କ'ଣ ହୋଇଗଲା ଯେ ଦେବେନ୍ଦ୍ରବାବୁଙ୍କୁ ପଛଘୁଞ୍ଚା ଦେବାକୁ ପଡ଼ିଲା ? ସାର୍ ଜୀବନରେ କେତେ ଝଡ଼ଝଞ୍ଜା ଦେଖି ଆସିଥିବେ, ଏବେ ଆଉ ବର୍ଷ କେଇଟା ପାଇଁ ନିଜ ଅପାରଗତାର ପ୍ରମାଣ ଦେଲେ। କିଛି ଭଲ କଲେନି।" ପ୍ରଥମେ ପରିସ୍ଥିତି, ବିଶୃଙ୍ଖଳା ଇତ୍ୟାଦି କହି ବାଆଁରେଇବାକୁ ଚେଷ୍ଟାକଲେ। କିନ୍ତୁ ମୁଁ ବି ନଛୋଡ଼ବନ୍ଧା। କହିଲି, "ଯଦି ସେମିତି କିଛି ଘଟଣା ଘଟିଲା, ଅନ୍ୟତ୍ର ବଦଳି ହୋଇ ଚାଲିଯାଇ ପାରିଥାନ୍ତେ ! ଆପଣଙ୍କୁ ପ୍ରିନ୍‌ପାଲ ସମେତ କେହି କିଛି କହିବାକୁ ସାହସ କରିଥିବେ ବୋଲି ମୁଁ ଭାବୁନାହିଁ।" ସାଙ୍ଗେସାଙ୍ଗେ କହିଲେ, "ନା, ନା, ମୋତେ କେହି କିଛି କହିନାହାନ୍ତି, ପ୍ରିନ୍ସପାଲ ଭଲଲୋକ। ବରଂ ମୁଁ ଭି.ଆର୍.ଏସ୍. ନିଏ ବୋଲି ସେ ଚାହୁଁ ନଥିଲେ।" ତାହାହେଲେ କଥା କ'ଣ କୁହନ୍ତୁ। ସ୍ୱାସ୍ଥ୍ୟ ତ ଠିକ୍ ଅଛି। ଏମିତି ଗପିଗପି ଆମେ ଗେଟ୍ ବାହାରେ ପହଞ୍ଚିଲୁ। ସେ କହିଲେ, ମିସେସ୍ ଭି.ଆର୍.ଏସ୍ ନେଇ ସାରିଛି। ପିଲାମାନେ ବି ଅନେକଥର କହିଲେଣି ଭି.ଆର,ଏସ୍ ନେବାକୁ। ମିସେସ୍‌ର ଦେହ ଭଲରହୁନି। ଏଣେ ମୋର ବି ଗୁଡ଼ାଏ ପଢ଼ାଲେଖା ବାକି ଅଛି।" ଏଥର ମୁଁ ମାନିଗଲି ଏବଂ ଟେନ୍‌ସନ୍ ଛାଡ଼ି ହସଖୁସିରେ ଫେରିଲି।

ଆଜିର ସମାଜ କ୍ରମଶଃ ଆତ୍ମନିଷ୍ଠ ଓ ବ୍ୟକ୍ତିକୈନ୍ଦ୍ରିକ ହୋଇ ପଡୁଥିଲାବେଳେ ହୃଦୟ

ଖୋଲି ଦି’ପଦ ଭାବ ବିନିମୟପାଇଁ ବନ୍ଧୁଟିଏ ନିତାନ୍ତ ବିରଳ। ବୋଧେ ପଶ୍ଚିମୀ ଢାଞ୍ଚାରେ ଆମେ ‘ଉକ୍ଟଭ’ଗ୍ଧ ଗ୍ଧବକ୍ଷଳ ଗ୍ଧକ୍ଟ ଗ୍ଧଷର ଗ୍ଧଗ୍ଧକ୍ସବଭଶରକ୍ସ’ ଭାବି ସମ୍ପର୍କକୁ ଶିଥିଳ ଓ ସୀମିତ କରି ଦେଲୁଣି। ଆଗ ଭଳି ସମ୍ପର୍କର ଢେଉ ଆଉ ନାହିଁ, କେବେଠୁ ଭଙ୍ଗା ପଡ଼ିଗଲାଣି। ବନ୍ଧୁଟିଏ ଘରେ ଆସି ପହଞ୍ଚିଗଲେ ପ୍ରଶ୍ନ ହେଉଛି, “ଆରେ ଆପଣ ହଠାତ୍ କେମିତି ଆସିଗଲେ ?” ତାହା ହେଲେ, ବନ୍ଧୁଟିଏ ନିଜ ବନ୍ଧୁ ପାଖକୁ କ’ଣ ନୋଟିସ୍ ଦେଇ ଆସିଥାଏ। ଦ୍ୱିତୀୟ ପ୍ରଶ୍ନ ହୁଏ, “କ’ଣ କିଛି କାମ ଥିଲା କି ?” ସତେ ଯେମିତି ବିନା କାମରେ ବନ୍ଧୁଙ୍କ ପାଖକୁ ଆସିବା ଗୋଟିଏ ଅପରାଧ। ଏଭଳି ପରିସ୍ଥିତିରେ ଦେବେନ୍ଦ୍ରବାବୁଙ୍କ ଭଳି ଅନ୍ତରଙ୍ଗ ବନ୍ଧୁଟିଏ ହରେଇ କେବଳ ମୋର ନୁହେଁ, ମୋ ଭଳି ଶହ ଶହ ବନ୍ଧୁଙ୍କ ହୃଦୟରେ ଅପୂରଣୀୟ ଶୂନ୍ୟସ୍ଥାନ ସୃଷ୍ଟି ହେଲା। ତାଙ୍କ ଅମର ଆତ୍ମାର ସଦ୍‌ଗତି ହେଉ।

*ଭୁବନେଶ୍ୱର*

ଦ୍ୱାରିକାନାଥ ନାୟକ

# ଦେବେନ୍ଦ୍ର ଦାଦା

ହଠାତ୍ ଦେବେନ୍ଦ୍ର ଦାଶଙ୍କ ଦେହାନ୍ତ ସମ୍ବାଦ କେଜାଣି କାହିଁକି ହଜମ୍ ହେଉନାହିଁ। ଏଇ ଗଲା ମାସରେ ପ୍ରଫେସର ଡକ୍ଟର ଗୋବିନ୍ଦଚନ୍ଦ୍ର ଉଦଗାତାଙ୍କ ଜନ୍ମଶତବାର୍ଷିକୀ ଅବସରରେ ସମ୍ବଲପୁର ଆସିଥିଲେ। ସାର୍‌ଙ୍କ ସଂପର୍କରେ ତଥ୍ୟପୂର୍ଣ୍ଣ ଭାଷଣ ପ୍ରଦାନ କରିଥିଲେ। ସେଇଠାରେ ତାଙ୍କ ସହ ଦେଖା ହୋଇ କଥାଭାଷା ହୋଇଥିଲି। ମୁଁ ତାଙ୍କୁ ବଡ଼ଭାଇର ସମ୍ମାନ ଦେଉଥିଲି। ଡକ୍ଟର ଶ୍ୟାମସୁନ୍ଦର ଧରଙ୍କ ସହ ସେ ଖୁବ୍ ଆପଣାର ଥିଲେ, ତାଙ୍କ ମାଧ୍ୟମରେ ମୁଁ ଦେବେନ୍ଦ୍ରଦାଦାଙ୍କ ସହ ପରିଚିତ ହୋଇଥିଲି। ସେ ଆମଠୁ ଦୁଇବର୍ଷ ବରିଷ୍ଠ ଥିଲେ। ଖୁବ୍ ପ୍ରତିଭାବାନ୍ ଆଲୋଚକ ଥିଲେ ସେ। ଉଭୟ ତଥ୍ୟ ଓ ତତ୍ତ୍ୱ ଦୃଷ୍ଟିରେ ସେ ସାହିତ୍ୟାଲୋଚନା କରୁଥିଲେ। ବକ୍ତବ୍ୟରେ ସ୍ୱଚ୍ଛତା ତାଙ୍କ ବାଗ୍ମିତାର ପରିଚୟ ଥିଲା। ତାଙ୍କ ବିୟୋଗରେ ଓଡ଼ିଆ ସାହିତ୍ୟର ପ୍ରଭୂତ କ୍ଷତି ହେଲା। ନୂତନ ଏକ ପିଢ଼ିର ସମାଲୋଚକ ଗୋଷ୍ଠୀ ଭିତରେ ଦେବେନ୍ଦ୍ରବାବୁଙ୍କ ଭୂମିକା ସର୍ବାଗ୍ରେ ଥିଲା।

ଅବେଳରେ ତାଙ୍କ ତିରୋଧାନ ବ୍ୟକ୍ତିଗତ ଭାବରେ ମୁଁ ମୋର ଜଣେ ପ୍ରିୟ ବଡ଼ଭାଇଙ୍କୁ ହରାଇଲି, ଓଡ଼ିଆ ସମାଲୋଚନା ସାହିତ୍ୟ ଜଣେ ବାଗ୍ମୀ ଓ ଦକ୍ଷ ସାହିତ୍ୟିକଙ୍କୁ ହରାଇଲା।

*ସମ୍ବଲପୁର*

## ମନୋରଞ୍ଜନ ମହାନ୍ତି

# ଦେବେନ୍ଦ୍ର ଦାଶ ଓ ଆମର ସ୍ୱପ୍ନ

ହଠାତ୍ ଦେବେନ୍ଦ୍ର ଚାଲିଗଲେ । ବିଶ୍ୱାସ କରିହେଉନି । ୨୫ ଅଗଷ୍ଟର ଏ ଖବରଟା ଆମେ ଏକାଠି ଦେଖିଥିବା ବହୁ ସ୍ୱପ୍ନକୁ ଟଳମଳ କରିଦେଲା ।

ମନୋରଞ୍ଜନ ଭାଇ, ଆପଣଙ୍କ ଅନୁରୋଧଟା ମୋ'ପାଇଁ ଏକ ଆଦେଶ ଓ ସୌଭାଗ୍ୟ । ବର୍ଷକ ତଳେ ଯେତେବେଳେ ଗବେଷଣାଚକ୍ର ସ୍ଥିର କଲା ଯେ ଏକ ନୂଆ ପ୍ରୟାସ ଗଢ଼ାଯିବ– ଭାଷା ଓ ସଂସ୍କୃତି ପ୍ରତିଷ୍ଠାନ । ଓଡ଼ିଶାରୁ ଏ ଉଦ୍ୟମଟି ସାନ୍ତାଳି ଭଳି ଆଦିବାସୀ ଭାଷା, ଭାରତର ବିଭିନ୍ନ ମୁଖ୍ୟ ଭାଷାଠାରୁ ନେଇ ପୃଥିବୀର କେତୋଟି ବହୁଭାଷିତ ଭାଷା ଯଥା– ଆରବିକ୍, ଚାଇନିଜ୍ ଓ ସ୍ପାନିଶ୍ ପଢ଼ାଯିବ ଓ ସେମାନଙ୍କ ସଂସ୍କୃତିର ପ୍ରାଧାନ୍ୟ ଉପରେ ଗବେଷଣା କରାଯିବ । ତାର ମଙ୍ଗ ଧରିବାକୁ ଜଣେ ଦକ୍ଷ ଓଡ଼ିଆ ବୁଦ୍ଧିଜୀବୀ ଖୋଜା ଚାଲିଲା । ସେଇ ପ୍ରକ୍ରିୟାର ପରିଣାମରେ ମୁଁ ଫୋନ୍‌ରେ ପହଞ୍ଚିଥିଲି ଲବ୍ଧପ୍ରତିଷ୍ଠ ସମାଲୋଚକ, ଓଡ଼ିଆ ଭାଷା ସାହିତ୍ୟର ବରିଷ୍ଠ ଅଧ୍ୟାପକ ପ୍ରଫେସର ଦେବେନ୍ଦ୍ର କୁମାର ଦାଶଙ୍କ ପାଖରେ ।

କଥା ମଝିରେ ହଠାତ୍ କହିଲେ, ଭାଇ ମୁଁ ବି ଜଗତସିଂହପୁର ଜିଲ୍ଲା ବାଲିକୁଦାର । ମୁଁ ଜାଣିନଥିଲି, ଶୁଣି ଖୁସି ଲାଗିଲା । ଅବଶ୍ୟ ଅଞ୍ଚଳ ପ୍ରୀତିଠାରୁ ମୁଁ ବହୁତ ବେଶୀ ତାଙ୍କର କୃତିର ପ୍ରଶଂସକ ଥିଲି ।

ସାହିତ୍ୟ ଗବେଷଣାର ଦୁଇଟି ଦିଗରେ ବହୁତ କମ୍ ଲୋକ ପାରଙ୍ଗମତା ଦେଖାଇଛନ୍ତି । ଲେଖକଙ୍କ ବିଷୟରେ ତାଙ୍କ ବେଳର ଘଟଣା ଓ ସାମାଜିକ ପୃଷ୍ଠଭୂମିକୁ ଜାଣିବାପାଇଁ ଇତିହାସ ଖୋଜି ନୂଆ ତଥ୍ୟ ଆବିଷ୍କାର କରିବା । ଦେବେନ୍ଦ୍ରଙ୍କ କାମ ରାଧାନାଥ ରାୟ ଓ ଫକୀରମୋହନଙ୍କ ଉପରେ ଯେଉଁସବୁ ନୂଆ ତଥ୍ୟ ବାହାର କରିଛି ତାହା ଚିରଦିନ ମନେରହିବ । ଆଉ ଗୋଟିଏ ହେଲା ଗୋଟିଏ ଲେଖା ଓ ଜଣେ ଲେଖକଙ୍କୁ ଏକ ପରମ୍ପରା, ସ୍ରୋତ ବା ଇତିହାସର ଏକ ଅଧ୍ୟାୟରେ ରଖି ତା'ର ମୂଲ୍ୟାଙ୍କନ କରିବା । ନନ୍ଦକିଶୋର ବଳ, ଗଙ୍ଗାଧର ମେହେରଙ୍କଠାରୁ ନେଇ ଅନ୍ୟମାନଙ୍କୁ ସେ ଯେପରି ଭାବରେ ଦେଖିଛନ୍ତି

ତା'ର ଏକ ଖାସ୍ ମହତ୍ତ୍ୱ ଅଛି । ଉତ୍କଳ ସମ୍ମିଳନୀ ୧୯୦୩-୧୯୩୬ କାମଟି ଏହାର ଏକ ପ୍ରକୃଷ୍ଟ ଦୃଷ୍ଟାନ୍ତ ।

'ଓଡ଼ିଆ ସାହିତ୍ୟକୋଷ'ର ସଂପାଦନାପାଇଁ ସେଇଭଳି ବିଶେଷଜ୍ଞ ଯାହାର ବ୍ୟାପକ ଦୃଷ୍ଟିଭଙ୍ଗୀ ଅଛି ତାଙ୍କୁ ଦାୟିତ୍ୱ ଦେଇଥିବାରୁ 'ଆମ ଓଡ଼ିଶା' ସଂସ୍ଥାକୁ ବଧାଇ ଦେବା ଦରକାର ।

ଭାଷା ଓ ସଂସ୍କୃତି ପ୍ରତିଷ୍ଠାନର ନିର୍ଦ୍ଦେଶକ ଦାୟିତ୍ୱ ନେଇ ଏକ ଅନଲାଇନ୍ ଆଲୋଚନାରେ ସେ ଯେଉଁ ବକ୍ତବ୍ୟ ରଖିଥିଲେ ତାହା ଆମ ସମସ୍ତଙ୍କ ପାଇଁ ଏକ ବଡ଼ ଉତ୍ସାହର ସୂତ୍ର ହୋଇଥିଲା । ଛୋଟବଡ଼ ଭାଷା ବୋଲି କିଛିନାହିଁ । ପ୍ରତ୍ୟେକ ଭାଷାକୁ ସମ୍ମାନ ଦେଇ ତା'ର ସାହିତ୍ୟ ଓ ସ୍ୱାତନ୍ତ୍ର୍ୟ, ତା' ସହିତ ଜଡ଼ିତ ସଂସ୍କୃତିକୁ ଅଧ୍ୟୟନ କରିବାକୁ ହେବ । ତାଙ୍କର ଆଭିମୁଖ୍ୟର ମୂଳ କଥା ଏହା ଥିଲା । ଭାରତର ବହୁଭାଷୀ, ବହୁ ସଂସ୍କୃତି, ବିଭିନ୍ନତାରେ ସଂପନ୍ନ ସଭ୍ୟତା ଭଳି ପୃଥିବୀର ସବୁ ଦେଶ, ସବୁ ଅଞ୍ଚଳର ଭାଷା, ସଂସ୍କୃତି ଓ ସଭ୍ୟତାକୁ ଦେଖିବାକୁ ହେବ । ଉପନିବେଶବାଦୀ ପରିପ୍ରେକ୍ଷୀ କିପରି ଏକଚାଟିଆ ସମୀକ୍ଷା ଓ ସଂକୀର୍ଣ୍ଣ ମନୋଭାବ ସୃଷ୍ଟି କରି ଏଯାଏ ଆମକୁ ଅସ୍ଥିର ଓ ଦୋଦୁଲ୍ୟମାନ କରି ରଖିଛି, ତାହାକୁ ଗଭୀର ଭାବରେ ବୁଝି ବିକଳ୍ପ ଚିନ୍ତାଧାରା ଅନ୍ୱେଷଣ କରିବାକୁ ହେବ । ତା'ହେଲେ ଯାଇ ସମତାପନ୍ନ ସମାଜ ଓ ଗଣତାନ୍ତ୍ରିକ ପରିବେଶ ସୃଷ୍ଟି ସମ୍ଭବ । ଦେବେନ୍ଦ୍ର ଦାଶଙ୍କର ଏଇ ଆଭିମୁଖ୍ୟ ଆମକୁ ବହୁତ ଆଗକୁ ସ୍ୱପ୍ନ ଦେଖିବାକୁ ବିଭୋର କରିଦେଇଥିଲା ।

ଗବେଷଣାଚକ୍ର ନିଶ୍ଚୟ ତାଙ୍କ ସ୍ୱପ୍ନକୁ ଆଖି ଆଗରେ ରଖି ଭାଷା-ସଂସ୍କୃତି କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବ । ଭାଇ ଦେବେନ୍ଦ୍ର, ତୁମ ପାଣ୍ଡିତ୍ୟର ସେସବୁ ଝଲକ ଓ ତୁମ ସୌହାର୍ଦ୍ଦ୍ୟର ସେ ମୁହୂର୍ତ୍ତ ଆଗାମୀ ପିଢ଼ିପାଇଁ ଏକ ଅମୂଲ୍ୟ ସଂପଦ ହୋଇ ରହିବ, ତୁମେ ନିଶ୍ଚିତ ରୁହ ।

*ନୂଆଦିଲ୍ଲୀ*



